ମୋ' ଦୃଷ୍ଟିରେ ବାପା

# ବିଚ୍ଛନ୍ଦ ଚରଣ ପଟ୍ଟନାୟକ



ରାଜଲକ୍ଷ୍ମୀ ମହାନ୍ତି

ମୋ ସ୍ମୃତିରେ ବାପା ବିଚ୍ଛନ୍ଦଚରଣ ପଟ୍ଟନାୟକ

ଲେଖକ :

ରାଜଲକ୍ଷ୍ମୀ ମହାନ୍ତି

ପ୍ରକାଶକ :

ଶିଦ୍ଧାର୍ଥ ଶଙ୍କର ମହାନ୍ତି

ଶଙ୍କର ପ୍ରକାଶନ, ରାଜଲକ୍ଷ୍ମୀ :ମହାନ୍ତିପଡା, କଟକ-୭୫୩୦୦୨

ମୁଦ୍ରଣ :

ଗୋଲଡେନ୍ ଗ୍ରାଫିକ୍ସ

ସୁତାହାଟ : କଟକ

**MO SMRUTIRE BAPA**
**BICHHANDA CHARAN PATTANAYAK**

*Written By :*

**Rajalaxmi Mohanty**

*Published by :*

**Siddhartha Shankar Mohanty**
Shankar Prakasan : RAJALAXMI
Mohantypada: Cuttack 753002

*Printed at :*

Golden Graphics :Sutahat. Cuttack

Price : Rupees Fifty Only

# ଉତ୍ସର୍ଗ ପତ୍ର

ଯେଉଁମାନେ ମୋ ବାପାଙ୍କ ଅସଂପୂର୍ଣ୍ଣ

କାର୍ଯ୍ୟକୁ ପୂର୍ଣ୍ଣତା ଦିଗରେ

ନିଷ୍ଠାପରଭାବେ ଆଗେଇ

ନେଉଛନ୍ତି ସେହି

କଳିଙ୍ଗ ଭାରତୀର

ସାଧକମାନଙ୍କ

କରକମଳରେ

ସମର୍ପିତ

ରାଜଲକ୍ଷ୍ମୀ

ଡକ୍ଟର ସୁଧୀର ଚନ୍ଦ୍ର ମହାନ୍ତି
ରିଡର,ସ୍ନାତକୋତ୍ତର  ଓଡିଆ ଭାଷା ଓ ସାହିତ୍ୟ ବିଭାଗ
ରେଭେନ୍ସା କଲେଜ : କଟକ

କାହାରି  ଆତ୍ମ ଜୀବନୀ ଉପରେ ଅଭିମତ ପ୍ରଦାନ କରିବା ନିରାପଦ ନୁହେଁ  । ସେହିପରି କାହାରି ସ୍ମୃତି ଚାରଣରେ କଲମ ଚଳେଇବା ଏକ ଧୃଷ୍ଟତା । ମୋର ପତ୍ନୀ ରାଜଲକ୍ଷ୍ମୀ ମହାନ୍ତି ଏ ପୁସ୍ତକ 'ମୋ ସ୍ମୃତିରେ ବାପା ବିଚ୍ଛନ୍ଦ ଚରଣ ପଟ୍ଟନାୟକ' ରଚନା କଲାବେଳେ ମୁଁ ତାକୁ ଦେଖିଛି ।  ଅନେକେ ଭାବି ପାରନ୍ତି , ମୁଁ ତାହାର ସଂଶୋଧନ ମଧ୍ୟ କରିଛି । ପ୍ରଥମଟି ପୂର୍ଣତଃ ସତ୍ୟ । ମାତ୍ର ଦ୍ୱିତୀୟଟି ସଂପୂର୍ଣ ଅସତ୍ୟ । ଏହି ପାଣ୍ଡୁଲିପି ପାଠକଲା ବେଳେ କେତେକ ସ୍ଥଳରେ ମୋତେ ଖଟ୍‌କା ଲାଗିଛି । ମାତ୍ର ଅତ୍ୟନ୍ତ ସନ୍ତର୍ପଣ ଭାବେ ମୁଁ ତାକୁ ଏଡାଇ ଯାଇଛି ।

ମୁଁ ଦେଖିଛି ଏ ପୁସ୍ତକ ରଚନା କାଳରେ ସେ କେତେଅସରା  ଲୁହ ଝରାଇ କାନ୍ଦୁଥିବାର । ପୁଣି ବେଶ୍ କିଛିଦିନ ଧରି ଲେଖାରେ ଡୋର ବନ୍ଧା ହୋଇ ଯାଇଛି । ନିରବଚ୍ଛିନ୍ନ ଭାବେ ଏହା ରଚିତ ହୋଇ ନାହିଁ । ଏଥିରେ ଏପରି କେତେ କଥା ଅଛି ଯାହାକୁ ଓଡିଶାର ସାଧାରଣ ପାଠକ ଏପରିକି କଳିଙ୍ଗ ଭାରତୀର ସାଧକ ଗୋଷ୍ଠୀ ମଧ୍ୟ ଜାଣି ନାହାନ୍ତି ।

ଲେଖିକା ତାଙ୍କ ବାପାଙ୍କ ଜୀବନୀ ଲେଖୁଛନ୍ତି ଅଙ୍ଗେ ଲିଭେଇଥିବା ଘଟଣାକୁ ରୂପ ଦେଇଛନ୍ତି ନିଜର ସରଳ ସାବଲୀଳ ଭାଷାରେ । କହିଲେ ତାଙ୍କର ଭାବନାରେ ବାଧା ଆସିବ । ଚୁଙ୍କିଲେ ତାଙ୍କ ଆବେଗ ଛିନ୍ନ ହେବ । ଏ ଦୃଷ୍ଟିରୁ ମୁଁ ଥିଲି ତାଙ୍କ ପାଣ୍ଡୁଲିପିର ଜଣେ ଧୈର୍ଯ୍ୟବାନ୍ ପାଠକ ।

ପାଣ୍ଡୁଲିପିଟି ପଢ଼ି ମୋର ମନେ ହୋଇଛି ଏହା ଯେପରି ଜଣେ ଶକ୍ତିଶାଳୀ ଲେଖିକାର କାର୍ଯ୍ୟ । ତାଙ୍କ ଭାବନାର ଖିଅ କେଉଁଠି ହେଲେ ହଜି ଯାଇ ନାହିଁ ବା ସେ କେଉଁଠି ହେଲେ ଆବେଗରେ ଭାସି ଯାଇ ନାହାନ୍ତି । ଯେଉଁଠି ତାଙ୍କର ଆବେଗ ବନ୍ଧଭାଙ୍ଗିଛି ସେପରି ପରିସ୍ଥିତିରେ ସମସ୍ତ ପୁତ୍ର କନ୍ୟାମାନେ ଭାବପ୍ରବଣ ହୋଇ ଯାଆନ୍ତି । ପିଲା ବେଳେ ବାପାଙ୍କ ସେବା କାଳରେ ବା ତାଙ୍କ ସହ ସହଚର ହୋଇଥିଲା ବେଳର ଘନିଷ୍ଠତାକୁ ସେ ସ୍ମରଣ କରି ଏ ପୁସ୍ତକ ରଚନା କରିଛନ୍ତି । ଜଣେ ସଂଗ୍ରାମୀ ପୁରୁଷର ଆତ୍ମାଭିମାନ ଓ ଜାତି ପ୍ରୀତି ଏହି କ୍ଷୁଦ୍ର ପୁସ୍ତକରେ ସ୍ଥାନ ପାଇଛି ।

ତାଙ୍କ ଜୀବନୀର ଏ ମୁଖବନ୍ଧ ଲେଖି ମୁଁ ଆତ୍ମ ପ୍ରସାଦ ଲାଭ କରିଛି ।

# ଶତ ବାର୍ଷିକୀର ଶତ ଦୀପାଳି ବିଚ୍ଛନ୍ଦଙ୍କ ଚରଣ ତଳେ

'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ଓ 'ଭଞ୍ଜ ଜୟନ୍ତୀ'ର ପ୍ରବର୍ତ୍ତକ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ କନ୍ୟା ରାଜଲକ୍ଷ୍ମୀ ପିତାର ସ୍ମୃତି ଚାରଣ କରି ଏ ଗ୍ରନ୍ଥ ରଚନା କରିଛନ୍ତି। ବିଚ୍ଛନ୍ଦ ଚରଣଙ୍କ ଜନ୍ମ ଶତବାର୍ଷିକୀରେ ଏହା ପ୍ରକାଶିତ ହେବା ଅତ୍ୟନ୍ତ ଆନନ୍ଦର କଥା। ମୋ ସ୍ମୃତି ଅନୁଭୂତିରେ ମଧ୍ୟ ବିଚ୍ଛନ୍ଦ ଚରଣ ଅଳିଭା ଉଜ୍ଜ୍ୱଳ ଆଲୋକ ବର୍ତ୍ତିକା।

ମୁଁ ଜୟପୁରରେ ଥିଲା ବେଳେ ସେ ମୋତେ ବହୁ ପତ୍ର ଲେଖିଛନ୍ତି। ସେ ପତ୍ରରେ ଅପୂର୍ବ ସାହିତ୍ୟ ହିଁ ରୂପାୟିତ ହୋଇଥିଲା। ମୋର ଅଯତ୍ନରୁ ସେ ପତ୍ର ସବୁ ସାଇତା ହୋଇ ପାରିଲା ନାହିଁ ତାଙ୍କ ଜୀବନର ଶେଷ ସମୟରେ ମୋ ପାଖକୁ ପଠାଇଥିବା ଶେଷ ପତ୍ରଟି କାଳର କରାଳ କବଳରୁ ବର୍ତ୍ତି ମୋ ପାଖରେ ସାଇତା ହୋଇଛି । ଆୟୁଷ୍ମତୀ ରାଜ ଲକ୍ଷ୍ମୀ ଅନୁରୋଧରେ ବିଚ୍ଛନ୍ଦ ଚରଣଙ୍କ ସ୍ମୃତି ଚାରଣ କରୁଥିବା ଗ୍ରନ୍ଥର ମୁଖ ବନ୍ଧ ଲେଖିବା ଅବକାଶରେ ବହୁ ସ୍ମୃତି ଜାଗରୁକ ହେଉଛି । ସୁଖର କଥା, ରାଜଲକ୍ଷ୍ମୀ ବିଚ୍ଛନ୍ଦ ଚରଣଙ୍କ ଜୀବନ ଆଲେଖ୍ୟର ବହୁ ସ୍ମରଣୀୟ ଦିଗକୁ ସ୍ପର୍ଶ କରି ମୋର ସ୍ମୃତି ଦର୍ପଣକୁ ପରିମାର୍ଜିତ କରିଛନ୍ତି

ତା.୯-୨-୧୯୬୦ ରିଖରେ ଜୟପୁରକୁ ପଠାଇ ଥିବା ପତ୍ର ଏଠାରେ ଉଦ୍ଧାର କରିବାକୁ ପ୍ରସଙ୍ଗିକ ମନେ କରୁଛି । ତାଙ୍କ ପତ୍ର ଲିଖନ ଶୈଳୀ, ସାହିତ୍ୟ ସଙ୍ଗଠନ ଶକ୍ତି ଓ ଉତ୍କଳୀୟ ସାହିତ୍ୟ ସଂସ୍କୃତିର ସଂରକ୍ଷଣ ପାଇଁ ସଂକଳ୍ପ ଏଥିରେ ସୂଚିତ ହୋଇଛି । ପତ୍ରରେ ଲେଖିଛନ୍ତି-'ତୋ ଚିଠି ପାଇ ଆନନ୍ଦିତ ହେଲି । ତୁ ବହୁତ ଦିନ ନୀରବ ରହିବାରେ ମନ ଉପରେ ଦୁଶ୍ଚିନ୍ତାର ଗୋଟାଏ ବୋଝ ଚଢ଼ି ଯାଇଥିଲା । ଚିଠି ପାଇ ତାହା ଉଡ଼ୁରିଗଲା । ଏଥି ସହିତ ବହୁ ପ୍ରତ୍ୟାଶିତ ଓ ବହୁ ସାଧ୍ୟ ସାଧନାରେ ପ୍ରକାଶିତ ସ୍ମାରକ ଗ୍ରନ୍ଥ ପାଇବୁ । ବହୁ ଲୋକ କହୁଛନ୍ତି ଏଧରଣର ଗ୍ରନ୍ଥ ଅନ୍ୟ କେହି ଅନୁଷ୍ଠାନ ଏ ଯାଏ ଓଡିଶାରେ ପ୍ରକାଶ କରି ନାହାନ୍ତି । ନାରୀ ବିଶ୍ୱ ବିଦ୍ୟାଳୟର ପ୍ରତିଷ୍ଠାତା ପ୍ରଫେସର କାର୍ତ୍ତିକଙ୍କ ପରି ଆମ୍ଭମାନଙ୍କୁ ହେବାକୁ ହେବ । ସେ ଭାରତରୁ ଆରମ୍ଭ କରି ବିଲାତ ଯାଏ ଦ୍ୱାର ଦ୍ୱାର ହୋଇ ଭିକ୍ଷା କରିଛନ୍ତି । ବ୍ରତ ନିଷ୍ଠ ହେବାକୁ ହେବ । 'କଳିଙ୍ଗ ଭାରତୀ' ଓଡିଶାରେ ନୂତନ ଇତିହାସ ସୃଷ୍ଟି କରୁ । ପ୍ରତିଭାର ମଧୁ ଚକ୍ର ରୂପେ ଏହା ବିରାଜମାନ ରହୁ ।'

ବିଜାତୀୟତା ପରିହାର କରି ପରମ୍ପରିକ ଜାତୀୟ ସରଣୀ ଛାନ୍ଦରେ କବିତା ରଚନା କରିବାକୁ ଆମେ ଶପଥ ପତ୍ରରେ ଦସ୍ତଖତ କରିଥିଲୁ । ପାରଂପରିକ ହେତୁ ତାହା ପତ୍ର ପତ୍ରିକାରେ ପ୍ରକାଶିତ ହେଉ ନଥିଲା । ମାତ୍ର,'କଳିଙ୍ଗ ଭାରତୀ ଶୋଭେନିର'ରେ ଆଧୁନିକ ଭାବଧାରା ସମନ୍ୱିତ କଥା ବସ୍ତୁ ଛନ୍ଦକବିତାରେ ସ୍ଥାନିତ ହୋଇଛି । ଏଥିରେ ଲେଖାଅଛି, 'କୁମ୍ଭକାର ଭଳି ଇତିହାସ ପୁନରାବୃତ୍ତି ଚକ୍ରର ଘୂର୍ଣନ କରେ । ରାମଙ୍କ ପରେ କୃଷ୍ଣ, ବୁଦ୍ଧ, ଚୈତନ୍ୟ- ନେପୋଲିୟନ୍‌ଙ୍କ ପରେ ହିଟଲରଆସନ୍ତି। ବୁଦ୍ଧ ଓ ଚୈତନ୍ୟ ନ ଆସନ୍ତୁ ପଛେ ହିଟଲର ଓ ନେପୋଲିୟନ୍ ଆଉ ନଆସନ୍ତୁ । ବନ୍ଦ ହେଉ ଏ ଚକ୍ର।' ପାରଂପରିକ ଛନ୍ଦରେ ଓ ଶଙ୍କରାଭରଣ ରାଗରେ କିମିତି ଅତ୍ୟାଧୁନିକ କଥା ଲେଖା ହୋଇ ପାରେ ବିଚ୍ଛନ୍ଦ ବାବୁ ମୋର ଏହି କବିତା ଦେଖେଇ ଲୋକଙ୍କୁ ତାହା ଦର୍ଶାଉଥିଲେ।

ପତ୍ରରେ ଲେଖିଥିଲେ, 'ଛାନ୍ଦର ଭାଗ୍ୟ ନିରାପଦ କି ନାଁ ଦେଖିବୁ' ମାତ୍ର ଦୁଃଖର କଥା ଛାନ୍ଦର ଭାଗ୍ୟ ନିରାପଦ ହୋଇ ନାହିଁ । ପରବର୍ତ୍ତୀ କାଳରେ କେତେକ କଳିଙ୍ଗ ଭାରତୀ ସଭ୍ୟ ବେଛାନ୍ଦ କବିତା ରଚନା କରିଛନ୍ତି । କେତେକ ପ୍ରକାଶ କରିଛନ୍ତି -' ଆଉ ଛାନ୍ଦରେ ଲେଖିବା ସମ୍ଭବ ନୁହେଁ'। ପ୍ରତିଷ୍ଠାତାଙ୍କ ପ୍ରାଣର ବାସନାକୁ ସମ୍ମାନ ଦେଇ ଭଞ୍ଜ ଜୟନ୍ତୀରେ ବେଛାନ୍ଦ ଓ ବିଜାତୀୟ କବିତା ବୋଲା ଯିବାକୁ ମୁଁ ବିରୋଧ କରି ଆସିଛି ଓ ଏବେ ମଧ୍ୟ ଛନ୍ଦରେ କବିତା ଲେଖୁଛି ।

କଳିଙ୍ଗ ଭାରତୀର ଆନୁଷ୍ଠାନିକ ମୁଦ୍ରାରେ ଉତ୍କଳୀୟ କୃଷ୍ଟିର ତିନି ଦିଗର ପ୍ରତୀକ - କଳାରେ କୋଣାର୍କ, ସାହିତ୍ୟରେ ଭଞ୍ଜ , ଓ ଦର୍ଶନରେ ଜଗନ୍ନାଥଙ୍କ ଉପସ୍ଥାପନା ହେଉଛି ବିଚ୍ଛନ୍ଦ ଚରଣଙ୍କ ଅଭିନବ ଚିନ୍ତା । ଭଞ୍ଜଙ୍କୁ ବ୍ୟକ୍ତିର ଉର୍ଦ୍ଧ୍ୱକୁ ନେଇ ପ୍ରତୀକ ଭାବେ ଦେଖାଇଛନ୍ତି ତାଙ୍କ ଜୟନ୍ତୀ ମାଧ୍ୟମରେ । ଆହ୍ୱାନ ଦେଇଛନ୍ତି ସାଂସ୍କୃତିକ ପୁନର୍ଜାଗରଣ ପାଇଁ ପାଲା ଦାସ କାଠିଆ ,ଗୋଟି ପୁଅ ନାଚକୁ ତତ୍କାଳୀନ ଶିକ୍ଷିତ ସମାଜ ସମ୍ମୁଖରେ ପରିବେଷଣ କରିବା ହେତୁ ଏହି ପାରମ୍ପରିକ ଅନୁଷ୍ଠାନମାନ ପୁନର୍ଜୀବିତ ହୋଇଗଲେ । ଆଜିର ଓଡିଶୀ ନୃତ୍ୟର ଏପରି ନାମକରଣ କରିଥିଲେ କାଳୀବାବୁ । ଜୟଦେବ ଓ ଜଗନ୍ନାଥ ଦାସ ନାଟକରେ ଏହାକୁ ଦେଖି ବିଚ୍ଛନ୍ଦବାବୁ ତାକୁ ସ୍ୱୀକୃତି ଦେଇଥିଲେ ଓ ସ୍ମାରକୀ ସ୍ୱରୂପ ନିଜର ୯ର କଲମ କାଳିବାବୁଙ୍କୁ ଅର୍ପଣ କରିଥିଲେ ।

ଭଞ୍ଜ ଜୟନ୍ତୀରେ ବହୁ ବର୍ଷଧରି ଗୋଟିପୁଅ ନୃତ୍ୟ ପ୍ରଦର୍ଶ ହେଉଥିଲା ହେଁ କାର୍ଯ୍ୟକ୍ରମରେ ତାହା ଓଡିଶୀ ନୃତ୍ୟ ପ୍ରଦର୍ଶନ ଭାବେ ଘୋଷିତ ହେଉଥିଲା । ଓଡିଶୀ ନୃତ୍ୟ ଓ ଓଡିଶୀ ସଙ୍ଗୀତର ପ୍ରଚାର ଓ ପ୍ରସାର ବିଚ୍ଛନ୍ଦ ଚରଣଙ୍କ ପ୍ରୟାସରୁ ଉଦ୍ଭୂତ ହୋଇଛି । ଏଣୁ ତାଙ୍କ ଜନ୍ମ ଦିବସକୁ 'ଓଡିଶୀ ସଂଗୀତ ନୃତ୍ୟ' ଦିବସ ରୂପେ କଳିଙ୍ଗ ଭାରତୀ ପାଳନ କରୁଛି । ଓଡିଶୀ ସଂଗୀତ ଓ ନୃତ୍ୟ ସମ୍ବନ୍ଧୀୟ କାଳିବାବୁଙ୍କ ପୁସ୍ତିକା ଦୁଇଟି ସେ ଅନୁବାଦ କରି , ନିଜ ନାମ ଗୋପନ କରି ଏହି ସଙ୍ଗୀତ ନୃତ୍ୟ ପ୍ରତି ପ୍ରଗାଢ଼ ଅନୁରକ୍ତି ଦର୍ଶାଇଛନ୍ତି ।

ଭଞ୍ଜ ଓଡିଶାର ସଂସ୍କୃତିକୁ ଚିହ୍ନି ଚିହ୍ନାଇଛନ୍ତି । ଜଗନ୍ନାଥ ଓଡିଶାର ସଂସ୍କୃତି ପ୍ରତିକ ବୋଲି ସାରା ଓଡିଶାରେ ଆଜି ସମ ସ୍ୱରରେ ଧ୍ୱନିତ । ଏ ଧ୍ୱନିର ସ୍ରଷ୍ଟା ବିଚ୍ଛନ୍ଦ ଚରଣ । ରାଜଲକ୍ଷ୍ମୀ ସୁନ୍ଦର ଭାବେ ଦର୍ଶାଇ ପାରିଛି କିପରି ଜଗନ୍ନାଥଙ୍କୁ ଓଡିଶା ସଂସ୍କୃତିର ପ୍ରତୀକ କହି ବିଚ୍ଛନ୍ଦ ବାବୁ ତତ୍କାଳୀନ ତଥା କଥିତ ଧର୍ମ ନିରପେକ୍ଷବାଦୀ ମୁଖ୍ୟ ମନ୍ତ୍ରୀଙ୍କ ବିରାଗ ଭାଜନ ହୋଇଥିଲେ । ଭଞ୍ଜଙ୍କ ଇଂରାଜୀ ଅନୁବାଦ କରି କୋପ ଦୃଷ୍ଟିରେ ପଡିଥିଲେ । ରକ୍ତଲେଇ ହୁକୁମ ଔଷଧ ଖାଇ ଟିକେ ବିନା ଅଶ୍ରୟରେ ଚାଲିବାରୁ ଖବରକାଗଜରେ ପ୍ରଶ୍ନବାଣ ବାହାରିଲା । ବିଚ୍ଛନ୍ଦଙ୍କ ବ୍ୟାଧି ମୁକ୍ତି- ରକ୍ତଲେଇ ବିରୋଧୀ ସରକାରଙ୍କ କୋପ ବୃଦ୍ଧିକଲା। ସବୁ କୋପ ସତ୍ତ୍ୱେ ବିଚ୍ଛନ୍ଦ ଚରଣଙ୍କ ପ୍ରକୋପ କମି ନାହିଁ । ପ୍ରୟାସ ହୋଇଛି ଅବ୍ୟାହତ - ପରିକଳ୍ପନା ଓ ଯୋଜନା ହୋଇଛି ଅପ୍ରତିହତ । ଓଡିଆ ପ୍ରାଣର ଅପ୍ରତିଦ୍ୱନ୍ଦୀ ପ୍ରତୀକ ହେଉଛନ୍ତି ବିଚ୍ଛନ୍ଦ ଚରଣ । ସେତୁ ବନ୍ଧର ନଳକୁ ଭଞ୍ଜ ବିଚ୍ଛନ୍ଦସୁତ କହିବାରୁ ପ୍ରଫେସର ଗୌରୀକୁମାର ବ୍ରହ୍ମା ଉଲ୍ଲାସରେ ସେ ଉପାଧି ମୋତେ ଦେଇ ଏଭଳି ପ୍ରଚଣ୍ଡ ମାର୍ତ୍ତଣ୍ଡଙ୍କ ଆତ୍ମଜ ହେବାର ଗୌରବ ମଧ୍ୟ ଦେଇଛନ୍ତି । ମୋ ପାଖରୁ ପ୍ରେରିତ ପତ୍ରରେ ପ୍ରକାଶ ପାଇଛି ତାଙ୍କର ଅନାବିଳ ପ୍ରେମ । କବି ପତ୍ନୀ ନେତ୍ରମଣି ପରମ ବୈଷ୍ଣବୀ ଓ ଅପରୂପା ମାତୃ ମୂର୍ତ୍ତୀ । ତାଙ୍କ କଥା ଯଥାର୍ଥ ଭାବେ ବର୍ଣ୍ଣିତ ହୋଇଛି ଏ ଗ୍ରନ୍ଥରେ । ଉଭୟଙ୍କ ଧର୍ମ ମତବାଦ ଓ ଆଚରଣ ମୋ ଜୀବନକୁ ନିୟନ୍ତ୍ରିତ କରିଛି ।

ଦୁଇଟି କଥା ତାଙ୍କଠୁଁ ଶିଖିଛି । ଗୋଟିଏ ହେଲା ପାତି ମାଙ୍କଡ କଥା- ପଳେଇଲେ ଗୋଡାନ୍ତି । ଗୋଡେଇଲେ ପଳାନ୍ତି । ଶତ୍ରୁର ସାମ୍ନା କରି ମୁଁ ଗୋଡେଇଛି ସିନା ପଳେଇ ନାହିଁ । ତାଙ୍କ ମାଆ କହୁଥିଲେ ' ମରିବ ହଂସ ନଖାଇବ ଗୋରୁ ମାଂସ । ତାଙ୍କଠାରୁ ଶିଖି ପଦ୍ମ ମୃଣାଳ ଖାଇ ବଞ୍ଚିବା ଶିଖିଛି । ମରିବା ଭଳି ପରିସ୍ଥିତିରେ ମଧ୍ୟ ଗୋ ମାଂସ ଖିଆ ଅଲୋଡା ଜୀବନ ଚାହିଁ ନାହିଁ ।

ରାଜଲକ୍ଷ୍ମୀଙ୍କୁ ସାଧୁବାଦ ଓ ଶୁଭାଶିଷ ।

୧୪-୧୦୨୦୦୨

ରଜତ କୁମାର କର
ସଭାପତି କଳିଙ୍ଗ ଭାରତୀ

## ସ୍ୱପ୍ନର କଥା

ମୋର ବାପା ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଥିଲେ ଜଣେ ସଂଗ୍ରାମୀ ପୁରୁଷ । କେବଳ ସଂଗ୍ରାମୀ କହିଦେଲେ ତାଙ୍କ ପ୍ରତି ଅସମ୍ମାନ ହେବ । ସେ ଥିଲେ ଦୁର୍ଦ୍ଦମନୀୟ ସଂଗ୍ରାମୀ । ତାଙ୍କର ସଂଗ୍ରାମ ଥିଲା ସାଲିସ୍ ବିହୀନ । ସେ କହୁଥିଲେ - 'ଆମର ସଂଗ୍ରାମ ବହୁମୁଖୀ- ପ୍ରଥମ ସଂଗ୍ରାମ ହେଉଛି ବିଜାତୀୟ ଭାବନା ସହ । କିନ୍ତୁ ଏଥିପାଇଁ ଆବଶ୍ୟକ ପ୍ରାକ୍ ସଂଗ୍ରାମ ପ୍ରସ୍ତୁତି - ଆମ ହୀନ ମନ୍ୟତା ସହ ସଂଗ୍ରାମ ।'

ସେଇ ଜାନୁଆରୀ ୧୪ ତାରିଖ ୧୯୬୧ ମସିହା ଦିନ ତାଙ୍କର ଆତ୍ମୀୟ ସ୍ୱଜନ ଅନୁଗାମୀ ଓ ବନ୍ଧୁ ସପକ୍ଷ ବିପକ୍ଷବାଦୀ ସିନା ବାପାଙ୍କ ମର ଶରୀରକୁ ଆମଠାରୁ ଛଡେଇ ନେଇଗଲେ , ହେଲେ ତାଙ୍କ ଅମ୍ଳାନ ସ୍ମୃତି ଟିକକ ? ତାକୁ ପୁଞ୍ଜି କରି ଆମେ ବଞ୍ଚିବା ପାଇଁ ସଂଗ୍ରାମ କଲୁଁ । ମହାକାଳ ତା ଉପରେ କେତେ ଧୂଳି ଅଜାଡି ଦେଲାଣି । ତଥାପି ସେ କାଳର ଧୂଳି ଗଦା ଭିତରୁ ସେଇ ସ୍ମୃତି କାଣିଚାଏ ଏବେ ବି ପୂର୍ବଠାରୁ ଅଧିକ ଉଜ୍ଜ୍ୱଳ ଭାବେ ପ୍ରତିଭାତ ହେଉଛି । ସାରା ଜୀବନ ଯିଏ ଏ ଦେଶ ପାଇଁ କାନ୍ଦିଥିଲେ, ସଂଗ୍ରାମ କରିଥିଲେ ତାଙ୍କୁ କ'ଣ ଏତେ ସହଜେ ଭୁଲି ହୁଏ , ଏ ଦେଶ ଭୁଲି ଯାଇପାରେ ? ସେ ଅପାଶୋରା ଅତୀତ ପ୍ରତି ମୁହୂର୍ତ୍ତରେ ଏବର ଘଟଣା ଭଳି ମୋର ମନେ ହୁଏ । ନିର୍ଜନରେ ବସି ବାପାଙ୍କ ଅତୀତ କାହାଣୀକୁ ମନେ ପକାଉ ଥିଲା ବେଳେ ଏ ଗ୍ରନ୍ଥର ପରିକଳ୍ପନା । ବାପାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ଏହା ଏକ ଛୋଟ ପ୍ରୟାସ ।

ବଞ୍ଚିଥିଲା ବେଳେ ବାପା କେବଳ ଗୋଟିଏ ଜାଗାରେ ରହୁଥିଲେ । ଘର ଠାରୁ ଦୂରରେ ଥିଲେ ତାଙ୍କ ପାଇଁ ବ୍ୟସ୍ତ ଲାଗୁଥିଲା । ଘରେ ପହଞ୍ଚିଲେ କୋଟିନିଧି ମିଳି ଯାଉଥିଲା । ମାତ୍ର ସେ ଏବେ ବିଦେହୀ ହେଲାପରେ ଆମ ମନ ପ୍ରାଣ ସର୍ବତ୍ର ପରିବ୍ୟାପ୍ତ ହୋଇଗଲେ । କେତେବେଳେ ନିରୋଳାରେ ବସିଲେ ତାଙ୍କ ମୁହଁ ଝଟକି ଉଠେ । ସ୍ୱପ୍ନରେ ସେ ଖୁବ୍ ପାଖରେ ଥିଲା ପରି ଲାଗନ୍ତି । ଭଲ ମନ୍ଦ ଦିନରେ ତାଙ୍କ ପାଇଁ ମନ ଆଉଟ ପାଉଟ ହୁଏ । ଜ୍ୱର ବାଧିକିରେ ତାଙ୍କ ଆଉଁସା ସ୍ପର୍ଶ ଅନୁଭୂତ ହୁଏ ।

ବାପାଙ୍କ ଗତ ହେବାର ତିନି ଦିନ ପରେ ମାଆ. ଭାଇ ଆଉ ମୁଁ ଏକ ସମୟରେ ତାଙ୍କ ଦର୍ଶନ ଲାଭ କଲୁଁ । ମଧ୍ୟରାତ୍ରରେ ମାଆ ସ୍ୱପ୍ନ ଦେଖିଲା ଯେ ବାପା ଆମ ଘରେ ପୂଜା ପାଉଥିବା ଜଗନ୍ନାଥଙ୍କ ମୂର୍ତ୍ତି ମଧ୍ୟରେ ଲୀନ ହୋଇ ଯାଉଛନ୍ତି ।

ମାଆ କାନ୍ଦି ଉଠିଲା ବେଳକୁ ତାଙ୍କ ନିଦ ଭାଙ୍ଗି ଗଲା । ସେଇ ସମୟରେ ତାଙ୍କ ମଧ୍ୟ ଅର୍ଦ୍ଧ ଜାଗ୍ରତ ଅବସ୍ଥାରେ ବାପାଙ୍କ ହାତର ସ୍ପର୍ଶ ଅନୁଭବ କରୁଥିଲେ । ମାତ୍ର ମୁଁ ଦେଖିଥିବା ସ୍ୱପ୍ନ ଥିଲା ଅଧିକ ରୋମାଞ୍ଚକର । ଏବେ ବି ତାହା ମନେ ପଡିଲେ ମୋର ଦେହ ଶୀତେଇ ଉଠେ । ମୁଁ ଦେଖୁଚି ତାଙ୍କ ମର ଦେହ ଆମ ଶୋଇବା ଘର ଚଟାଣରେ ଥୁଆ ହୋଇଥାଏ । ମୁଁ ଟିକେ ଦୂରରେ ଠିଆ ହେଇ କାନ୍ଦୁଛି । ବାପା ମୋତେ ଡାକି ଘର ଓଳେଇବା ଝାଡୁଟି ଆଣିବାକୁ ଆଦେଶ ଦେଲେ । ମୁଁ ତାଙ୍କ ନିର୍ଦ୍ଦେଶ ମାନିଲି । ଝାଡୁର ପଛ ପଟ ମୁଠେଇ ଧରି ତାର ଆଗ ପଟେ ତାଙ୍କୁ ବାଡେଇ ଯିବା ପାଇଁ ସେ କହିଲେ । ତାଙ୍କର ଏପରି ଅଜବ ନିର୍ଦ୍ଦେଶରେ ମୁଁ ଆଶ୍ଚର୍ଯ୍ୟ ଓ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଯାଇ ଥାଏଁ । କହିଲି- ଆପଣ ମୋ ବାପା । ମୁଁ ଝାଡୁରେ ବାଡେଇବି କେମିତି ?

ସେ ମୋତେ କହିଲେ ମୁଁ ପରା ତୋତେ ଆଦେଶ ଦେଉଛି । ଏଥିରେ ତୋର ଦୋଷ ନାହିଁ । ମୁଁ ତାଙ୍କ ଆଦେଶ ମାନି ବାଡେଇ ଦେଇଗଲି । ଦେଖିଲି- ମୁଣ୍ଡପାଖରୁ ତାଙ୍କ ଚମଡାଟା ଗୋଟାସାରା ବାହାରି ତଳେ ପଡିଗଲା । ଏକ ରକ୍ତ ବର୍ଣ୍ଣର ତେଜୋଦୀପ୍ତ ବାପାଙ୍କ ଶରୀର ସାରା ଗୃହକୁ ଆଲୋକିତ କରି ଦେଇଥାଏ । ମୋ କାନ୍ଦ ସେତେବେଳେ ଅସମ୍ଭାଳ । ମୋତେ ବୁଝାଇଲା ଭଳି ସେ କହିଲେ – ଦେଖିଲୁ ସେଇଟା ଥିଲା ମୋର ମିଛ ଦେହ । ଯାହା ଦେଖୁଚୁ ସେଇଟା ହେଉଛି ମୋର ପ୍ରକୃତ ଦେହ । ଏତିକି କହି ସେ ମୃତ ଶରୀର ସହ ବାପା ଅନ୍ତର୍ଦ୍ଧାନ ହୋଇଗଲେ ।

ମୋର ଏ ସ୍ୱପ୍ନ ବୃତାନ୍ତ ନିଶ୍ଚୟ ଅବିଶ୍ୱସନୀୟ । ହେଲେ ମୁଁ ତ ସ୍ୱପ୍ନ ଦେଖିଛି । ଅନେକଙ୍କୁ ଏ କଥା କହିଛି । କାହାକୁ କେବେ ବୁଝେଇ ପାରିବି ନାଁ ଦେଖେଇ ପାରିବି ଯେ !

ବାପା ଏବଂ ତାଙ୍କ ସମସାମୟିକ ଅନେକ ହିତୈଷୀ ଏବଂ ବିରୋଧୀ ଏ ମାଟିରୁ ସେ ପୁରକୁ ଚାଲି ଗଲେଣି । ସେଇ ଅମର ପୁରରୁ ସେମାନେ ଦେଖୁଥିବେ ଏ କଂକାଳ ସାର ଓଡିଶାର ଦୟନୀୟ ଅବସ୍ଥା । ଦିନେ ଯେଉଁ ଦେଶର ସନ୍ତାନ ବାଣିଜ୍ୟ କରି ନିଜ ଦେଶକୁ ଅକଳନ୍ତି ଧନ ଧାନ୍ୟରେ ପୂର୍ଣ୍ଣ କରିଥିଲା, କଳା କୃତିରେ ଦେଶର ମଥାକୁ ନୀଳ ଗଗନରେ ସ୍ପର୍ଶ କରାଇଥିଲା , ସେଇ ଓଡିଆ ପୁଅ ଏବେ ଅନ୍ୟର ହାତଟେକା ଦାନ ଉପରେ ନିର୍ଭର କରିଛି । ଆଉ ଭିଖାରୀର ସ୍ୱାଭିମାନ ବୋଲି କିଛି ଥାଏକି ? ପରର ସ୍ତାବକ ସାଜି ଓଡିଆ ପୁଅ ହୀନ ମନ୍ୟତାର ଶିକାର ହୋଇଛି । ବାପା ଉତ୍କଳୀୟଙ୍କ ହୀନମନ୍ୟତାରେ ବ୍ୟଥିତ ହୋଇ ମା ଉତ୍କଳ ଭାରତୀଙ୍କଠାରେ ପ୍ରାର୍ଥନା କରିଥିଲେ-

ଶୂର ବୀର ବକ୍ଷେ ବହ ଆଉ ବାରେ

କେଶରି- ଗହ୍ୱର ଭଳୁ କେଶରୀରେ
ବିଛନ୍ଦ -ମଉଳି ନତ କାହାଠାରେ
ନୋହୁ ମା ତ୍ରିଦଶ କାମ୍ୟାଗୋ , ଶସ୍ୟ ଶ୍ୟାମା ।

ଇହ ଜଗତରୁ ତାଙ୍କର ମର ଶରୀର ସିନା ଚାଲି ଯାଇଛି ହେଲେ ତାଙ୍କର ସଂଗ୍ରାମୀ ଆତ୍ମା ପୁରୁଷଟି ତାଙ୍କ ଅନୁଗାମୀ ଓ ଶିଷ୍ୟଙ୍କମଧ୍ୟରେ ଲୁଚି ଛପି ରହିଛି । ସେ ଅଦୃଶ୍ୟରେ ରହି ସମସ୍ତଙ୍କୁ ପଥ ପ୍ରଦର୍ଶନ କରୁଛନ୍ତି । ସେ କହୁଥିଲେ - ଯୁଦ୍ଧ ସରି ନାହିଁ, ଅରି ଫେରି ନାହିଁ । ଯେତେ ଦିନ ପର୍ଯ୍ୟନ୍ତ ଆମ ଚିତ୍ତରୁ ହୀନମନ୍ୟତାର ବ୍ୟାଧି ନିରାକୃତ ନ ହୋଇଛି ଆମେ ସଂଗ୍ରାମ ସରିଛି ବୋଲି କହି ପାରିବୁ ନାହିଁ ।

ବାପାଙ୍କ ମୃତ୍ୟୁ ଦିନ ତାଙ୍କର ବନ୍ଧୁ ବିରୋଧୀ ଓ ଅବିରୋଧୀଙ୍କ ଧାରଣା ହୋଇଥିଲା, ଏହା ପରେ 'କଳିଙ୍ଗ ଭାରତୀ' ଓ ଭଞ୍ଜ ଜୟନ୍ତୀ ଅଚିରେ ଲୋପ ପାଇ ଯିବ । ମାତ୍ର ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଏପରି ହୋଇ ନାହିଁ । କାଳଦ୍ୱାରା କବଳିତ ହୋଇ ଏ ଦେଶର ତଥା କଥିକ କଳାପାହାଡମାନଙ୍କଦ୍ୱାରା ଅବହେଳା ଓ ନିର୍ଯ୍ୟାତନାର ଶିକାର ହୋଇ ଶୁଦ୍ଧା ନିଜର ଦଧିନଉତି, ମୁଖଶାଳା ହରାଇ କୋଣାର୍କ ବଞ୍ଚି ରହିଲା ଭଳି, ନାନା ବିଧର୍ମୀଙ୍କ ଆକ୍ରମଣ କବଳିତ ହୋଇ ଜଗତର ନାଥ ଜଗନ୍ନାଥ ତିଷ୍ଠି ରହିଥିଲା ଭଳି ବାପାଙ୍କ ସ୍ୱାର୍ଥ ମେଧ ଯଜ୍ଞର ଲେଲିହାନ ଶିଖାରେ ଯେଉଁମାନେ ଆଲୋକିତ ସେହି କଳିଙ୍ଗ ଭାରତୀର ସାଧକ ବର୍ଗ ତାଙ୍କ ପ୍ରିୟ ନମସ୍ୟ ଗୁରୁଦେବଙ୍କ ଏକ ନିଷ୍ଠ ଦାମ୍ଭିକତାର ଉତ୍ତରାଧିକାରୀ ହୋଇ ଏହି ଅନୁଷ୍ଠାନକୁ ବଞ୍ଚାଇ ରଖିଛନ୍ତି, ଏବଂ ପାରଂପରିକ ରୀତିରେ ଭଞ୍ଜ ଜୟନ୍ତୀ ଓ ଓଡିଶାର ସାଂସ୍କୃତିକ ଯଜ୍ଞରେ ଆହୁତି ପ୍ରଦାନ କରୁଛନ୍ତି । ଏହି ନିଃସ୍ୱାର୍ଥପର ପୂଜ୍ୟପୂଜାରେ କୌଣସି ବାଧା ଆସିବାର ସମ୍ଭାବନା ନାହିଁ ।

ବାପାଙ୍କ ପୂର୍ବ ଇଛା ଓ ମୋର ସ୍ୱପ୍ନକୁ ସାକାର କରିବା ପାଇଁ ଏଇ ପୁସ୍ତକ ମଧ୍ୟରେ ପ୍ରୟାସ କରିଛି । ଏଥିରେ ମୋର ଆତ୍ମ ପ୍ରୌଢ଼ୀ ନାହି କି ନିଜ ବାପାଙ୍କୁ ପାଠକ ଆଗରେ ଥୋଇବାର ଇଛା ନାହିଁ । କେବଳ ଜଣେ ସଂଗ୍ରାମୀ ଓ ଦରଦୀ ବ୍ୟକ୍ତିର ଚିର କଣ୍ଟକିତ ପଥକୁ ସାମାନ୍ୟ ଆଲୋକିତ କରିବାର ଇଛା ଏଥିରେ ଅଛି । ଉତ୍ତର ପିଢ଼ୀ ଏଥିରୁ କିଛି ଶିଖି ପାରିଲେ ମୋର ସ୍ୱପ୍ନ ସାର୍ଥକ ହେବ , ବାପାଙ୍କ ସଂଗ୍ରାମୀ ପ୍ରାଣ ଶୀତଳ ହେବ । ୧୯୮୮ ମସିହାରୁ ଏ କାର୍ଯ୍ୟ ଆରମ୍ଭ କରିଥିଲେ ହେଁ ଏହା ଆତ୍ମ ପ୍ରକାଶ କରିବାରେ ବହୁ ବିଳମ୍ବ ହୋଇଗଲା । ଏଥିପାଇଁ ସହୃଦୟ ପାଠକ ପାଖରେ କ୍ଷମା ମାଗି ନେଉଛି । ଏହି ପୁସ୍ତକ ରଚନା କାଳରେ ମୋର ଅଜାଣତରେ ମୁଁ କୌଣସି ବ୍ୟକ୍ତି ବା ଅନୁଷ୍ଠାନ ପ୍ରତି କିଛି କିଛି ମନ୍ତବ୍ୟ ପ୍ରଦାନ କରି ସେମାନଙ୍କୁ ଆଘାତ ଦେଇଥିଲେ ତାହା ମୋର ଅନିଛାକୃତ ବୋଲି ଗ୍ରହଣ କରିବାକୁ ଅନୁରୋଧ ।

ଏ ପୁସ୍ତକ ପ୍ରଣୟନରେ ମୁଁ ବାପାଙ୍କ ଦୀର୍ଘ ଜୀବନର ଅନୁଭୂତିରୁ କାଣିଚାଏ ମାତ୍ର ଲିପିବଦ୍ଧ କରିଛି । ଏହାର ବହୁ ଅଂଶ ମୋର ଚିନ୍ତା ଚେନତାର ଅନ୍ତରାଳରେ ରହି ଯାଇଛି । ଅନେକ ତଥ୍ୟ ମୋର ଅଗୋଚରରେ ରହି ଯାଇଛି । ସହୃଦୟ ପାଠକସେ ବିଷୟରେ ସୂଚନା ଦେଲେ ପରବର୍ତ୍ତୀ ସଂସ୍କରଣରେ ସ୍ଥାନିତ କରିବାର ପ୍ରତିଶ୍ରୁତି ଦେଉଛି ।

ଏହି ପୁସ୍ତକ ରଚନା କାଳରେ କଳିଙ୍ଗ ଭାରତୀର ସାଧକ ରଜତ ଭାଇ, ହୃଦାନନ୍ଦ ଭାଇ, ଚନ୍ଦ୍ରଶେଖର ଭାଇ , ଶୈଳେଶ୍ୱର ଭାଇ ଓ ଅଜିତ ଭାଇ ମୋତେ ବହୁଭାବରେ ଉତ୍ସାହିତ କରିଛନ୍ତି । ଏହା ଫଳରେ ମୋର ଏହି କାର୍ଯ୍ୟ ନିର୍ବିଘ୍ନରେ ସମାପ୍ତ ହୋଇଛି । ଆମର ପାରିବାରିକ ବନ୍ଧୁ ତଥା ଓଡିଆ ରିଡର ଡକ୍ଟର ବନମାଳୀ ବାରିକ ମହୋଦୟ ପ୍ରତି ପଦକ୍ଷେପରେ ମୋତେ ଉତ୍ସାହିତ କରିବା ସହ ପୁସ୍ତକର ଆଶୁ ପରିସମାପ୍ତି କାମନା କରିଛନ୍ତି । ମୁଁ ଏହି ମହାନୁଭବ ଭାଇ ଓ ବନ୍ଧୁଙ୍କଠାରେ ମୋର ଆନ୍ତରିକ କୃତଜ୍ଞତା ଅର୍ପଣ କରୁଛି ।

ମୋର କନିଷ୍ଠ ପୁତ୍ର ଶ୍ରୀମାନ୍ ସତ୍ୟ ଏହାର ଡିଟିପି କାର୍ଯ୍ୟ ଏବଂ ମଧ୍ୟମ ପୁତ୍ର ଶ୍ରୀମାନ୍ ଶକ୍ତି ଏହାର ଲେ ଆଉଟ ପ୍ରସ୍ତୁତ କରିଛନ୍ତି । ଜ୍ୟେଷ୍ଠ ପୁତ୍ର ଅଧ୍ୟାପକ ଶ୍ରୀମାନ୍ ସିଦ୍ଧାର୍ଥ ଶଙ୍କର ଏହାର ପ୍ରକାଶ ଦାୟିତ୍ୱ ,ପୁତ୍ର ବଧୂ ସଂଜନା ଘରର ଯାବତୀୟ ଦାୟିତ୍ୱ ନେଇ ମୋତେ ଏ କାର୍ଯ୍ୟ ସଂପାଦନରେ ପ୍ରଭୂତ ସାହାଯ୍ୟ କରି ତାଙ୍କ ଅଜାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ମୁଁ ଏହି ଅବସରରେ ସେମାନଙ୍କୁ ଆଶୀର୍ବାଦ ପ୍ରଦାନ କରୁଛି ।

ମକର ସଂକ୍ରାନ୍ତି ୨୦୦୨ — ରାଜଲକ୍ଷ୍ମୀ ମହାନ୍ତି


ଧନ୍ୟବାଦ

ଗ୍ରନ୍ଥ ପ୍ରକାଶିନୀର ଶ୍ରୀମାନ୍ ସ୍ୱୟମ୍ଭୂ ମହାପାତ୍ର ଏବଂ ସ୍ୱର୍ଣ୍ଣ ର ଶ୍ରୀମାନ୍ ମନୋଜ କୁମାର ଏହି ଗ୍ରନ୍ଥର ଆଶୁ ପ୍ରକାଶନ ପାଇଁ ଆବଶ୍ୟକୀୟ ତତ୍ପରତା ପ୍ରଦର୍ଶନ କରନ୍ତି ପଦ୍ମାଳୟା ଷ୍ଟୁଡିଓର ଶ୍ରୀମାନ୍ ସୁକାନ୍ତ କୁମାର ଦାସ ସମସ୍ତ ପୁରାତନ ଫଟୋକୁ ଡିଜିଟାଲ କ୍ୟାମେରା ମାଧ୍ୟମରେ ପୁନର୍ମୁଦ୍ରାର କରି ଆମ୍ଭକୁ ପ୍ରଦାନ କରିଛନ୍ତି । ମୁଁ ଏହି ଅବସରରେ ଉକ୍ତ ଯୁବ ପ୍ରତିଭାକୁ ସାଧୁବାଦ ଦେବା ସହିତ ସେମାନଙ୍କ ଜୀବନର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ପ୍ରକାଶକ

ସୂଚୀପତ୍ର .....

ଶ୍ରୀ ଚନ୍ଦ୍ରଶେଖର ନନ୍ଦ
ଉପ ସଭାପତି, କଳିଙ୍ଗ ଭାରତୀ, କଟକ

କଳିଙ୍ଗ ଭାରତୀର ପ୍ରତିଷ୍ଠାତା ବିଛନ୍ଦ ଚରଣ ପଟ୍ଟନାୟକଙ୍କ ସମ୍ବନ୍ଧରେ ଏଥି ପୂର୍ବରୁ ଚାରୋଟି ପୁସ୍ତକ ରଚିତ ହୋଇ ଅଛି । ସେ ଗୁଡିକ ହେଲା, କଳିଙ୍ଗ ପ୍ରାଣ ବିଛନ୍ଦ ଚରଣ( କଳିଙ୍ଗ ଭାରତୀ ), ବିଛନ୍ଦ ଚରଣ ପଟ୍ଟନାୟକ( ଲେ. ଶ୍ରୀ ହୃଦାନନ୍ଦ ରାୟ ), ବିଛନ୍ଦ ସ୍ମରଣିକା(ସଂ. ମୁରାରି ମୋହନ ଜେନା ) ଓ ଛନ୍ଦ କବି ବିଛନ୍ଦ ଚରଣ ( ଲେ. ଶ୍ରୀ ଜଗନ୍ନାଥ ମିଶ୍ର ) । ଶ୍ରୀମତୀ ରାଜଲକ୍ଷ୍ମୀ ମହାନ୍ତିଙ୍କ ଦ୍ୱାରା ରଚିତ"ମୋ ସ୍ମୃତିରେ ବାପା, ବିଛନ୍ଦ ଚରଣ ପଟ୍ଟନାୟକ" - ଏହି କ୍ରମରେ ପଞ୍ଚମ ପୁସ୍ତକ ।

ଶ୍ରୀମତୀ ରାଜଲକ୍ଷ୍ମୀଙ୍କ ଦ୍ୱାରା ରଚିତ ପୁସ୍ତକର ବୈଶିଷ୍ଟ୍ୟ ଓ ମର୍ଯ୍ୟାଦା ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଭାଷାର ସାରଲ୍ୟ ଭାବର ସ୍ୱଚ୍ଛନ୍ଦ ପ୍ରବାହ, ଅନୁଭୂତିର ଉଚ୍ଛ୍ୱାସ ତଥା ବହୁ ନୂତନ ଘଟଣା ତଥା ପ୍ରସଙ୍ଗର ଉପସ୍ଥାପନା ଏହି ପୁସ୍ତକଟିକୁ ମହିମା ମଣ୍ଡିତ କରିଛି । ସବୁଠୁଁ ବଡ କଥା ହେଲା, ପୁସ୍ତକଟି ପାଠକଙ୍କଦ୍ୱାରା ଏକା ନିଃଶ୍ୱାସକେ ପଢ଼ି ହୋଇ ଯିବାର ସାମର୍ଥ୍ୟ ପୋଷଣ କରୁଛି ।

ଏହି ପୁସ୍ତକଟିକୁ ମୁଁ ଆମୂଳଚୂଳ ପାଠ କରିଛି । ପାଠ କଲା ବେଳେ ଅତୀତର ଆସ୍ତରଣ ଭେଦ କରି ଅନେକ ସ୍ମୃତି ଉଭାସିତ ହୋଇ ଉଠୁଛି । ପ୍ୟାରୀମୋହନ ଏକାଡେମୀରେ ପଢୁଥିଲା ବେଳେ ୧୯୫୪ ମସିହା ମଇ ମାସରେ କଲିଜିଏଟ୍ ସ୍କୁଲ ହତାରେ ହେଉଥିବା ସାତ ଦିନ ବ୍ୟାପି ଭଞ୍ଜ ଜୟନ୍ତୀ ଦେଖି ମୁଁ କଳିଙ୍ଗ ଭାରତୀ ପ୍ରତି ଆକୃଷ୍ଟ ହେଲି ଓ ତହିଁରେ ଯୋଗ ଦେଲି । ସେତେବେଳେ ମୁଁ ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇ ଥାଏଁ । ପ୍ରତି ରବିବାର ଦିନ ତଗରପଡାରେ ସାର୍ ରହୁଥିବା ଘରେ କଳିଙ୍ଗ ଭାରତୀରେ ସଭା ହୁଏ । ସେଠି ପୂର୍ବ ନିର୍ଦ୍ଧାରିତ ବିଷୟ ବସ୍ତୁ ଉପରେ ଆମକୁ ବକ୍ତୃତା ଦେବାକୁ ହୁଏ । ଭୁଲ ତ୍ରୁଟି ହେଲେ ସାର୍ ତାକୁ ନିଜେ ସଜାଡି ଦିଅନ୍ତି । ଭଞ୍ଜ ଜୟନ୍ତୀରେ , ସାରସ୍ୱତ ମହୋତ୍ସବରେ ସେତେବେଳେ ବହୁ ଜନସମାଗମ ହେଉଥିଲା । ସେହି ସ୍କୁଲ ଦିନରୁ ସେ ସମାବେଶରେ ଆମକୁ ବକ୍ତୃତା ଦେବା ପାଇଁ ସେ ଉତ୍ସାହିତ କରୁଥିଲେ । ସାର୍ ନିଜେ ଆମକୁ ପରିଚିତ କରାଇ ଲୋକଙ୍କୁ ଆମ ବକ୍ତୃତା ଶୁଣିବା ପାଇଁ ଅନୁରୋଧ କରୁଥିଲେ । ତାଙ୍କରି ଆଶୀର୍ବାଦ ଫଳରେ ବକ୍ତୃତା ଦେବାର କଳା ଶିକ୍ଷା କରାଗଲା ଓ କାଳକ୍ରମେ ଓଡିଶାର ବିଭିନ୍ନ ସଭା ସମିତିରେ ନିଜସ୍ୱ ସଂସ୍କୃତି ସମ୍ବନ୍ଧରେ ବକ୍ତୃତା ଦେବାର ଅବକାଶ ଏ ପର୍ଯ୍ୟନ୍ତ ମିଳି ଆସିଛି ।

୧୯୫୭ ମସିହାରେ ସପ୍ତମ ଶ୍ରେଣୀରେ ପଢୁଥିବା ବେଳେ ମୋର ପ୍ରଥମ କବିତା 'ମା' ମୀନାବଜାରରେ ପ୍ରକାଶିତ ହୋଇଥିଲା । ପରେ ପରେ ବିଭିନ୍ନ କବିତା ମୀନାବଜାର, ସମ୍ବାଦ ଓ ରଶ୍ମୀରେଖା ଏବଂ ପ୍ୟାରୀମୋହନ ଏକାଡେମୀର ମୁଖପତ୍ର ସାହିତ୍ୟ ସୋପାନରେ ପ୍ରକାଶିତ ହେଲା । କଳିଙ୍ଗ ଭାରତୀରେ ଯୋଗ ଦେବା ପରେ ମୁଁ ପ୍ରତି ସରସ୍ୱତୀ ପୂଜା, ଗଣେଶ ପୂଜା ଓ ବିଶେଷ ଦିନମାନଙ୍କରେ କବିତା ଲେଖି

ସାର୍‌ଙ୍କୁ ଭେଟି ଦେଉଥିଲି ଏବଂ ତାହା ସର୍ବ ସମ୍ମୁଖରେ ପାଠ କରାଯାଉଥିଲା । ୧୯୫୭ ମସିହାରେ ବଂପୂ ନାମକ ଏକ କାବ୍ୟ କ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରକୁ ପ୍ରତି ପାଦର ଆଦ୍ୟ ନିୟମ ଭାବରେ ଗ୍ରହଣ କରି ଚଉତିଶା ନ୍ୟାୟରେ ୩୪ଟି କବିତା ସନ୍ନିବେଶିତ କରି ସାର୍‌ଙ୍କୁ ଉତ୍ସର୍ଗ କରିଥିଲି । ଉତ୍ସର୍ଗ ପତ୍ରରେ ଲେଖିଥିଲି ,

କରୁଅଛି ଅରପଣ                    କରି ଦୟା ଗୁରୁଘେନ

କାବ୍ୟ ବିରଚିଲି ଯା ଷୋଡଶ ବୟଃରେ

କରୁଣା ହେତୁ ତୁମର                  କବିତା ଉଦୟ ମୋର

ଆଗତ ଆଜି ତା ତୁମ୍ଭ କରସାର ରେ

ପୂଜି ଛୁଇଁ ତୁମ୍ଭ ପୟରେ

କଳିଙ୍ଗ ଭାରତୀ କୃପା କରିବେ ମୋରେ ।

୧୯୭୫ ମସିହା ଏପ୍ରିଲ ୨୦ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ଭବନରେ ସାରଙ୍କ ପ୍ରତିକୃତି ଉନ୍ମୋଚନ ଉତ୍ସବ ଦିନ ମୁଁ ରାଗ ଆହାରୀ ରେ ସାରଙ୍କ ସମ୍ବନ୍ଧରେ କବିତାଟିଏ ଲେଖି ସେଠାରେ ଅମର ଆତ୍ମା ଉଦ୍ଦେଶ୍ୟରେ ତାହା ଉତ୍ସର୍ଗ କରିଥିଲି । ଯଦିଓ କଳିଙ୍ଗ ଭାରତୀରେ ଯୋଗ ଦେବା ପୂର୍ବରୁ ମା ସରସ୍ୱତୀଙ୍କ କରୁଣାରୁ ମୁଁ କିଛି କଛି କବିତା ଲେଖିଥିଲି , କିନ୍ତୁ ତାହା ଯେ କଳିଙ୍ଗ ଭାରତୀରେ ଯୋଗ ଦେଲା ପରେ ବିକଶିତ ହେଲା ଏହା ନିଃସନ୍ଦେହ । ଏକଥା ମଧ୍ୟ ସତ୍ୟ ଯେ ତାକୁ ନିର୍ଦ୍ଦିଷ୍ଟ ଗତି ପଥରେ ଆଗେଇବା ପାଇଁ ସାର୍‌ହିଁ ତହିଁରେ ଦିଗବାରେଣୀ ଯନ୍ତ୍ର ଯୋଗ କଲେ । କଳିଙ୍ଗ ଭାରତୀର ସାହିତ୍ୟାଦର୍ଶ ସମ୍ବନ୍ଧରେ ସାର୍ ନିଜସ୍ୱ ଭାରତୀ ବନ୍ଦନା କବିତାରେ କହିଛନ୍ତି-

ଆଶାମୟୀ ନୂତନ ମୁରଲୀ ମୋହନ ବାଜୁ କୁଞ୍ଜେ ଉତ୍କଳର

ଶ୍ରାନ୍ତ ପୁରାତନ ମଣ୍ଡୁ ତା ବହନ ନେଇ ତା ରୁଦ୍ଧି ସମ୍ଭାର

କ୍ରମେ କଳିଙ୍ଗ ଭାରତୀର ସାହିତ୍ୟାଦର୍ଶ ମୋ ସାହିତ୍ୟାଦର୍ଶ ହେଲା । ଅମେ ନୂତନକୁ ସ୍ୱାଗତ କଲୁଁ, କିନ୍ତୁ ପାରମ୍ପରିକ ମୂଲ୍ୟବୋଧ ଭିତ୍ତିକ ସଂସ୍କୃତିରୁ ଦୂରେଇ ଯାଇ ନିଜକୁ ଛିନ୍ନ ମୂଳ କରିବାକୁ ଇଛା କଲୁ ନାହିଁ । ପରବର୍ତ୍ତୀ କାଳରେ ସାହିତ୍ୟର ବିଭିନ୍ନ ବିଭାଗରେ କିଛିକିଛି ଲେଖନୀ ଚାଳନା କରିଛି କିନ୍ତୁ କେବେ ବି ମୁଁ ଉକ୍ତ ଆଦର୍ଶରୁ ବିଚ୍ୟୁତ ହୋଇ ନାହିଁ । ଯେଉଁମାନେ ପରମ୍ପରା ଓ ନୂତନତ୍ୱ ଉଭୟର ସଂଯୋଗ କରି ସାହିତ୍ୟ ରଚନା କରନ୍ତି ସେହି ଧାଡିରେ ଆମେ ପରିଚିତ ହୋଇ ଗର୍ବ ଅନୁଭବ କରିଆସିଛୁ ।

ବିଧିର ଅଙ୍ଗୁଳି ନିର୍ଦ୍ଦେଶରେ ସାରଙ୍କ ଦେହାନ୍ତ ଦିନ ମୋତେ କଳା ପୋଷାକ ପିନ୍ଧିବାକୁ ପଡିଛି । ୧୯୬୧ ମସିହା ଜାନୁଆରି ମାସ ୧୪ ତାରିଖ ଦିନ ରେଭେନ୍ସା କଲେଜରେ ସମାବର୍ତ୍ତନ ଉତ୍ସବ ଥାଏ । ଏଥିରେ ମୁଁ ବି.ଏସ୍.ସି (ଅନର୍ସ ) ଡିଗ୍ରୀର ସାର୍ଟଫିକେଟ୍ ପାଇବି । ସେତେବେଳକୁ ବୁର୍ଲା ଇଞ୍ଜିନିୟରିଂ କଲେଜରେ ଯୋଗ

ଦେଇଥିଲେ ବି ସେଦିନ ମୁଁ କଟକ ଆସିଥାଏ । କଲେଜ ଯିବା ବାଟରେ ସାର୍‌ଙ୍କୁ ଦେଖା କରିବାକୁ ଡାକ୍ତରଖାନା ଗଲି । ସାର୍ ସେତେବେଳକୁ ଲୋକ ଚିହ୍ନି ପାରୁ ନଥାନ୍ତି । ପଚାରିଲେ କିଏ ? ମୁଁ ଚନ୍ଦ୍ର କହିଲାରୁ ସାର୍ ପଚାରିଲେ ରାମ କାହିଁ ? କଥା ହେଉଛି, ମୁଁ ଏବଂ ମୋର ବନ୍ଧୁ ରାମ ଚନ୍ଦ୍ର ଶତପଥୀ ଏକତ୍ର କଳିଙ୍ଗ ଭାରତୀ ଯାଉଁ । ସାର୍ ରାମ ଭକ୍ତ ଥିବାରୁ ଆମ ଦୁହିଁଙ୍କୁ ଏକତ୍ର ଦେଖି ରାମଚନ୍ଦ୍ର ବୋଲି ସମ୍ବୋଧନ କରନ୍ତି । ସମାବର୍ତ୍ତନ ଉତ୍ସବ ପରେ ମୁଁ ବାହାରକୁ ବାହାରି ଦେଖେଁ କିଶୋରୀ ( ପୁରୁଷୋତ୍ତମ ) ଠିଆ ହୋଇଛି । ଆଖି ତାର ଛଳ ଛଳ । କହିଲା ବାପା ଚାଲି ଗଲେ । ସେଇଠୁ ଆମେ ଚାଲିଲୁଁ ତଗରପଡା , ତା ପରେ ସତୀଚଉରା । ଆମ ଆଖି ଆଗରେ ଗୁରୁ ଦେବଙ୍କ ମର ଶରୀର ଚାହୁଁ ଚାହୁଁ ପୋଡି ପାଉଁଶ ହୋଇ ଗଲା । ସେମିତି ମାଉସୀ ( ଗୁରୁପତ୍ନୀ ) ନେତ୍ରମଣି ଦେବୀଙ୍କର ଯେଉଁ ଦିନ ସେହି ସତୀଚଉରାରେ ସଂସ୍କାର କରାଗଲା ସେ ଶିଖାର ବି ମୁଁ ସାକ୍ଷୀ ଅଛି । ମୁଁ ସାକ୍ଷୀ ଅଛି ଅମା (ଗୁରୁଦେବଙ୍କ କନ୍ୟା) ପୋଡି ଯାଇ କଟକ ବଡ ଡାକ୍ତରଖାନାରେ କିଭଳି ଛଟ ପଟ ହେଉଥିଲା ।

ପୁରୁଷୋତ୍ତମ ସାରଙ୍କ ଉପଯୁକ୍ତ ଦାୟାଦ, କଳିଙ୍ଗ ଭାରତୀର ସମର୍ଥ ସମ୍ପାଦକ । ରାଜ ଓ ସୁଧୀର ( ଅଧ୍ୟାପକ ଡକ୍ଟର ସୁଧୀର ଚନ୍ଦ୍ର ମହାନ୍ତି ) ସାରଙ୍କ ଯୋଗ୍ୟ ଝିଅ ଜୋଇଁ ।

ଏ ପରିବାର ସହିତ ମୋର ବ୍ୟକ୍ତିଗତ ସଂପୃକ୍ତି ଦୀର୍ଘ ୫୦ ବର୍ଷର । ଆମେ ଏ ପରିବାରର ଜଣେ ଜଣେ ସଦସ୍ୟ । କଳିଙ୍ଗ ଭାରତୀର ଆଦର୍ଶ ଆମ ଜୀବନର ଆଦର୍ଶ ଆମ ସାହିତ୍ୟର ଆଦର୍ଶ । ଶ୍ରୀମତୀ ରାଜଲକ୍ଷ୍ମୀ ପିତାଙ୍କ ଉଦ୍ଦେଶ୍ୟରେ ଏ ଯେଉଁ ପୁସ୍ତକଟି ରଚନା କରିଛନ୍ତି ଏହାହିଁ ତ ତର୍ପଣ । ଏ ପୁସ୍ତକ ଗୁରୁଦେବ ବିଛନ୍ଦ ଚରଣ ପଟ୍ଟନାୟକଙ୍କ ଅମର ଆତ୍ମାକୁ ଅବଶ୍ୟ ତୃପ୍ତି ଦେବ । ଓଡିଆ ସାହିତ୍ୟ ପ୍ରତି ଅନୁରାଗ ରଖିଥିବା ପାଠକ ଙ୍କୁ ଏହା ଓଡିଆ ସାହିତ୍ୟର ଇତିହାସ କହିବ ଓ ବିଛନ୍ଦ ଚରଣଙ୍କ ଆଦର୍ଶ ପ୍ରତି ସସମ୍ମାନ ଦୃଷ୍ଟି ଆକର୍ଷଣ କରିବ ।

ଶ୍ରୀମତୀ ରାଜଲକ୍ଷ୍ମୀଙ୍କ ଏ ମହନୀୟ ଉଦ୍ୟମକୁ ମୁଁ ଶ୍ରଦ୍ଧାର ସହ ପ୍ରଣାମ କରୁଛି । ମୋର ଆଶା ଓ ବିଶ୍ୱାସ ଏ ପୁସ୍ତକ ବହୁଳ ଭାବେ ପ୍ରସାରି ହେବ ।

ଚନ୍ଦ୍ରଶେଖର ନନ୍ଦ

## ସ୍ମୃତିର ଗବାକ୍ଷ :

୧୯୬୧ ମସିହା ଜାନୁୟାରି ୧୪ ତାରିଖ , ଶନିବାର । ଓଡିଆ ମାସ ଅନୁସାରେ ମାଘମାସ କୃଷ୍ଣ ପକ୍ଷ ଦ୍ୱାଦଶୀ ଦିନ ତନିଟାରେ ଆମ ସମସ୍ତଙ୍କୁ ଛାଡି ବାପା ଚାଲିଗଲେ ସବୁଦିନ ପାଇଁ । ଦୁଇଟି ପରିବାରରେ ଅମା ଅନ୍ଧାର ଘୋଟିଗଲା । ବାପା ଥିଲେ ଦୁଇଟି ପରିବାରର ଜନକ - ଗୋଟିଏ 'କଳିଙ୍ଗଭାରତୀ' ଅନୁଷ୍ଠାନ, ଅନ୍ୟଟି ତାଙ୍କ ସ୍ତ୍ରୀ ପୁତ୍ର କନ୍ୟା ଘେନି ପରିବାର । ବୟସ ଷାଠିଏ ହୋଇଥିଲେ ମଧ୍ୟ କାର୍ଯ୍ୟ ତାଙ୍କର ରହିଗଲା ଅସଂପୂର୍ଣ୍ଣ ।

ସେ ଦିନ ଥିଲା ଶନିବାର - ସକାଳ ସ୍କୁଲ । ଶ୍ରେଣୀ କକ୍ଷରେ ଦେଖା ହେଲା ମୋର ଅନ୍ତରଙ୍ଗ ସାଥୀ ଘନ କୁନ୍ତଳା ସହ । ତା ବାପାଙ୍କ ମୃତ୍ୟୁର ମାସେ ପରେ ଆଜି ସ୍କୁଲ ଆସିଛି । ଆମେ ସମସ୍ତେ ତାକୁ ଘେରି ଗଲୁଁ । ତା ଆଖି ଲୁହରେ ଟଳମଳ, ପାଟିରୁ ପଦେ କଥା ବାହାରୁ ନଥାଏ । ତାକୁ ଦେଖି ଗୋଟେ ଅଜଣା ଆତଙ୍କରେ ମୋ ଛାତି ଥରି ଉଠିଲା । ମନକୁ ସ୍ୱତଃ ପ୍ରଶ୍ନ ଉଠିଲା ମୋତେ କ'ଣ ଦିନେ ଘନ କୁନ୍ତଳାର ଦଶା ଭୋଗିବାକୁ ପଡିବ ?

ନାଁ ନାଁ ଠାକୁରେ ମୋତେ ଏପରି ହେବାକୁ ଦିଅନା । ତମ ଗୋଡ ତଳେ ପଡୁଚି । ହଁ ଘନକୁନ୍ତଳାର ବାପା ବହୁଦିନ ଧରି ରୋଗ ଶଯ୍ୟାରେ ପଡି ଏଇ ମାସକ ତଳେ ତାଙ୍କ ପରିବାରକୁ ଛାଡି ଚାଲି ଗଲେ । ତା ପାଖରୁ ଚାଲି ଆସି ମୋ ସ୍ଥାନରେ ବସିଲି । ହେଲେ ଆଉ ସ୍କୁଲ, ଶ୍ରେଣୀପାଠ, ସାଙ୍ଗ କେଉଁଥିରେ ମନ ଲାଗୁ ନଥାଏ । କେମିତି ଛୁଟି ହେଲେ ଘରକୁ ଫେରି ଡାକ୍ତରଖାନା ଯିବି ବାପାଙ୍କୁ ଦେଖିବାକୁ । ଘରେ ପହଞ୍ଚି ଦେଖିଲି 'ମାଧୋଉ' (ମାୟାଧର ମହାନ୍ତି) ସଙ୍ଗେ ସଙ୍ଗେ ହସ୍‌ପିଟାଲରୁ ଫେରି ଥାଆନ୍ତି । ନିତ୍ୟକର୍ମ ସାରି , ଘର କଥା ବୁଝି ପୁଣି ଫେରିଯିବେ ବାପାଙ୍କ ପାଖକୁ ।

ମାଆ ବାରଣ୍ଡା ଖମ୍ବକୁ ଆଉଜି ବସିଛି ମୁଣ୍ଡରେ ହାତ ଦେଇ । ଚମ୍‌କି ଛିଡା ହେଇ ଗଲି । ମାଆକୁ ଦେଖି ମୋତେ ଆହୁରି ଅସହାୟ ଲାଗିଲା । ପୁଣି ସେଇ ଅଜଣା ଆତଙ୍କ ତୁହାଇ ତୁହାଇମନରେ ପଡି ହୃଦୟକୁ ଦୋହଲାଇ ଦେଉଥାଏ ।

ସବୁ ଦିନ ପରି ସବୁ କାମ ଠିକ୍ ଠାକ୍ ଚାଲିଥାଏ । କିନ୍ତୁ ଘରଟା ଖାଁ ଖାଁ ଲାଗୁଚି । ଚାରିଆଡ ଯେମିତି ମାଡି ପଡୁଚି ।

ଖାଇ ସାରି ପଛ ପଟ ପଡିଶା ଘରକୁ ଚାଲି ଗଲି ମନ ଭୁଲେଇବା ପାଇଁ । ମୋତେ ଦେଖି 'ପୂନାମୁଁ'( ପୂର୍ଣ ଚନ୍ଦ୍ର ସ୍ୱାଇଁ - ଜଣେ ବିଶିଷ୍ଟ ଚିତ୍ରକର ସଂପର୍କରେ ଆମର ପଡୋଶୀ ) ମୋତେ ଡାକିଲେ ଲୁଡୁ ଖେଳିବାକୁ । ପାଖରେ ବସିଥିଲେ ନୂଆ'ଉ । ଚାରି ପାଞ୍ଚ ବାଜି ଖେଳିଲି । ସବୁଥିରେ ମୁଁ ଜିତିଲି ସତ, ହେଲେ ଖେଳରେ ମନ ଲାଗୁ ନଥାଏ । ଛାଟି ପିଟି ହେଇ ଘରକୁ ପଳାଇ ଆସିଲି । ପିଜୁଳି ଗଛ ମୂଳେ ଠିଆ ହେଲି । ଯାଦୁ ସ୍ୟାଦୁ ଭାବି ମନକୁ ବହଲାଇବାକୁ ଚେଷ୍ଟା କରୁଥାଏଁ । କିନ୍ତୁ ଏକ ଅଜଣା ଭୟରେ ମୋର ଦିହ ଶୀତେଇ ଉଠୁଥାଏ । ମନେ ମନେ ଭାବିଲି ଆଜି ପିଜୁଳି ନେଇ ବାପାଙ୍କ ପାଖକୁ ଯିବି । ପିଜୁଳି ତୋଳାରେ ନିଜକୁ ଭୁଲେଇ ଦେବା ଚେଷ୍ଟା କରୁଥାଏ ।

ହଠାତ୍ ଦାଣ୍ଡ କବାଟରେ କିଏ ଜଣେ ଡାକିଲେ । ବାପାଙ୍କ କିଛି ଖବର କେହି ଆଣି ଥିବ ଭାବି ଦୌଡି ଯାଇ ଚଟାପଟ୍ କବାଟ ଖୋଲି ଦେଲି । ଯିଏ ଆସିଥିଲେ ତାଙ୍କୁ ମୁଁ ଜାଣେ । ସେତେବେଳେ ସେ ବାପାଙ୍କ ପାଖ ବେଡ୍‌ରେ ରହି ଚିକିତ୍ସିତ ହେଉ ଥାଆନ୍ତି । ମୋତେ ଦେଖି ସେ ବେଶ୍ ଆବେଗରେ କହି ପକାଇଲେ -'ସାର୍ ଚାଲି ଗଲେ' । ମୁଁ ତାଙ୍କ କଥାବୁଝି ପାରିଲି ନାହିଁ- ଭାବିଲି ବାପା ବୋଧେ ଡାକ୍ତର ଖାନାରୁ ଘରକୁ ଚାଲି ଆସୁଛନ୍ତି । ମୋ ଭାବନା ଶେଷ ହେଇ ନାହିଁ ମାଆ ଆଉ ମାଧୋଉ ସେଠିକି ଦୌଡିଆସିଲେ । ମାଆ ସେଇଠି କଚାଡି ହେଇ ପଡିଲା । ସବୁ ସରିଗଲା ବୋଲି ମାଧୋଉ ପାଟି କରିଉଠିଲେ ।

ଓଃ, ସେ କି ବଜ୍ର ଆଘାତ । ପାଦ ତଳୁ ମାଟି ଘୁଞ୍ଚିଗଲା ଭଳି ମୋତେ ଲାଗିଲା । ବାପାଙ୍କୁ ଦେଖିବା ପାଇଁ ମୋ ମନ ବ୍ୟାକୁଳ ହେଇ ଉଠିଲା । ହିତାହିତ ଭୁଲି ମୁଁ ରାସ୍ତା ଉପରେ ଛୁଟି ଚାଲିଲି । ଚାକରଟି ମୋତେ ଦେଈ ଦେଈ କହି ଘର ଭିତରକୁ ଟାଣି ଆଣୁ ଥାଏ । ସେ ମୋତେ କୌଣସି ପ୍ରକାରେ ଫେରାଇ ଆଣିଲା ।

ଠାକୁର ଘର ଆଗରେ ଠିଆ ହେଲି । ଜଗନ୍ନାଥଙ୍କୁ ଦେଖି ଅଭିମାନରେ ମୋ ଛାତି ଫାଟି ପଡିଲା । ମନେ ମନେ ପଚାରିଲି - 'ହେ ଠାକୁରେ, କେଉଁ ଦୋଷ , ନାଁ କି ପାପ କରିଥିଲୁଁ ଆମ ପରିବାର ଯେ ଆମ ଭାଇ ଭଉଣୀ ତିନିକୁ ଏତେ କମ୍ ବୟସରୁ ବାପ ଛେଉଣ୍ଡ କରି ଦେଲ । ଆମ ପାଖରୁ ବାପା ଡାକ ଛଡାଇ ନେଲ !

ଚଉରା ମୂଳରେ ମାଆ ଦେଇ ଥିବା ଦ୍ୱିପହରର ଧୂପ ସେ ଯାଏଁ ଲିଭି ନଥିଲା । ବାପାଙ୍କ ସୁସ୍ଥ ପାଇଁ ମାଆ ସ୍ୱତନ୍ତ୍ର ଧୂପ କେବେରୁ ଦେଇ ଆସୁଥିଲା ବୃନ୍ଦାବତୀଙ୍କୁ । କିନ୍ତୁ କେହି ମାଆର ଆକୁଳ ଆବେଦନ ଶୁଣିଲେ ନାହିଁ । ତାର ସବୁ ପୂଜା ସବୁ ଗୁହାରି

ନିରର୍ଥକ ହେଲା । ମନର ଥିବା ସକଳ ଓ କ୍ରୋଧ, ରାଗ ଯାଇ ଠୁଳ ହେଲା ସେଇ ବୃନ୍ଦାବତୀ ମାଆଙ୍କ ଉପରେ ।

ଘରସାରା ଲୋକେ ଲୋକାରଣ୍ୟ । ସଭିଙ୍କ ଆଖିରେ ଲୁହ । ସମସ୍ତେ ଖାଲି ଦେଖି ଯାଉ ଥାଆନ୍ତି ମୋର କାର୍ଯ୍ୟ କଳାପ । ବାପା ସବୁବେଳେ ବସୁଥିବା ଖଟ ପାଖକୁ ଗଲି ତାର ଗୋଡଟାକୁ ଜାବୁଡି ଧରି କଇଁ କଇଁ ହେଇ କହିଲି - ଖଟରେ, ଆଉ ତୋ ଉପରେ ବାପା ଦିନେ ବସିବେ ନାହିଁ । ଢ଼ୋ ଢ଼ୋ କରି ତାଆରି ଉପରେ ମୁଣ୍ଡ କୋଡ଼ି ଦେଲି । ଜଣେ କିଏ ଆସି ମୋତେ ନଧରିବା ଯାଏ ମୁଁ କୁଆଡେ ମୁଣ୍ଡ କୋଡି ଚାଲି ଥାଏ ।

ମୋର ହେତୁ ହେବା ଦିନୁ ଦେଖି ଆସିଛି ପିଣ୍ଡାରେ ପଡିଥିବା ସେଇ ଖଟଟିକୁ । ବାପା ସକାଳେ ସେଇ ଖଟରେ ବସି ଦାନ୍ତ ଘଷନ୍ତି ବାହାରୁ କେହି ଅତିଥି ଆସିଲେ ତାଆରି ଉପରେ ବସନ୍ତି । ସେ ଖଟ ଉପରେ ବସିଥିବା କେତେ ଲୋକ କୁଆଡେ ଲୁଚି ହଜି ଗଲେଣି । କିନ୍ତୁ ଖଟଟି ଅତୀତର ସ୍ମୃତିକୁ ଜାବୋଡି ଧରି ଆଜିବି ସେମିତି ସେଇ ଜାଗାରେ ମୂକ ସାକ୍ଷୀ ପରି ପଡି ରହିଛି । ମୋତେ ଲାଗେ ମୋ ପାଇଁ ସେ ଖଟଟି ଯେମିତି କୋଣାର୍କ ।

ହୋସ୍ ଆସିଲା ପରେ ସେଇ ଖଟ ଉପରକୁ ସେ ଦିନ ଚଢ଼ି ଯାଇ ଥିଲି । କାନ୍ଥରେ ବାପା କହିଥିବା ମୋଅରି ହାତରେ ଲେଖା ପଦ ଦୁଇଟିକୁ ଅନେଇ ରହିଲି । କେବେ ପ୍ରଥମ ଶ୍ରେଣୀରେ ପଢୁଥିଲା ବେଳେ ନାନା ଚିତ୍ର ବିଚିତ୍ର କରି ସେ ପଦ ଦୁଇଟି ଲେଖିଥିଲି । ଗୀତଟି ଥିଲା ଏହିପରି-

ସଖା ସୋଦର ନାହିଁ ଯା'ର । ସଖା ତା ଏକା ବଂଶୀଧର ।।
ଯାହାକୁ ରଖିବେ ଅନନ୍ତ । କି କରି ପାରେ ବଳବନ୍ତ ।।

ଛୋଟ ମନରେ କେତେ କଥା ଖେଳି ଗଲା । ଭାବିଲି, ବାପା ବୋଧେ ଆଗରୁ ଜାଣିଥିଲେ ଆମକୁ ଖୁବ୍ ଛୋଟ ବେଳୁ ଅନାଥ କରି ସେ ଦିନେ ଚାଲି ଯିବେ ବୋଲି । ସେଥିପାଇଁ ଦେବତା ବିଶ୍ୱାସ ଆଉ ତାଙ୍କ ଉପରେ ନିର୍ଭରଶୀଳ ହେବାକୁ ତାଙ୍କର ଏଥିଲା ନିରବ ଇଙ୍ଗିତ ।

'ଭକ୍ତମୋହନ' ଓ 'ଭକ୍ତ ଚନ୍ଦ୍ରହାସ' ନାମକ ଦୁଇଟି ଶିଶୁ ପୁସ୍ତକରେ ଦୁଇ ଭକ୍ତ ବାଳକର ଅଖଣ୍ଡ ଈଶ୍ୱର ବିଶ୍ୱାସ କଥା ବାପା ଲେଖିଛନ୍ତି । ବାପା ଭାବୁଥିଲେ ମୋହନର ବାପା ସିନା ନଥିଲେ , ହେଲେ ବଂଶୀଧାରୀ ଗୋପାଳ ତା ପାଖେ ପାଖେ ଛାଇ ପରି ସଦା ରହିଥିଲେ । ସେହିପରି ଚନ୍ଦ୍ରହାସକୁ ହତ୍ୟା କରିବା ପାଇଁ ଶତ୍ରୁମାନେ ବହୁ ଷଡ ଯନ୍ତ୍ର କରିଛନ୍ତି । ମାତ୍ର ପ୍ରତି ପଦକ୍ଷେପରେ ତାକୁ ରକ୍ଷା କରିଛନ୍ତି ଅନନ୍ତ ନାରାୟଣ । ହେଲେ

ଆମ ପରିବାର ପାଇଁ ବଂଶୀଧାରୀ ଗୋପାଳ କ'ଣ ସାହା ହେବେ ? କାହିଁ ବାପା ତ ଚାଲି ଗଲେ ତାଙ୍କୁ ମୃତ୍ୟୁ ମୁହଁରୁ ଟାଣି ରଖି ପାରିଲେ ନାହିଁ ?

ବାପା ଚାଲି ଗଲେ - ଏଇ ପଦିଏ କଥାରେ ଭଗବାନଙ୍କ ଉପରୁ ମୋର ସକଳ ବିଶ୍ୱାସ ତୁଟି ତୁଟି ଯାଉ ଥାଏ । ମୋ ଆଖିର ଲୁହରେ ସେଇ ବଂଶୀଧାରୀ କୃଷ୍ଣ ଆଉ ମୋର ଲେଖା ସେଇ ପଦ କେତୋଟି ବାରମ୍ବାର ଅସ୍ପଷ୍ଟ ହୋଇ ଯାଉ ଥାଏ ।

ଖଟ ଉପରୁ ଥାଇ ଦେଖିଲି ମାଆ ବାଡେଇ କଚାଡି ହେଇ କାନ୍ଦୁଛି । ତାକୁ ସମସ୍ତେ ଘେରି ରହିଛନ୍ତି । ଆହୁରି କୋହ ବଢ଼ି ଗଲା ମୋର । ଆସ୍ତେ ତଳକୁ ଓହ୍ଲେଇ ଚାଲିଗଲି ଶୋଇବା ଘରକୁ । ଖଟରେ ମୁହଁ ମାଡି କେତେ ସମୟ ପଡି ରହିଲି । ନିକଟ ଅତୀତର କେତେ ସ୍ମୃତି ଉଙ୍କି ମାରିଲା ମୋର ମନରେ ।

ଦୁଇ ଦିନ ତଳେ ଡାକ୍ତରଖାନା ଯାଇଥାଏଁ ବାପାଙ୍କୁ ଦେଖି । ତାଙ୍କ ହାତରେ ଲାଗିଥାଏ ରକ୍ତ ଦିଆ ନଳୀ । ମାଧୋଉ ତାକୁ ଧରି ବସି ଥାଆନ୍ତି । ସେନ୍ତେବେଳକୁ ତାଙ୍କ ଅପରେଶନ ମାତ୍ର ତିନି ଦିନ ହୋଇ ଥାଏ । ବାପା ମାଧୋଉକୁ ଉଠେଇ ଦେଇ ମୋତେ ପାଖରେ ବସେଇଲେ ।

ମୁଁ ତାଙ୍କ ମୁହଁକୁ ବଲ ବଲ କରି ଅନେଇ ଥାଏଁ । ସେଇଠି ଶୋଇ ସେ ମୋର ସ୍କୁଲ ଯିବା କଥା ପଢ଼ା ପଢ଼ି କଥା ପଚାରିଲେ । ମୁଁ ଖାଲି ମୁଣ୍ଡ ହଲଉ ଥାଏଁ ସିନା ମୋର ଭାବନା ଥିଲା ଅନ୍ୟପ୍ରକାର । ବାପା ଆଗ ଥର ପରି ଏବେ ହସୁ ନାହାନ୍ତି କି ବେଶୀ କଥା କହୁ ନାହାନ୍ତି କାହିଁକି । ଆଗରୁ କହି ରଖିଥିଲେ ମୁଁ ଭଲ ହେଇ ଗଲିଣି ଖୁବ୍ ଶୀଘ୍ର ଘରକୁ ଯିବି । ମୋତେ ଅଫିସ୍ ଘର ସଜାଡି ରଖିବା ପାଇଁ କହିଥିଲେ । ଆଉ ଆଜି କେମିତି ଏତେ ଅସୁସ୍ଥ ହେଇ ପଡିଲେ । ତାଙ୍କ କଣ୍ଠ କ୍ଷୀଣ ହେଇ ଆସିଥାଏ । ମୋତେକାନ୍ଦ ଆସି ଯାଉ ଥାଏ । ଖାଲି ଲୋକ ଲଜ୍ଜାକୁ ଆଖିରେ ଲୁହ ସିନା ଆସୁ ନଥାଏ ମନ ଭିତରଟା କୋହରେ ଫାଟି ପଡୁଥାଏ ।

ସେଦିନ ମୁଁ ଫେରିବା ଆଗରୁ ବାପାଙ୍କୁ ଖୁଆଇ ଦେଲି । ସେ ମୋତେ ପ୍ରତିଦିନ ଆସିବାକୁ କହିଲେ । ହେଲେ ମୁଁ ସ୍କୁଲ ଥିବା ଯୋଗୁଁ ସବୁ ଦିନ ଖୁଏଇ ଦେବାକୁ ଯାଇ ପାରୁ ନଥାଏ । ବୋଧ ହୁଏ ବାପାଙ୍କ ଗୋଟେ ଆଶା ରହିଗଲା ମୋର ବି ଗୋଟେ ଅବଶୋଷ ରହିଗଲା ।

ଶୀତ ଦିନେ ବାପା ରାତିରେ ମୋଟେ ଖାଇବାକୁ ଉଠନ୍ତି ନାହିଁ । ଯେତେ ଶୀତହେଲେ ବି ସେ ପ୍ରାତକାଳରୁ ଶଯ୍ୟା ତ୍ୟାଗ କରନ୍ତି । ମାତ୍ର ରାତିର ଶୀତକୁ ତାଙ୍କର ଭାରି ଡର । ହେଲେ ମୁଁ ଉଠେଇ ଖୁଏଇଲେ ବାପା ଧଡ୍ ପଡ୍ ହେଇ ଉଠନ୍ତି । ମୋର ବିଶ୍ୱାସ ଥିଲା ମୋ ହାତରୁ ଖାଇବା ପାଇଁ ବାପାଙ୍କର ଶୀତଡର ଗୋଟେ ବାହାନା ଥିଲା ।

ସେ ମୋତେ ତାଙ୍କ ମାଆ ବୋଲି କହୁଥିଲେ । ଜେଜୀମା ବାପାଙ୍କୁ ଖୁଏଇ ଦେଉ ଥାଏ । ବଡ ବଡ ଗୁଣ୍ଡା କରି ତାଙ୍କୁ ଗିଳେଇ ଦେବ । ଆଉ ପକେଇବ ଗୋଟେ ଖୁନ୍ଦା ଖାଦ୍ୟ ଆପେ ଆପେ ଭିତରକୁ ଠେଲି ହେଇ ଯାଏ । ମୁଁ ପ୍ରତିଥର ଖୁଏଇଲା ବେଳେ ବାପା ଏଇ ଖୁନ୍ଦା ମାରିବା କଥା କହନ୍ତି । ଆମେ ବାପ ଝିଅ ବହେ ହସୁଁ ।

ବାପା ସବୁବେଳେ ମାଆଙ୍କୁ କହିବେ- 'ରାଜନା ଖୁଏଇ ଦେଲେ ମୋତେ ଲାଗେ ମୋ ମାଆ ମୋତେ ଖୁଏଇ ଦେଉଛି ।' ଆଜି ସେଇ କଥା ମୋର ଦୁହାଇ ଦୁହାଇ ମନେ ପଡୁଥାଏ ମୋର କୋହ ଉପରେ କୋହ ଆସୁଥାଏ । ଏହି ସମୟରେ ବାରି କବାଟ ଦେଇ ଭାଇ ପଶି ଆସିଲେ । ମୋତେ କୁଣ୍ଢେଇ ପକେଇଲେ । ଭାଇ ଭଉଣୀଙ୍କ ହାତ ଛାବ ପଡିଗଲା ସେ ଯାଇଥିଲେ ଏନ୍ ସି ସି କ୍ଲାସକୁ । ସେଠି ତାଙ୍କ ମନ ଗୋଳେଇ ଘାଣ୍ଟି ହେଲା । ସେ ବାପାଙ୍କୁ ଦେଖି ଗଲେ ଡାକ୍ତର ଖାନା । ହେଲେ ସେତେବେଳକୁ ବାପା ବହୁ ଦୂରକୁ ଯାଇ ସାରିଥିଲେ ।

ବୟସ ଖୁବ୍ କମ୍ ହେଲେ ବି ମୋ ମନରେ କେତେ ଭାବନା ଆସି ଯାଉଥାଏ । କେହି ମଲେ ଆଉ ଯେତେ କାନ୍ଦିଲେ ଫେରି ଆସନ୍ତି ନି ଏ କଥା ମୁଁ ବେଶ୍ ଜାଣିଥିଲେ ବି ମୋର ମନ ମାନୁ ନଥାଏ । ଏ ଦୁଃଖ ଯନ୍ତ୍ରଣାର ପାରାବାର କେମିତି ପାରି ହେବୁ ଭାବି ମୋ ଦିହ ଶିତେଇ ଉଠୁଥାଏ । ଭାବନାର ଯନ୍ତ୍ରଣା ଯେ ଏତେ କଷ୍ଟ ଦାୟକ ମୁଁ ପିଲାଦିନର ସେଇ ଘଟଣାରୁ ବେଶ୍ ଅନୁଭବ କରି ପାରିଥିଲି ।

ଯାଭିତରେ କେତେ ସମୟ କଟିଗଲାଣି । ସେମାନେ କାହିଁକି ବାପାଙ୍କୁ ଆଣୁ ନାହାନ୍ତି ? ମୋ ମନରେ ବାରମ୍ବାର ପ୍ରଶ୍ନ ଆସୁଥାଏ । ଲୋକଙ୍କ କଥା ବାର୍ତ୍ତାରୁ ଜାଣିଲି ବାପାଙ୍କୁ ଶେଷ ଦର୍ଶନ ପାଇଁ ଡାକ୍ତରଖାନାରେ ବହୁତ ଭିଡ । ସମାଜ ସଂପାଦକ ରାଧାନାଥ ବାବୁ ଗାଡି ପଠେଇଛନ୍ତି । ସେଥିରେ ବାପାଙ୍କୁ ଅଣା ହେବ । ପରେ ପରେ ବାପାଙ୍କୁ ଅଣା ହେଲା । ମୁଁ ଧୀର ପଦରେ ବାହାରକୁ ଯାଇ ତାଙ୍କୁ ଦେଖି ଚମକି ପଡିଲି । ମୋର ଦେହ ଭିତରେ ଦୁଃଖ , ଭୟ ରାଗ ଓ ଅଭିମାନର ଏକ ଲାଭା ସ୍ରୋତ ଯେମିତି ବୋହି ଯାଉ ଥାଏ ।

ବାହାର ଲନ୍‌ରେ କୋକେଇରେ ବାପାଙ୍କୁ ଶୁଏଇ ଦେଇ ଥାଆନ୍ତି । ଭାବି ଚାଲିଲି, ଅଭିମାନରେ,- ଏଇ ହେଉଛନ୍ତି ଓଡିଶାର ଜଣେ ବରପୁତ୍ର କବି ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଏଇ ହେଉଛନ୍ତି କଳିଙ୍ଗ ଭାରତୀ ଓ ଉତ୍କଳ ଛାତ୍ର ସାହିତ୍ୟ ସମାଜର ପ୍ରତିଷ୍ଠାତା, ଏଇ ହେଉଛନ୍ତି ଓଡିଶାରେ ଭଞ୍ଜ ଜୟନ୍ତୀର ଆଦ୍ୟ ପ୍ରବର୍ତ୍ତକ । ଆଉ ଏଇ ହେଉଛନ୍ତି ମୋର ମୋର ଅତି ଗେହ୍ଲା ବାପା ।

ତାଙ୍କୁ କାହିଁକି ଏତେ ହୀନିମାନିଆ ଭାବେ ଘାସ ପଡିଆ ଆଉ କେଇ ଖଣ୍ଡ ବାଉଁଶ ଉପରେ ଶୁଆଇଛନ୍ତି । ଏତେ ବଡ ହଲଟାରେ ଅନ୍ୟମାନେ ବସି ରହିଛନ୍ତି- ଯେଉଁ ହଲ୍‌ରେ ସେ ଶହ ଶହ ପିଲାଙ୍କୁ ଶିକ୍ଷା ଦେଇ ମଣିଷ କରିଛନ୍ତି- ସେଇଠି ଶେଷ ଥର ପାଇଁ ତାଙ୍କୁ ଟିକେ କୋମଳ ଶଯ୍ୟାରେ ଶୋଇବାକୁ ବି ଦେଉ ନାହାନ୍ତି ! ବଞ୍ଚି ଥିଲା ବେଳେ କେତେ ଭକ୍ତି , କେତେ ସମ୍ମାନ ମୋ ବାପାଙ୍କୁ ଦେଉଥିଲେ । ଆଉ ଆଜି ବାପା ମରି ଯାଇ ଶବ ପାଲଟି ଗଲେ ବୋଲି ଏତେ ନିର୍ଦ୍ଦୟ ଏତେ ନିଷ୍ଠୁର ଭାବେ ଏମିତି ଗଡେଇ ଦେଇଛନ୍ତି । ଛି ଛି କି ଲଜ୍ଜା ! ଅଭିମାନ ଆଉ କ୍ରୋଧରେ ଫେରିଗଲି ଶୋଇବା ଘରକୁ ।

ଦୁଇ ଖଞ୍ଜାରେ ଲୋକ ଭର୍ତ୍ତି । ବହୁତ ଆଲୋକ । କିନ୍ତୁ ନୀରବତା ଆଉ ଅନ୍ଧକାର ଭିତରେ ଚକା ଭଉଁରୀ କାଟିଲା ଭଳି ମୋତେ ଲାଗୁଥାଏ ।

ରାତି ଆଠଟା ହେଲା । ମାଆ ଦିନ ତିନିଟାରୁ କାନ୍ଦି କାନ୍ଦି ହାଲିଆ ହୋଇ ବସିଥାଏ । ମୁଁ ଯାଇ ଠିଆ ହେଲି ତା ପାଖରେ । ମନରେ ଅସୁମାରୀ ଚିନ୍ତା ଉବେଇ ଟୁବେଇ ହେଉଥାଏ । ଆଖିର ଲୁହ ସେତେବେଳକୁ ଅଠାଳିଆ ଧଇଲାଣି । ମୋତେ ଦେଖି ମାଆର କୋହ ଉଠିଲା । ମୁଁ ସେତେବେଳେ ନିଜକୁ ଦୋଷୀ ଭଳି ମନେ କଲି । କାନ୍ଦ ଭିତରେ ମାଆ ବର୍ଣ୍ଣନା କରିଥିବା ଘଟଣା ମୋତେ ବହୁ ପଛକୁ ଟାଣି ନେଇ ଗଲା ।

ବାପା କହୁଥିଲେ ଦିନେ ମୋତେ ପାଖରୁ ଅନ୍ତର କରିବେ ନାହିଁ । ମୁଁ ବାହା ହେଇ ଶାଶୁ ଘର ଗଲେ ସେ ଅନ୍ଧ ହେଇ ଯିବେ । ହେଲେ ଏ ସବୁ କଥା ପଛକୁ ପକେଇ ଦେଇ ବାପା ଠକି ଦେଇ ଚାଲିଗଲେ । ତାଙ୍କ କଥା ସେ ରଖିଲେ ନାହିଁ । ମୋ ଆଖି ଆଗରେ ଅତୀତର ଘଟଣା ମାନ ଚଳଚ୍ଚିତ୍ର ଭଳି ନାଚି ନାଚି ଚାଲିଗଲା ।

ବାପା ସେତେବେଳେ 'ଲୋକସମ୍ପର୍କ ବିଭାଗରେ' ପ୍ରୋଡକ୍ସନ ଅଫିସର ଥାଆନ୍ତି । ଆମେ ଭାଇ ଭଉଣୀ ମିଶି ଚାରି ଜଣ ଥିଲେ ସିନା ଘରଟି ଗୋଟେ ବଡ କୁଟୁମ୍ବ ଭଳି ଭରପୂର ହୋଇ ଥାଏ । ତା ଭିତରେ ଥାଏ ଭିକାରି ମିଆଁ । ବାପାଙ୍କୁ ଗୋଟେ ହାତ ଟଣା ରିକ୍ସାରେ ଅଫିସ ନେବା ଆଣିବା କରୁଥାଏ । ଛୋଟା ଥିବାରୁ ଏଇ ରିକ୍ସାଟି ବାପା ତାଙ୍କ ଶ୍ୱଶୁର ଘରୁ ଯୌତୁକ ଭାବେ ପାଇ ଥିଲେ । ଚାରିଟା ବେଳେ ରିକ୍ସାରେ ବସି ମୁଁ ଅଫିସରୁ ବାପାଙ୍କୁ ଆଣିଯାଏଁ ।

ସଞ୍ଜରୁ ରାତି ବାରଟା ଯାଏ ବାପା ଅଫିସ ଘରେ କଟାନ୍ତି । ସେତେବେଳେ ଘର ଲୋକେ ବାପାଙ୍କ ସଙ୍ଗେ ଦେଖା କରିବା ସମ୍ଭବ ନୁହେଁ । ରଜତ ଭାଇ, ହୃଦାନନ୍ଦ ଭାଇଙ୍କ ଠାରୁ ଆରମ୍ଭ କରି କେତେ ଲୋକ ଆଉ ଅନୁଷ୍ଠାନର ବହୁ ଛାତ୍ର ତାଙ୍କୁ ଘେରି ବସି ଥାଆନ୍ତି । ତା ଭିତରେ ସାହିତ୍ୟ ଆଉ କଳିଙ୍ଗ ଭାରତୀର ସଂଗଠନ ବିଷୟରେ ଆଲୋଚନା ଚାଲେ । ବାପାଙ୍କ ଲେଖା ଲେଖି ମଧ୍ୟ ଚାଲି ଥାଏ

## ବଂଶ ପରଂପରା :

ଭୁବନେଶ୍ୱରରୁ ଖୋରଧା ରାସ୍ତାର ମଧ୍ୟସ୍ଥଳ ବର୍ତ୍ତମାନ ପାଞ୍ଚ ନମ୍ବର ଜାତୀୟ ରାଜପଥ ନିକଟସ୍ଥ ଜାଁଳା ଗ୍ରାମର ଏକ ପ୍ରସିଦ୍ଧ କରଣ ପରିବାରରେ ବାପାଙ୍କ ଜନ୍ମ । ୧୯୦୧ ମସିହା ଜାନୁୟାରୀ ୨୦ ତାରିଖ ମଧ୍ୟରାତ୍ରିରେ ଗୋଲୋକ କୃଷ୍ଣ ପଟ୍ଟନାୟକଙ୍କ ଔରସରୁ ରାଧା ଦେବୀଙ୍କ ଦ୍ୱିତୀୟ ଗର୍ଭରେ ମୋର ବାପା ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଭୂମିଷ୍ଠ ହୋଇଥିଲେ । ତାଙ୍କ ପୂର୍ବରୁ ଜଣେ ଭାଇ ଓ ଜଣେ ଭଉଣୀ ଏବଂ ପରେ ଜଣେ ଭାଇ ଓ ଦୁଇଜଣ ଭଉଣୀ ଜନ୍ମିଥିଲେ । ତିନି ଭାଇ ଓ ତିନି ଭଉଣୀ ଧରି ଏକ ପୂରିଲା ପରିବାର । ମୋର ଜେଜେ ଗୋଲକ କୃଷ୍ଣ ଖୋରଧା କଚେରୀରେ ଚାକିରି କରୁଥିଲେ । ବେଶ୍ ସ୍ୱଚ୍ଛଳ ପରିବାର । ହେଲେ ନିଜ ଦୟାଳୁ ପ୍ରକୃତି ପାଇଁ ସେ ବହୁଖର୍ଚ୍ଚି ଥିଲେ । ଏପରିକି ଦୁଃଖୀର କରୁଣ କାହାଣୀ ଶୁଣି ସେ ନିଜର ପିନ୍ଧା ଲୁଗା ପର୍ଯ୍ୟନ୍ତ ଦାନ କରି ଥିବାର ଶୁଣା ଯାଏ । ବହୁ ଭଲ ଭଲ ଜମି ଲୋକଙ୍କୁ ଦାନ ସୂତ୍ରରେ ଦେଇଥିଲେ ।

ଆମ ପରିବାରର ଇଷ୍ଟ ହେଉଛନ୍ତି ଗୋପାଳଜୀଉ । ଗ୍ରାମ ଦେବତୀ ଦାରିଣୀ( ଦେବୀ ମହିଷାସୁରକୁ ବିଦାରୀ ଥିବାରୁ ତାଙ୍କର ଏପରି ନାଁ ) ଜଣେ ପ୍ରତ୍ୟକ୍ଷ ଦେବୀ ବୋଲି ଏବେ ବି ଲୋକ ବିଶ୍ୱାସ ରହିଛି । ଆମ ଜେଜେ ଦାରିଣୀଙ୍କ ପରମ ଭକ୍ତ ଥିଲେ । ତାଙ୍କ ପାଖରେ ପ୍ରତି ଦିନ ନଡିଆଟେ ନ ଭାଙ୍ଗିଲେ ଜେଜେ ଜଳ ସ୍ପର୍ଶ କରୁ ନଥିଲେ । କିନ୍ତୁ ତାଙ୍କ ଅଣଜେଜେ କୃତିବାସ ପଟ୍ଟନାୟକ ଥିଲେ ଗୋପାଳଜୀଉଙ୍କ ପରମ ଭକ୍ତ । କୃତିବାସଙ୍କ ଆକୁଳ ନିବେଦନରେ ଗୋପାଳଜୀ ତାଙ୍କୁ ଦର୍ଶନ ଦେବେ ବୋଲି ସ୍ୱପ୍ନରେ କହିଥିଲେ । ଦିନକର ଘଟଣା , ସ୍ନାନ ସାରି ଫେରୁଥିବା ବାଟରେ ସେ ଦେଖିଲେ ଏକ ବଡ ବାଲିଗରଡା ତାଙ୍କ ଆଗରେ ଛିଟିକି ପଡୁଛି । ତାଙ୍କର ପ୍ରଥମେ ଧାରଣା ହେଲା ହୁଏତ କଠଉ ଅଗରେ ବାଜି ରାସ୍ତାର ଗୋଡିଟିଏ ଛିଟିକି ପଡୁଛି । ହେଲେ ସେ ଯେତେ ଆଗକୁ ଚାଲିଲେ , ଗୋଡି ସେମିତି ଆଗେ ଆଗେ ଡେଇଁ ଚାଲିଲା । ପୂର୍ବ ରାତି ସ୍ୱପ୍ନ ତାଙ୍କର ସ୍ମରଣ ହେଲା । ସେ ଗଡୁଟି ତଳେ ଥୋଇ ଗୋଡି ଆଗରେ ଆଣ୍ଠେଇ ପଡି ଆଞ୍ଜୁଳା ପାତିଲେ । ଆଶ୍ଚର୍ଯ୍ୟ ଘଟଣା ଏଣିକି ଗୋଡିଟି ପଛକୁ ଫେରି ତାଙ୍କ ଆଞ୍ଜୁଳାକୁ ଡେଇଁ ଆସିଲା । ଭାବ ଗଦ୍‌ଗଦ ଚିତ୍ତରେ ସେହି ଗୋଡିକୁ ନେଇ ଗୋପାଳଜୀଉ ମନ୍ଦିରରେ ସ୍ଥାପନା କଲେ ।

ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ବାପାଙ୍କ ପିତାମହ ସତ୍ୟବାଦୀ ପଟ୍ଟନାୟକ ମଧ୍ୟଥିଲେ ପରମ ଧାର୍ମିକ । ସେ ପ୍ରଥମେ ପୁରୀର ଗଜପତି ରାଜା ଏବଂ ପରେ ଇଂରେଜ ସରକାରଙ୍କ ଠାରେ ଉଚ୍ଚ ରାଜ ପଦବୀରେ ଚାକିରୀ କରି ଥିଲେ । ସେ ଜଣେ ଲବ୍ଧ ପ୍ରତିଷ୍ଠ କବି ଥିଲେ । ନିଜେ ଏକ 'ଗୋଟିପୁଅ ଯାତ୍ରା' ଦଳ ପ୍ରତିଷ୍ଠା କରିଥିଲେ । ଘର ପୋଡିରେ ତାଙ୍କ ରଚନାବଳୀ ଲୋପ ପାଇ ଯାଇଛି । ସେ ଗୋପୀନାଥ ଏବଂ ବାଙ୍କବିହାରୀ ନାମକ ଦୁଇ ବିଗ୍ରହ ସହ ରାଧାରାଣୀ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ଏହାଙ୍କ ସମୟରେ ଆମ ଘର ଧନ ଜନ ଗୋପ ଲକ୍ଷ୍ମୀରେ ପରି ପୂର୍ଣ ଥିଲା ।

ସତ୍ୟବାଦୀ ପଟ୍ଟନାୟକ ଜଣେ ବିଚକ୍ଷଣ ରାଜ କର୍ମଚାରୀ ଥିଲେ । ଏହା ଫଳରେ ସେ ସାମାନ୍ୟ ପେସ୍କାର ପଦରୁ ଦେବାନ୍ ପଦବୀକୁ ଉନ୍ନୀତ ହୋଇଥିଲେ । ସେ ବହୁ ଦିନ ଧରି ରଣପୁର ରାଜ୍ୟର ଦେବାନ୍ ଥିଲେ । ତାଙ୍କ ପ୍ରଥମା ପତ୍ନୀ ଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ପିଉସୀ । ମାତ୍ର ଉକ୍ତ ମହିଳା ନିଃସନ୍ତାନ ଭାବେ ଇହ ଲୀଳା ସାଙ୍ଗ କରିଥିଲେ । ତାଙ୍କ ଦ୍ୱିତୀୟା ପତ୍ନୀଙ୍କ ଏକ ମାତ୍ର ସନ୍ତାନ ହେଉଛନ୍ତି ମୋ ଜେଜେ ଗୋଲୋକ କୃଷ୍ଣ ପଟ୍ଟନାୟକ ।

ସତ୍ୟବାଦୀଙ୍କ ମୃତ୍ୟୁ ବେଳକୁ ଗୋଲୋକ କୃଷ୍ଣ ଥିଲେ ସାତ ବର୍ଷର ବାଳକ ମାତ୍ର । ନିଜ ଅଧ୍ୟବସାୟ ବଳରେ ସେ ଜଣେ ସୁସାହିତ୍ୟିକ ହୋଇ ପାରି ଥିଲେ । ସେ ରାଧାକୃଷ୍ଣ ଲୀଳାତ୍ମକ ବହୁ ପଦାବଳୀ ରଚନା କରିଥିଲେ । ଏବଂ ପିଣ୍ଡିକ ଶ୍ରୀଚନ୍ଦନ କୃତ 'ବସନ୍ତରାସ' ପୁସ୍ତକ ସଂପାଦନା କରି ପ୍ରକାଶ କରିଥିଲେ ।

ଗୋଲକକୃଷ୍ଣଙ୍କ ପତ୍ନୀ ରାଧା ଦେବୀ ଓଡିଆ ପୁରାଣ ଓ ଛାନ୍ଦ ସାହିତ୍ୟରେ ସୁପଣ୍ଡିତା ଥିଲେ । ସେ ମୁହେଁ ମୁହେଁ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ବିଶି ଖୁଣ୍ଟିଆ ପ୍ରଭୃତି ବହୁ କବିଙ୍କ ଛାନ୍ଦ ସୁଲଳିତ କଣ୍ଠରେ ଗାଇ ପାରୁ ଥିଲେ । ସେ ଜଣେ ଭାରି କଠୋର ବାଦୀ ଆଦର୍ଶ ମହିଳା ଥିଲେ ।

ବାପ: ତାଙ୍କ ପୂର୍ବଜଙ୍କ କୃତୀତ୍ୱ ବର୍ଣନା କଲା ବେଳେ ଗର୍ବରେ ଆତ୍ମହରା ହୋଇ ପଡୁଥିଲେ । ସେ କହୁଥିଲେ, ତାଙ୍କ ପାଇଁ ଆଦର୍ଶ ଓ ପରଂପରା ଗଢ଼ି ଯାଇଛନ୍ତି ତାଙ୍କ ପ୍ରପିତାମହ କୃତ୍ତିବାସ, ପିତାମହ ସତ୍ୟବାଦୀ ,ପିତାମହୀ ଶ୍ରୀମତୀ, ପିତା ଗୋଲୋକକୃଷ୍ଣ ଏବଂ ମାତା ରାଧରାଣୀ । ତାଙ୍କ ଧମନୀରେ ଉକ୍ତ ପୂର୍ବଜଙ୍କ କେବଳ ପାବନ ଶୋଣିତ ପ୍ରବାହିତ ହେଉ ନଥିଲା ସେମାନଙ୍କ ଉଚ୍ଚ ଚିନ୍ତାଧାରା ଓ ଆଦର୍ଶ ବୋଧ ତାଙ୍କ ଠାରେ ପ୍ରତିଫଳିତ ହେଉଥିଲା । ବାପା ତାଙ୍କ ମାଆଙ୍କ ଠାରୁ କଠୋରତା ଓ କର୍ତ୍ତବ୍ୟ ନିଷ୍ଠା ଏବଂ ବାପାଙ୍କ ଠାରୁ କବି ହେବାର ପ୍ରେରଣା ଲାଭ କରିଥିଲେ ।

ବାପାଙ୍କ ବ୍ୟତୀତ ତାଙ୍କର ଦୁଇ ଭାଇ, ବଡ ପଦ୍ମଚରଣ ପଟ୍ଟନାୟକ ଶିକ୍ଷା ବିଭାଗର ଜଣେ ପଦସ୍ଥ ଅଫିସର ଥିଲେ । ସେ ଦୀର୍ଘ ଦିନ ଧରି କଟକର କଲେଜିଏଟ୍ ସ୍କୁଲର ହେଡ୍ ମାଷ୍ଟର ଥିଲେ । କନିଷ୍ଠ କାଳୀଚରଣ ପଟ୍ଟନାୟକ ଓଡିଶା ପ୍ରଶାସନିକ ସେବାର ଅଧିକାରୀ ହୋଇଥିଲେ । ୧୯୪୦ ମସିହାରେ ତାଙ୍କର ଅକାଳ ବିୟୋଗ ଘଟିଲା । ସେତେ ବେଳକୁ ବାପାଙ୍କ ଦୁଇ ଭଉଣୀ - ଇଚ୍ଛାବତୀ ଓ ନିଶାମଣି ଉଚ୍ଚ ପରିବାରରେ ବିବାହ କରି ଯାଇଛନ୍ତି ।

ବାପାଙ୍କ ସମେତ ସବୁ ଭାଇମାନେ ଥିଲେ ଗୌରବର୍ଣ୍ଣ , ସୁବଳିତ ଅଙ୍ଗ, ପ୍ରଶସ୍ତ ଲଲାଟ ଯୁକ୍ତ । ସେମାନଙ୍କ ଉଜ୍ଜ୍ୱଳ ମୁଖ ମଣ୍ଡଳକୁ ଦେଖିଲେ ମନେ ହୁଏ ଏମାନେ ରାଜକୁମାର । କେବଳ ରାଜକୁମାର କହିଲେ ଭୁଲ ହେବ । ବାପା ପାଦରେ ଖଞ୍ଜ ହେଲେ ହେଁ ଅତ୍ୟନ୍ତ ସୁଦର୍ଶନ ଥିଲେ । ସେ ସୁନ୍ଦର ପ୍ରତିଯୋଗିତାରେ ବହୁ ରାଜକୁମାରଙ୍କୁ ପଛରେ ପକାଇ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଥରେ ଗୋପାଳ ପ୍ରହରାଜଙ୍କ ପ୍ରେରଣାରେ ବାପା ସୁନ୍ଦର ପ୍ରତି ଯୋଗିତାରେ ଯୋଗ ଦେଇଥିଲେ । ତାଙ୍କ କ୍ଷୀଣ ପ୍ରତିବାଦ 'ଏ ଛୋଟାକୁ କାହିଁକି ଅପଦସ୍ତ କରିବାକୁ ନେବେ ?' କିନ୍ତୁ ବୁଢ଼ା ନଛୋଡ ବନ୍ଦା ।

ଶେଷରେ ମୁଣ୍ଡରେ ରାଜ ପଗଡି ବନ୍ଧା ହେଲା । ଶହେରୁ ଅଧିକ ପ୍ରତିଯୋଗୀ ଭିତରେ ବାପା ନିଜକୁ ଅସହାୟ ମଣୁଥିଲେ । ମାତ୍ର ଫଳାଫଳ ଜାଣି ବାପା ନିଜକୁ ବିଶ୍ୱାସ କରି ପାରି ନଥିଲେ ଯେ ସେ ହିଁ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି । ପ୍ରହରାଜେ କହିଲେ ରୂପ ଲାବଣ୍ୟ ଆଗରେ ଖଞ୍ଜତ୍ୱ ହାର ମାନି ଗଲା । ବାପା ସତରେ ବିଶ୍ୱାସ କରିଥିଲେ ଖଞ୍ଜତ୍ୱ ଏକ ଅପରାଧ ନୁହେଁ । ନିଜର ଅଧ୍ୟବସାୟ ବଳରେ ତାକୁ ବହୁ ଦୂରକୁ ଠେଲି ଦିଆ ଯାଇ ପାରେ ।

ପରାଧୀନ ଭାରତର ଏକ କ୍ଷୁଦ୍ର ଗ୍ରାମ ଜାଆଁଳାରୁ ଗୋଟିଏ ପରିବାରରୁ ବାପା, ବଡବାପା , କାଳୀ ଦାଦା ଏବଂ ପ୍ରଫୁଲ୍ଲ ଭାଇ ଏକାସଙ୍ଗେ ଚାରିଜଣ ପ୍ରଥମ ଗେଜେଟେଡ୍ ଅଫିସର ଭାବେ ବାହାରିବା କମ୍ ଗୌରବ କଥା ନୁହେଁ ।

ବଡବାପା ମଧ୍ୟ ଜଣେ ଉଚ୍ଚକୋଟିର ଲେଖକ ଥିଲେ । ଜାତୀୟ ପ୍ରୀତିରେ ବୁଦ୍ଧିମନ୍ତ ଏହି ଶିକ୍ଷକ ଓ ଶିକ୍ଷାବିତ୍ କେତେଗୁଡିଏ ପୁସ୍ତକ ରଚନା କରି ଯାଇଛନ୍ତି । ସେଗୁଡିକ ହେଲା- ' ଓଡିଆଙ୍କ ଖାଦ୍ୟ ଓ ସ୍ୱାସ୍ଥ୍ୟ', 'ହିନ୍ଦୁ ଆଚାର ବିଚାର' ଇତ୍ୟାଦି । ସେତେବେଳେ ଓଡିଶାରେ ଦୁଇଜଣ ପଦ୍ମଚରଣ ଥିଲେ, ଉଭୟ ପୁଣି ଖୋର୍ଦ୍ଧା ଅଞ୍ଚଳରୁ । ଏଣୁ ଲୋକେ ବଡ ବାପାଙ୍କୁ ପଦ୍ମଚରଣ ( ଖାଦ୍ୟ ) ବୋଲି ଚିହ୍ନୁ ଥିଲେ ।



## ଶୈଶବ ଓ ଶିକ୍ଷା :

ଆମ ଜେଜେ ସନ୍ତାନମାନଙ୍କୁ ଭାରି ଭଲ ପାଉଥିଲେ । ତାଙ୍କର ଗୋଟିଏ ଖରାପ ଅଭ୍ୟାସ ଥିଲା ଛୋଟ ପିଲାଙ୍କୁ ଉପରକୁ ଫୋପାଡି ଦେଇ ଧରି ନେବା । ଏମିତି ଦିନେ ଜେଜେଙ୍କ ଅସାବଧାନରେ ବାପା ତାଙ୍କ ହାତରେ ନପଡି ତଳେ ପଡିଗଲେ । ସେଦିନର ସେ ଦୁର୍ଘଟଣାରେ ଯାହା କ୍ଷତି ହେଲା ତାହା ବାପାଙ୍କ ଜୀବନର ଚିର ସହଚର ହୋଇ ରହିଗଲା ।

ନାନାପ୍ରକାର କବିରାଜୀ, ଟୁଟୁକା ଏପରିକି ବାଲିରେ ଦୀର୍ଘ ସମୟ ଗୋଡ ପୋତି ଠିଆ କଲା ସତ୍ୱେ କିଛି ସୁଫଳ ମିଳିଲା ନାହିଁ । ବାପା ଚିର ଦିନ ଛୋଟା ହୋଇ ରହିଗଲେ । ତିନିପୁଅ ଭିତରେ ସେ ଖଞ୍ଜ ଥିବାରୁ ତାଙ୍କ ମାଆଙ୍କ ଠାରୁ ଅଧିକ ଯତ୍ନ ପାଇ ଥିଲେ । ଏହି ମହୀୟସୀ ମହିଳାଙ୍କ ଅଦମ୍ୟ ଯତ୍ନ ଏବଂ ଅସୁମାରୀ ପ୍ରେରଣା ବାପାଙ୍କୁ ସମାଜରେ ଜଣେ ମଣିଷ ଭାବେ ଛିଡା କରାଇ ପାରିଥିଲା ।

ପାଦରେ ଖଞ୍ଜ ଥିବାରୁ ବାପା ସାତ ବର୍ଷ ବୟସ ପର୍ଯ୍ୟନ୍ତ ସ୍କୁଲ ଦୁଆର ମୁହଁ ମାଡି ନଥିଲେ । ହେଲେ ତାଙ୍କ ମାଆଙ୍କ ଠାରୁ ପ୍ରାଥମିକ ଶିକ୍ଷା ଶେଷ କରି ନେଇଥିଲେ । ସେ ପ୍ରଥମେ ଶ୍ୟାମବନ୍ଧୁ ପାଟଶୋଣୀଙ୍କ ଚାଟଶାଳୀ ଏବଂ ପରେ ପାଟଣା ସାହିର ମାଟି ବଂଶ ଅବଧାନଙ୍କ ଠାରେ ପାଠ ପଢ଼ିଥିଲେ । ଏହା ପରେ ଜାଆଁଳା ଭର୍ଣାକୁଲାର ସ୍କୁଲରେ ଅଧ୍ୟନ କରିଥିଲେ । ବାପା ଚାଲି ପାରୁ ନଥିବାରୁ ଅଚ୍ୟୁତ ନାମରେ ଜଣେ ଲୋକ ତାଙ୍କୁ କାନ୍ଧରେ ବସାଇ ସ୍କୁଲ ନେବା ଆଣିବା କରୁଥାଏ ।

ବାପା ପାଦରେ ସିନା ଛୋଟା ଥିଲେ ମାତ୍ର ବୁଦ୍ଧିରେ ଭାରି ମେଧାବୀ ଥିଲେ । ହେଲେ, ଗଣିତରେ ତାଙ୍କର ଆଗ୍ରହ ନଥାଏ । ଥରେ, ସ୍କୁଲରେ ପଢ଼ା ସମୟର ଏକ ବିଚିତ୍ର ଘଟଣା ବାପାଙ୍କ ଚିତ୍ତରେ ଥିବା ଦୃଢ଼ ମନୋବଳର ସୂଚନା ପ୍ରଦାନ କରେ । ସେ ଦିନ ଶିକ୍ଷକ ତାଙ୍କୁ ପଣକିଆ ପଚାରିବାରୁ ସେ କହି ପାରି ନଥିଲେ । ଏଥିରେ ଶିକ୍ଷକ କ୍ଷୁବ୍ଧ ହୋଇ ତାଙ୍କୁ ଛୋଟା ବୋଲି ଆକ୍ଷେପ ଏବଂ ମୂର୍ଖ ବୁଢ଼ାଟା ବୋଲି ଭର୍ତ୍ସନା କଲେ । ବାପାଙ୍କୁ ଏହା ଭୀଷଣ ବାଧିଲା । ସେହି ଦିନ ରାତିସାରା ଗୁଣନକରି ସେ ୨୫କ ଯାଏ ପଣକିଆ ଲେଖିଲେ ଏବଂ ତାକୁ ଘୋଷି ଦେଲେ । ପରଦିନ ଶିକ୍ଷକ ମହାଶୟ ବାପାଙ୍କ

ସ୍ମରଣ ଶକ୍ତି ଦେଖି ଆଶ୍ଚର୍ଯ୍ୟ ହୋଇ ଗଲେ ଏବଂ ଖୁସିରେ ତାଙ୍କୁ କାନ୍ଧରେ ବସେଇ ଘରେ ଛାଡି ଗଲେ ।

ଜେଜେମା ଏ ଘଟଣା ଶୁଣି କିନ୍ତୁ ଆଶ୍ଚର୍ଯ୍ୟ ହେଲା ନାହିଁ । ସେ କହିଲା ପିଲା ଦିନରୁ ସେ ବାପାଙ୍କ ଠାରେ ଅଲୌକିକ ଶକ୍ତିର ସୂଚନା ପାଇଥିଲା । ତାଙ୍କର ବିଶ୍ବାସ ଥିଲା ବାପା ଛୋଟା ଥିବାରୁ ତାଙ୍କୁ ଗୋପାଳ ସବୁବେଳେ ସାହା ହୁଅନ୍ତି । ଏମିତି କି ପିଲା ଦିନେ ଥରେ ସେ ଗୁରୁଣ୍ଡି ଗୁରୁଣ୍ଡି ଆମ ବାରି ପଟ ବାମ୍ଫରେ ଗଳିପଡି ଯାଇଥିଲେ । ଆଠ ଘଣ୍ଟା କାଳ ନାନା ଆଡେ ଖୋଜା ଖୋଜି ପରେ ଦେଖାଗଲା ସେ ପାଣି ଉପରେ ଚକା ମାଡି ବସିଛନ୍ତି । ବାପା ସମସ୍ତଙ୍କୁ କହିଲେ ତାଙ୍କୁ ପାଣି ଭିତରେ ଜଣେ କିଏ ଉପରକୁ ଟେକି ଧରିଥିଲା । ଜେଜେମା ଧରି ନେଲା ସେ ଆଉ କେହି ନୁହେଁ ସ୍ବୟଂ ଗୋପାଳ ।

ଜେଜେମାଆଙ୍କ ଠାରୁ ରାମାୟଣ ଓ ମହାଭାରତ କାହାଣୀ ଶୁଣି ପିଲା ଦିନରୁ ବାପାଙ୍କ ସେ ସବୁ ବହି ପଢ଼ିବାକୁ ଆଗ୍ରହ ଜନ୍ମିଥିଲା । ତାଙ୍କର ଅସୀମ ଆଗ୍ରହରେ ମୁଗ୍ଧ ହୋଇ ଗ୍ରାମର ଜଣେ ବୁଢ଼ୀ ତାଙ୍କୁ 'ବିଚିତ୍ର ରାମାୟଣ' ପୋଥିଟିଏ ଉପହାର ଦେଇଥିଲେ । ନିଜ ବାପା ମାଆଙ୍କ ଅଜ୍ଞାତରେ ଗ୍ରାମର ସାଧୁଚରଣ ଦାସ ନାମରେ ଜଣେ ପକ୍ଷାଘାତ ରୋଗୀଙ୍କୁ ପ୍ରତିଦିନ ଦୁଇଅଣା ପଇସା ଦେଇ ତାଙ୍କ ଠାରୁ 'ଦାଣ୍ଡିରାମାୟଣ' ଶୁଣୁଥିଲେ । କହିବା ବାହୁଲ୍ୟ ସେତେବେଳେ ଦୁଇ ଅଣା ପଇସାରେ ଗୋଟିଏ ପରିବାର ବେଶ୍ ଦିନଟିଏ ଚଳି ଯାଇ ପାରୁ ଥିଲା ।

ଦଶ ଏଗାର ବର୍ଷ ବୟସରୁ ବାପାଙ୍କ ଅସାଧରଣ ସ୍ମରଣ ଶକ୍ତି ଓ ଧୀ ମତ୍ତାର ପରିଚୟ ମିଳିଥିଲା । ସେ ଚତୁର୍ଥ ଶ୍ରେଣୀ ବୃତ୍ତି ପରୀକ୍ଷାରେ କୃତ କାର୍ଯ୍ୟ ହୋଇଥିଲେ । ଏତେ ଅଳ୍ପ ବୟସରୁ ତାଙ୍କର ଓଡିଆ ସାହିତ୍ୟ ପ୍ରତି ପ୍ରବଳ ଝୁଙ୍କ ଏବଂ ବୁତ୍ପତ୍ତି ଦେଖି ତାଙ୍କ ଶିକ୍ଷକ ଆଶ୍ଚର୍ଯ୍ୟ ହୋଇ ଥିଲେ । ଥରେ ଏ ବିଷୟରେ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସ୍କୁଲର ପ୍ରଧାନ ଶିକ୍ଷକ କେତେକ ବୟସ୍କ ଲୋକଙ୍କୁ ନିମନ୍ତ୍ରଣ କରିଥିଲେ । ସେଠାରେ ଅନୁଷ୍ଠିତ ହୋଇଥିବା କବିତା ପାଠୋତ୍ସବରେ ବାପା ଦୁଇଟି ସ୍ଵରଚିତ କବିତା ଆବୃତ୍ତି କରିଥଲେ । ସଭାସଦ୍‌ମାନେ ସମସ୍ୱରରେ ଘୋଷଣା କଲେ ଯେ ଏହି ବାଳକର କବିତା ଉପସ୍ଥିତ ସକଳ କବିଙ୍କ ରଚନାକୁ ନିଷ୍ପ୍ରଭ କରି ଦେଲା । ସ୍କୁଲର ସମସ୍ତ ଶିକ୍ଷକ ଏବଂ ସେ ଅଞ୍ଚଳର ଭଦ୍ର ବ୍ୟକ୍ତିମାନେ ସେ ଦିନ ଅନୁଭବ କରିଥିଲେ ଯେ ଏହି ବିସ୍ମୟ ବାଳକ ବଡ ହେଲେ ଜଣେ ଅସାଧାରଣ ବ୍ୟକ୍ତି ଭାବେ ପରିଚିତ ହେବ ।

ବାପା ମାଇନର ବୃତ୍ତି ପାଇବାରୁ ପରିବାର ମଧ୍ୟରେ ଆନନ୍ଦର ଲହରି ଖେଳି ଯାଇଥିଲା । କାରଣ ସେ ପର୍ଯ୍ୟନ୍ତ ବିଶ୍ବାସ ଥିଲା ଯେ ମାଇନର ପାଠରୁ ବାପାଙ୍କ ପାଠ ପଢ଼ାରେ ଡୋରି ଲାଗି ଯିବ । ପରିବାରରେ ଆର୍ଥିକ ଅନଟନ ତାଙ୍କ ଶିକ୍ଷାର ପଥ ରୁଦ୍ଧ

କରି ଦେବ । ବୃତ୍ତି ଅର୍ଥ ଲାଭ ଦ୍ୱାରା ବାପା ଖୋରଧା ହାଇସ୍କୁଲରେ ପଞ୍ଚମ ଶ୍ରେଣୀରେ ନାମ ଲେଖାଇ ପାରି ଥିଲେ । ଏତେ ଅଳ୍ପ ବୟସରୁ ଶିକ୍ଷାଗତ ବ୍ୟୁତ୍ପତ୍ତି ଓ କବି ଯଶ ଯୋଗୁଁ ସେ ସର୍ବ ସାଧାରଣରେ ସମ୍ମାନ ଲାଭ କରିଥିଲେ ହେଁ ତାଙ୍କ ର ଖଞ୍ଜତ୍ୱ ପ୍ରତି ପଦକ୍ଷେପରେ ତାଙ୍କୁ ଆହତ ଓ ବ୍ୟଥିତ କରୁଥିଲା । ନିଜର ଅକର୍ମଣ୍ୟତା ଆଗରେ ସମ ବୟସ୍କ ବନ୍ଧୁଙ୍କ ସ୍ୱଚ୍ଛନ୍ଦ ବିହାର ଦେଖି ସେ ନିଜକୁ ଉପେକ୍ଷିତ ଓ ଅବହେଳିତ ବୋଲି ଅନୁଭବ କରୁଥିଲେ । ମାତ୍ର ତାଙ୍କର ଏହି ବାଲ୍ୟ ହୀନ ମନ୍ୟତା ବେଶିଦିନ ରହିଲା ନାହିଁ । ବରଂ ତାଙ୍କୁ ଅଗ୍ରଗତି କରାଇବାରେ ବିଶେଷ ପ୍ରୋତ୍ସାହନ ପ୍ରଦାନ କଲା । ଯାହା ଫଳରେ ସେ ଅଳ୍ପ ଦିନରେ ଜଣେ ଦୁଃସାହସୀ ବ୍ୟକ୍ତି ହୋଇ ଉଠିଲେ ।

ସେତେବେଳେ ଖୋରଧା ଉଚ୍ଚ ଇଂରାଜୀ ସ୍କୁଲରେ ତାଙ୍କ ଜ୍ୟେଷ୍ଠ ଭ୍ରାତା ପଦ୍ମ ଚରଣ ପଟ୍ଟନାୟକ ସହକାରୀ ଶିକ୍ଷକ ତଥା ହଷ୍ଟେଲର ସୁପରିନ୍‌ଟେଣ୍ଡେଣ୍ଟ ଥିଲେ । ଏଣୁ ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରତ୍ୟକ୍ଷ ତତ୍ୱାବଧାନରେ ରହି ମେଟ୍ରିକ୍ ପଢ଼ିବାରେ ବାପାଙ୍କୁ କିଛି ଅସୁବିଧା ନଥିଲା । ହାଇସ୍କୁଲରେ ଭର୍ତ୍ତି ହେବା ପୂର୍ବରୁ ସେ ଷଷ୍ଠ ଓ ସପ୍ତମ ଶ୍ରେଣୀର ସାହିତ୍ୟ ବହି ପଢ଼ି ସାରିଥିଲେ ଏବଂ ନିଜେ ଘରେ ବସି ବଂଗଳାର ନୋଟ ବହି ଧରି ଇଂରାଜୀ ଫାଷ୍ଟ ବୁକ୍ ବହି ଆୟତ୍ତ କରି ନେଇଥିଲେ ।

ଏତେ ଅଳ୍ପ ବୟସରୁ ବାପାଙ୍କ କବିତ୍ୱ ବିକଶିତ ହୋଇ ସାରିଥିଲା । ତାଙ୍କ ବଡ ଭଉଣୀ ଇଚ୍ଛାବତୀଙ୍କ ଗୀତ ଖାତାରେ ସେ ପ୍ରାଚୀନ ରାଗ ରାଗିଣୀରେ କେତୋଟି ଗୀତ ଲେଖି ପକାଇ ଥିଲେ । ଏଠାରେ ଉଲ୍ଲେଖ ଯୋଗ୍ୟ ସେକାଳରେ ଓଡିଆ ଝିଅ ମାନଙ୍କର ଗୀତ ଗାଇବା ଏକ ପରଂପରା ଥିଲା । (ଝିଅମାନେ ଆଶ୍ୱିନ ମାସ ଯାକ ବ୍ରତ ପାଳନ କରି ପ୍ରତ୍ୟେକ ରାତ୍ରିରେ ସମବେତ ଭାବେ ଗୀତ ଗାନ କରୁଥିଲେ । ଏତଦ୍ ବ୍ୟତୀତ ବିବାହ କାଳରେ ଝିଅମାନେ ପରିବାରର ଆତ୍ମୀୟଙ୍କ ପାଖରେ କାନ୍ଦିଯିବା ପାଇଁ ଗୀତ ଶିଖୁ ଥିଲେ । ଏହା ପରବର୍ତ୍ତୀ କାଳରେ ସେମାନଙ୍କୁ ଶିଶୁ ଗୀତ ଓ ଦୋଳି ଗୀତ ଗାଇବା ପାଇଁ ପ୍ରେରଣା ଯୋଗାଉ ଥିଲା । ମାତ୍ର ସମୟର ପରିବର୍ତ୍ତନ ଘଟିଛି । ସେ ସବୁ ଗୀତ ଗାଇବା ପରଂପରା ଆମ ସଂସ୍କୃତିରୁ ଲୋପ ପାଇବାକୁ ବସିଛି ) ।ଏଣୁ ସେକାଳରେ ପ୍ରାୟ ପ୍ରତ୍ୟେକ ଶିକ୍ଷିତ ଝିଅର ଗୋଟେ ଗୀତ ଖାତା ଥାଏ । ବାପାଙ୍କ ଏହି ଗୀତ ମାନ ଦେଖି ତାଙ୍କ କବି-ପିତା ଏବଂ ଗୁଣଗ୍ରାହୀ ମାତା ଆଶ୍ଚର୍ଯ୍ୟ ହୋଇ ଯାଇ ଥିଲେ ।

ତାଙ୍କ ସ୍କୁଲର ପୁରସ୍କାର ଉତ୍ସବରେ ଆବୃତ୍ତି ପାଇଁ ବଂଗୀୟ କବି ଯୋଗେନ୍ଦ୍ର ନାଥ ବସୁଙ୍କ 'ଭାରତ ମାନଚିତ୍ର ' କବିତାକୁ ସେ ଶିକ୍ଷକଙ୍କ ଅନୁରୋଧରେ ଅନୁବାଦ କରି ଦେଇ ଥିଲେ । ମାତ୍ର ଏହି ଗୀତରେ ଓଡିଶା ବିଷୟରେ କିଛି ଲେଖା ନଥିବାରୁ ବାପା ଓଡିଶାର ଗୌରବ ବିଷୟରେ କେତୋଟି ନୂତନ ପଦ ଯୋଗ କରି ଦେଇଥିଲେ ।

ସେତେବେଳେ ତାଙ୍କର ପ୍ରଧାନ ଶିକ୍ଷକ ଥିଲେ ମହେନ୍ଦ୍ର ନାଥ ମଜୁମଦାର । ସେ ଏହି ପଦମାନ ଶୁଣି ଏବଂ ଏହାର ରଚୟିତା ଜଣେ ପଞ୍ଚମ ଶ୍ରେଣୀର ଛାତ୍ର ଜାଣି ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇଥିଲେ । କବି କ୍ଷେତ୍ରରେ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଇ ସେ ବାପାଙ୍କୁ ଅଭିନନ୍ଦିତ କରିଥିଲେ ।

ସେତେବେଳେ ତାଙ୍କ ସ୍କୁଲର ସାହିତ୍ୟ ଶିକ୍ଷକ ଥିଲେ କୃପାସିନ୍ଧୁ ହୋତା । (ପରେ ସେ ଭୂଦାନ ଆନ୍ଦୋଳନରେ ଯୋଗ ଦେଇ ଥିଲେ ) ଏହି ହୋତା ମହାଶୟ ଏକ ସାମୟିକ ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ । ବାପା ସେହି ପତ୍ରିକାରେ କବିତା ଓ ପ୍ରବନ୍ଧମାନ ଲେଖୁଥିଲେ । ଶିକ୍ଷକ କୃପାସିନ୍ଧୁ ବାପାଙ୍କ ରଚନାର ଭୂୟସୀ ପ୍ରଶଂସକ ଥିଲେ ।

ସେତେବେଳେ ସ୍କୁଲ ପରିଚାଳନା ସମିତିର ସଦସ୍ୟ କବି ପଦ୍ମଚରଣ ପଟ୍ଟନାୟକ (ପଦ୍ମପାଖୁଡ଼ାର କବି- ମୋର ବଡବାପା ନୁହନ୍ତି) ଥରେ ସ୍କୁଲ ପରିଦର୍ଶନ କରି ବାପାଙ୍କ ଇଂରାଜୀ ଖାତା ଦେଖି ମୁଗ୍ଧ ହୋଇଥିଲେ । ସେ କହିଥିଲେ- ତୁମର ଓଡିଆ ଲେଖା ଆଗରୁ ଦେଖିଥିଲି । ଏବେ ଇଂରାଜୀ ଲେଖା ଦେଖିଲି । ତୁମେ ଇଂରାଜୀରେ ଜଣେ ସୁଲେଖକ ହେବ ଏହା ମୋର ଦୃଢ଼ ବିଶ୍ୱାସ । ଖଞ୍ଜ ଥାଇ ସୁଦ୍ଧା ବାପା ଶୈଶବରୁ ଲେଖନୀ ବଳରେ ବଳୀୟାନ୍ ହୋଇ ସେକାଳରେ ଉଚ୍ଚ ବ୍ୟକ୍ତି ଓ ବିଦ୍ୱାନଙ୍କଠାରୁ ପ୍ରେରଣା ପାଇଥିଲେ । ଯାହା ତାଙ୍କୁ ଅଧିକ ଅଗ୍ରସର ହେବାରେ ସାହାଯ୍ୟ କରିଥିଲା ।

ସେତେବେଳେ ଇଂରାଜୀରୁ ଓଡିଆ ଅନୁବାଦ କିଛି ପୁସ୍ତକ ନଥିଲା । ମାତ୍ର ବଂଗଳାରେ କିଛି ପୁସ୍ତକ ଅନୂଦିତ ହୋଇ ସାରିଥିଲା । ବାପା ସେ ପୁସ୍ତକମାନ ପାଠ କରି ଅନୁବାଦର କଳା ହାସଲ କରି ନେଇଥିଲେ । ଯାହା ଫଳରେ ସେ ଓଡିଆରୁ ଇଂରାଜୀ ଏବଂ ଇଂରାଜୀରୁ ଓଡିଆ ଅନୁବାଦ ପାଇଁ ନିଜକୁ ପ୍ରସ୍ତୁତ କରି ନେଇଥିଲେ । ଏହା ତାଙ୍କୁ ପରବର୍ତ୍ତୀ କାଳରେ ଉପେନ୍ଦ୍ର ଭଞ୍ଜ ଏବଂ ଅନ୍ୟ ମଧ୍ୟଯୁଗୀୟ କବିଙ୍କୁ ଅନୁବାଦ କରିବାରେ ସାହାଯ୍ୟ କରିଥିଲା ।

ବାପା ଖୋରଧା ସ୍କୁଲରୁ ଦଶମ ଶ୍ରେଣୀ ଯାଏଁ ପାଠ ପଢିଥିଲେ । ଥରେ ତାଙ୍କର ପରୀକ୍ଷା ଖାତାର ଇଂରାଜୀ ଦେଖି ସ୍କୁଲର ସହକାରୀ ପ୍ରଧାନ ଶିକ୍ଷକ ଆଶୁତୋଷ ବାକ୍‌ଚୀ ମତ ଦେଇଥିଲେ ଯେ ବାପାଙ୍କ ଇଂରାଜୀ ବଂଗୀୟ ସାହିତ୍ୟିକ ଲାଲ ବିହାରୀ ଦେଙ୍କ ଇଂରାଜୀ ସମକକ୍ଷ ହୋଇ ସାରିଛି । ତାଙ୍କୁ ପରୀକ୍ଷା କରିବା ବିଡମ୍ବନା ମାତ୍ର ।

ଏହି ସମୟରେ ଏକ ଅଘଟଣ ଘଟିଲା । ଆମର ବଡମାଆ ( ପଦ୍ମଚରଣ ପଟ୍ଟନାୟକଙ୍କ ପ୍ରଥମା ପତ୍ନୀ) ବିୟୋଗ ଘଟିଲା । ବାପା ତାଙ୍କ ଠାରୁ ଜନନୀ ସୁଲଭ ବାତ୍ସଲ୍ୟ ମମତା ଓ ଆଦର ଯତ୍ନ ପାଇ ବିମୁଗ୍ଧ ଥିଲେ । ସେହି ଆଦର୍ଶମୟୀ ନାରୀ ତାଙ୍କ ଅକପଟ ସ୍ନେହରେ ସାରା ପରିବାରକୁ ମନ୍ତ୍ର ମୁଗ୍ଧ କରି ରଖିଥିଲେ । ତାଙ୍କରି ଅଦମ୍ୟ

ପ୍ରେରଣାଯୋଗୁଁ ବଡ ବାପା ପରିବାରର ଭରଣ ପୋଷଣ ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ସ୍ନେହମୟୀ ମହିଳାଙ୍କ ଯତ୍ନ ଓ ପ୍ରେରଣା ବାପାଙ୍କୁ ପ୍ରତି ପଦରେ ଅଗ୍ରସର ହେବାରେ ସାହାଯ୍ୟ ଯୋଗାଇ ଆସିଥିଲା । ମାତ୍ର ତାଙ୍କର ଅକାଳ ବିୟୋଗ ବାପାଙ୍କ ପାଇଁ ଏକ ଅପୂରଣୀୟ କ୍ଷତି ଥିଲା ।

ଏହି ମହୀୟସୀ ମହିଳା ଜୀବିତ ଥିଲେ ତାଙ୍କ ଏକମାତ୍ର ପୁତ୍ର ପ୍ରଫୁଲ୍ଲ ଭାଇ ( ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ) ଏବଂ ମୋ ବାପାଙ୍କ ଭବିଷ୍ୟତ ଯେ ନିର୍ବିଘ୍ନରେ ନିର୍ମିତ ହୋଇ ଥାଆନ୍ତା ଏଥିରେ ସନ୍ଦେହ ନାହିଁ । ଏହି ଦାଦି ପୁତୁରାଙ୍କୁ ଏତେ କଣ୍ଟକିତ ପଥରେ ଅତିକ୍ରମ କରିବାକୁ ପଡି ନଥାଆନ୍ତା ।

ଏହି ସମୟରେ ବଡ ବାପା ଇଂରାଜୀରେ ଏମ୍. ଏ ପାଶ କଲେ ଏବଂ ସରକାରୀ ଚାକିରୀ ପାଇ ଖୋରଧା ସ୍କୁଲ ପରିତ୍ୟାଗ କଲେ । ବାପାଙ୍କୁ ମଧ୍ୟ ଶିକ୍ଷକଙ୍କ ଅନିଚ୍ଛା ସତ୍ତ୍ୱେ ଖୋରଧା ସ୍କୁଲରୁ ବିଦାୟ ନେବାକୁ ପଡିଲା ।

ବାର୍ଷିକ ପରୀକ୍ଷା ଖୁବ୍ ନିକଟ ହୋଇଥିଲେ ହେଁ ବାପା ୧୯୧୮ ମସିହାରେ ସତ୍ୟବାଦୀର ବନ ବିଦ୍ୟାଳୟରେ ଦଶମ ଶ୍ରେଣୀରେ ନାମ ଲେଖାଇଲେ । ପ୍ରଥମ ବର୍ଷ ସେ ସତ୍ୟବାଦୀର ପଟ୍ଟନାୟକ ସାହିସ୍ଥ ତାଙ୍କ ମାମୁଁ ଗୋପୀନାଥ ଦାସଙ୍କ ଘରେ ଅବସ୍ଥାନ କଲେ । ବିଦ୍ୟାଳୟର ନିୟମ ଅନୁଯାୟି ପର ବର୍ଷ ସେ ସ୍କୁଲ ହଷ୍ଟେଲରେ ରହିଲେ । ମାତ୍ର ମାମୁଁ ଓ ମାଇଁ ମାଉସୀଙ୍କ ଅଗାଧ ଓ ଅକପଟ ସ୍ନେହରେ ସେ ଏପରି ବାନ୍ଧି ହୋଇ ଯାଇ ଥିଲେ ଯେ ଯେକୌଣସି ଛୁଟି ଦିନରେ ସେ ତାଙ୍କ ଘରକୁ ନଗଲେ ସମସ୍ତେ ମନ ଊଣା କରୁଥିଲେ । ବାପାଙ୍କ ଚାଲିବାରେ ଅକ୍ଷମତା ଯୋଗୁଁ ପ୍ରତି ଛୁଟି ଆରମ୍ଭ ବେଳକୁ କେହି ନାଁ କେହି ମାମୁଁ ତାଙ୍କୁ ସ୍କୁଲରୁ ପାଛୋଟି ନେବାକୁ ଆସୁଥିଲେ ଏବଂ ଛୁଟି ଶେଷ ଦିନ ଆଣି ଛାଡି ଯାଉଥିଲେ । ବାପା କହନ୍ତି ମାମୁଁ ଘର ରହଣିରୁ ସେ ଅନୁଭବ କରିଥିଲେ ଯେ ପ୍ରକୃତରେ ଅକପଟ ସ୍ନେହ ଥିଲେ ମାମୁଁ ଘର ହେଉଛି ଦେବ ମନ୍ଦିର । ବାପା କହନ୍ତି ଓଡିଆରେ ଥିବା ଏକ ଜାତୀୟ ଢ଼ଗ - ଚକା ଚକା ଭଉଁରୀ, ମାମୁଁ ଘର ଚଉଁରୀ 'ରୁ ମାମୁଁଘରର ସ୍ନେହ ପ୍ରାଚୁର୍ଯ୍ୟ ବ୍ୟଞ୍ଜିତ ହୁଏ ।

ବାପା ଜୀବନର ଶେଷ କାଳ ପର୍ଯ୍ୟନ୍ତ ତାଙ୍କ ମାମୁଁ ଘରର ସ୍ନେହ ଶ୍ରଦ୍ଧାକୁ ସ୍ମରଣ କରି ଉଲ୍ଲସିତ ହେଉଥିଲେ । ଅନେକ ସମୟରେ ତାଙ୍କ ଘରେ ହେଉଥିବା ଆରିଷା ପିଠା କଥା କହି ତା ଭିତରେ ପିଠାର ମିଠା ସହ ମାମୁଁ ଘରର ସ୍ନେହ ମିଠା କିଭଳି ଓତପ୍ରୋତ ଭାବେ ମିଶି ଯାଇଥାଏ କହନ୍ତି ।

ଖୋରଧା ପରିତ୍ୟାଗ ବାପାଙ୍କ ପାଇଁ ପ୍ରଚ୍ଛନ୍ନ ଆଶୀର୍ବାଦ ହେଲା । ସତ୍ୟବାଦୀରେ ବାପାଙ୍କୁ ଓଡିଶାର ବିଶିଷ୍ଟ ମନିଷୀ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ

ହରିହର ଦାସଏବଂ ଗୋଦାବରୀଶ ମିଶ୍ର ପ୍ରଭୃତି ଶିକ୍ଷକଙ୍କ ସାହଚର୍ଯ୍ୟ ଓ ପ୍ରେରଣା ଲାଭ କରିବାରେ ସହାୟକ ହୋଇଥିଲା । ବାପାଙ୍କ ଅନ୍ତରରେ ସୁପ୍ତ ଅବସ୍ଥାରେ ଥିବା ଦେଶ ପ୍ରାଣ ଚେତନା ଏଠାରେ ଅଙ୍କୁରିତ ଓ ପଲ୍ଲବିତ ହେଲା । ଏହି ଯୋଗ ଜନ୍ମା ମନିଷୀମାନେ ବିଜାତୀୟ ଚେତନାର ଘୋର ବିରୋଧୀ ଥିଲେ । ବାପାଙ୍କ ଯୋଗ ଦାନ ଏଠାରେ ମଣି କାଞ୍ଚନ ସଂଯୋଗ ଘଟିଥିଲା ସେକାଳର ପାଶ୍ଚାତ୍ୟ ପ୍ରେମୀ କବି ମାନେ ଓଡିଶାର ପାରଂପରିକ ରାଗ ରାଗିଣୀ ଓ ଛାନ୍ଦକୁ ପସନ୍ଦ କରୁ ନଥିଲେ । ସତ୍ୟବାଦୀ କବି ଗୋଷ୍ଠୀର ହୁଙ୍କାର ଏହି ନବ୍ୟ ଚେତନାର କବିଙ୍କ ଭାବନାକୁ ଟଳ ମଳ କରି ଦେଇ ଥିଲା ।

ସତ୍ୟବାଦୀ ବିଦ୍ୟାଳୟରେ ଗୁରୁ ଶିଷ୍ୟ ମଧ୍ୟରେ ଏକ ଅତୁଟ ସଂପର୍କ ଥିଲା । ବାପା ଗୋପବନ୍ଧୁ ଦାସଙ୍କୁ ଖୁବ୍ ପାଖରୁ ଦେଖି ଥିଲେ ଏବଂ ତାଙ୍କ ସେବା ଚେତନାରେ ମୁଗ୍ଧ ହୋଇ ଥିଲେ । ପରବର୍ତ୍ତୀ କାଳରେ ଏହି ଚେତନା ବାପାଙ୍କ ଠାରେ ଚିର ଜାଗ୍ରତ ଥିଲା । ୧୯୫୬ ମସିହା ଦଳେଇ ଘାଇ ଭାଙ୍ଗିଯେଉଁ ମହା ଦୁର୍ଦ୍ଦଶା ଘୋଟିଥିଲା ସେଥିରେ ବାପା ବ୍ୟଥିତ ହୋଇ କଳିଙ୍ଗଭାରତୀ ଓ ଉତ୍କଳ ଛାତ୍ରସାହିତ୍ୟ ସମାଜର ଛାତ୍ରଙ୍କ ଦ୍ୱାରା ଅର୍ଥ ସଂଗ୍ରହ କରି ବନ୍ୟକ୍ଲିଷ୍ଟ ମଧ୍ୟରେ ବଣ୍ଟନ କରିଥିଲେ । ଏହି ସ୍ୱେଚ୍ଛା ସେବୀମାନେ ବାପାଙ୍କ ରଚିତ ଗୀତ - 'ଭାଙ୍ଗିଲା ଦଳେଇ ଘାଇ / ଲକ୍ଷ ଲକ୍ଷ ଲୋକ ନିରକ୍ଷ ହୋଇ' ଗାନ କରି ଭିକ୍ଷା ସଂଗ୍ରହ କରିଥିଲେ ।

ସତ୍ୟବାଦୀର ଶିକ୍ଷକ ଆଚାର୍ଯ୍ୟ ହରିହର ଥିଲେ ପ୍ରତ୍ୟକ୍ଷ ସେବାର ମୂର୍ତ୍ତୀମନ୍ତ ଅବତାର । ସେ ଅନ୍ତେବାସୀ ପ୍ରତ୍ୟେକ ଛାତ୍ରର ଶାରୀରିକ ଓ ମାନସିକ ଚିକିତ୍ସକ ଥିଲେ । ତାଙ୍କ ସେବା ଓ ଶୁଶ୍ରୁଷା ବଳରେ ବାପା ଥରେ ଭୟଙ୍କର ଟାଇଫଏଡ୍ ରୋଗରୁ ସୁସ୍ଥ ହୋଇ ଉଠିଥିଲେ । ବାପା କେବଳ ତାଙ୍କ ଠାରେ ଚିକିତ୍ସିତ ହୋଇ ନଥିଲେ ତାଙ୍କଠାରୁ ଶିଖିଥିଲେ ଚିକିତ୍ସା ଓ ଶୁଶ୍ରୁଷା ବିଦ୍ୟା । କଳିଙ୍ଗ ଭାରତୀର କୌଣସି ଛାତ୍ରର ଅସୁସ୍ଥ କାଳରେ ବାପାଙ୍କ ସେହି ସେବା ମନୋଭାବ ଉଦ୍ବୋଧିତ ହୋଇ ଉଠୁଥିଲା ।

କବି ମନିଷୀ ପଂଡିତ ନୀଳକଂଠ ଦାସଙ୍କ ସଂସ୍କାର ଚେତନା, ଦୃଢ଼ ମନୋବଳ, ଏବଂ ସଂଗ୍ରମୀ ଭଙ୍ଗୀ ବାପାଙ୍କୁ ପ୍ରଲୁବ୍ଧ କରି ଥିଲା ପରବର୍ତ୍ତୀ କାଳରେ ବାପା ହୋଇ ଉଠିଥିଲେ ଏକ ସାଲିସ ବିହୀନ ସଂଗ୍ରାମୀ । କୌଣସି ଅନ୍ୟାୟକୁ ସେ କେବେ ବରଦାସ୍ତ କରି ନାହାନ୍ତି । 'ଉତ୍କଳ ସାହିତ୍ୟ ସମାଜ'ରେ ସାଲିସ ଚେତନା ତାଙ୍କୁ କ୍ଷୋଭିତ କରିଥିଲା । ଏବଂ ସେ ଅଚିରେ ସାହିତ୍ୟ ସମାଜର କର୍ମକର୍ତ୍ତାରୁ ଇସ୍ତଫା ପ୍ରଦାନ କରିଥିଲେ । ନୀଳକଂଠଙ୍କ ଅନମନୀୟ ବ୍ୟକ୍ତିତ୍ୱ ବାପାଙ୍କୁ ମୁଗ୍ଧ କରିଥିଲା ବେଳେ ବାପାଙ୍କ ଭଳି ଛାତ୍ର ନୀଳକଣ୍ଠଙ୍କୁ ଆକୃଷ୍ଟ କରିଥିଲା । କବି ନୀଳକଣ୍ଠ ଏବିଷୟରେ କହନ୍ତି-'ଭଞ୍ଜ ସାହିତ୍ୟ ଓ ଓଡିଶାର

ସମୁଦ୍ରକୂଳ ଆଡେ ବାହାରିଥିବା ଅଭଞ୍ଜ ସାହିତ୍ୟ ଏ ଦୁଇଟି ଧାରା ପୂର୍ଣ ରୂପେ ପ୍ରକଟିତ କରିବାରେ ଯେ ପ୍ରେରଣା ମୁଁ ଦେଇଥିଲି ତାହା ତୁମେ ବଡଆଦରରେ ଗ୍ରହଣ କରିଥିଲ ।'

କବି ଗୋଦାବରୀଶ ମିଶ୍ରଙ୍କ ଛାତ୍ର ପ୍ରୀତି ଓ ମମତ୍ୱ ବୋଧ ବାପାଙ୍କୁ ବେଶ୍ ଆକୃଷ୍ଟ କରି ଥିଲା । ଏହାକୁ ସେ ସାରା ଜୀବନ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ସେ ଜଣେ ଏଭଳି ବ୍ୟକ୍ତିତ୍ୱ ଥିଲେ ଯେ କୋମଳମତି ଛାତ୍ରଙ୍କୁ ବେଶ୍ ଆକୃଷ୍ଟ କରି ପାରୁ ଥିଲେ । ତାଙ୍କ ଆହ୍ୱାନରେ ହୃଦାନନ୍ଦ ରାୟ, ରଜତକୁମାର କର, ଗୋପବନ୍ଧୁ ରଥ, କିଶୋରୀ ମୋହନ ପରିଡା, ଡାକ୍ତର କବି ପ୍ରସାଦ ମିଶ୍ର, ଇଂ. ଚନ୍ଦ୍ରଶେଖର ନନ୍ଦ, ଶରତ କୁମାର କର, ଡାକ୍ତର ଅଜିତ କୁମାର କର, ଡାକ୍ତର ଶୈଳେଶ୍ୱର ନନ୍ଦ , ପରବର୍ତ୍ତୀ କା଼ଳରେ ପ୍ରଫୁଲ୍ଲ କୁମାର ନାୟକ ଡା. ନିରଞ୍ଜନ ମହାନ୍ତି,ଅଧ୍ୟାପକ ଚିତ୍ତରଂଜନ ପଣ୍ଡା ଏବଂ ବହୁ ସ୍କୁଲ ଛାତ୍ର ଭଞ୍ଜ ଆନ୍ଦୋଳନରେ କାୟ ମନୋ ବାକ୍ୟରେ ଆତ୍ମନିବେଶ କରିଥିଲେ ।

ସତ୍ୟବାଦୀ ବନବିଦ୍ୟାଳୟର ବକୁଳ ଛୁରିଅନା କୁଞ୍ଜର କମନୀୟ ପ୍ରାକୃତିକ ମାଧୁରୀ, ମୁକ୍ତ ଆକାଶ ତଳେ ଶିକ୍ଷା ଗ୍ରହଣର ରୋମାଞ୍ଚକର ଦୃଶ୍ୟ ଓ ଶିକ୍ଷକମାନଙ୍କ ମହନୀୟ ଆଦର୍ଶ ସ୍ୱଚ୍ଛ ରହଣିମଧ୍ୟରେ ବାପାଙ୍କୁ ଏତେ ମୁଗ୍ଧ ଓ ପ୍ରଭାବିତ କରିଥିଲା ଯେ ମୋତେ ଗଳ୍ପ ଛଳରେ ସେ ଏ ବିଷୟରେ ପ୍ରାୟ କହି ଥାଆନ୍ତି । ବାପାଙ୍କ ଇଚ୍ଛା ଥିଲା ପରବର୍ତ୍ତୀ କାଳରେ ସତ୍ୟବାଦୀରେ ଶିକ୍ଷକତା କରିବା । ହାୟ, ବିଧିର ବିଧାନ ବିଚିତ୍ର ! ସେ ପାରିବା ବେଳକୁ ସତ୍ୟବାଦୀ ବନ ମବିଦ୍ୟାଳୟ ଭାଙ୍ଗି ଯାଇ ଥିଲା ।

ଦିନେ ଆମ ଘର ଆନନ୍ଦ କୋଳାହଳରେ ବୁଡି ଯାଇଥିଲା । ସେ ଦିନ ନାନା ସୁମିଷ୍ଟ ଖାଦ୍ୟ ବ୍ୟଞ୍ଜନର ପ୍ରସ୍ତୁତ ହୋଇ ଥାଏ । ସେଦିନ ବାପା ମାଆଙ୍କ କଥୋପକଥନରେ ମଧ୍ୟ ଆନନ୍ଦର ସୂଚନା ମିଳୁଥାଏ । କିଛି ପର୍ବ ପର୍ବାଣୀ ନଥାଇ ଏଭଳି ଆନନ୍ଦ ଉତ୍ସବର କାରଣ ମୁଁ କିଛି ଜାଣି ପାରୁ ନଥାଏଁ । ପରେ ଜାଣିଲି ଯେ ଆମ ଭାଇଙ୍କ କଲେଜରେ ନାମ ଲେଖାରେ ବାପା ଖୁସିଥିଲେ । ମୋତେ କହିଲେ- ଜାଣିବୁ ଝଇନା, କାଲି ବାବନାର କଲେଜରେ ନାମ ଲେଖା ହେଲା । (ବାପା ଭାଇଙ୍କୁ ବାବନା ବୋଲି ଡାକୁଥିଲେ) । ମୁଁ କହିଲି – ମୁଁ କ'ଣ ପାଇବି ? ସେ କହିଲେ ତୁ ବଡ ହେଲେ କଲେଜ ଯିବୁ । ହେଲେ ଏଇନେ ଗୋଟେ ଭଲ ଫ୍ରକ୍ ପାଇବୁ । ଭାଇଙ୍କ କଲେଜ ଭର୍ତ୍ତିରେ ମୋର ଗୋଟେ ନୂଆ ଫ୍ରକ୍ ଲାଭ ହେଲା ।

ଆନନ୍ଦର କାରଣ ଅନୁସନ୍ଧାନ କରି ଜାଣିଲି ଯେ , ବାପା କଲେଜ ଶିକ୍ଷା ସମୟ ଥିଲା ଘନ କୁହୁଡିର ଦିନ । ଅନ୍ୟର ଦୟା ଉପରେ ନିର୍ଭର କରି ତାଙ୍କୁ ରହି ରହି ଏ ପାହାଚ ଅତିକ୍ରମ କରିବାକୁ ପଡିଛି । ଏଥି ପାଇଁ କାହାଠାରୁ ନାଁ ପ୍ରୋତ୍ସାହନ ବା ଆର୍ଥିକ ସହାୟତା ତାଙ୍କ ପାଇଁ ଦୁଃସ୍ୱପ୍ନ ଥିଲା । ପ୍ରଥମତଃ ନିଜର ଖଞ୍ଜତ୍ୱ ପୁଣି ଆର୍ଥିକ ଅସ୍ୱଚ୍ଛଳତା

ତାଙ୍କୁ ଅଧିକ ପଙ୍ଗୁ କରି ଦେଇଥିଲା । ସେତେବେଳେ ତାଙ୍କୁ ଯଦି କୌଣସି ସୂତ୍ରରୁ ଅନ୍ତତଃ ଆର୍ଥିକ ସାହାଯ୍ୟ ମିଳି ଥାଆନ୍ତା, ତାଙ୍କ ଭଳି ବିଚକ୍ଷଣ ଛାତ୍ର କାହିଁରେ କ'ଣ ହୋଇ ଯାଇ ଥାଆନ୍ତେ !

ଆଜି ସେ ନିଜର ଉପାର୍ଜନରେ ପୁଅକୁ ବିଶ୍ୱ ବିଦ୍ୟାଳୟରେ ପଢ଼ାଉଛନ୍ତି । ସେଦିନ ରାତ୍ରିରେ ବାପା ତାଙ୍କ କଲେଜ ଜୀବନର ଯେଉଁ ଦୁଃଖଦ କାହାଣୀ ଶୁଣାଇ ଥିଲେ ମୁଁ ସେଥିରୁ ଅନୁମାନ କରି ନେଇଥିଲି ଯେ,ଶାରୀରିକ ଅକର୍ମଣ୍ୟତା , ଦୁର୍ବଳ ଆର୍ଥିକ ପରିସ୍ଥିତି ଏବଂ ଅଗ୍ରଜଙ୍କ ଘୃଣ୍ୟ ବ୍ୟବହାରରେ ଅତିଷ୍ଠ ହୋଇ ପଡିଥିଲେ ହେଁ ଆଶାର ଆଲୋକ ଓ ଦମ୍ଭର ଯଷ୍ଟି ତାଙ୍କୁ ଆଗକୁ ମାଡି ଯିବାର ପ୍ରେରଣା ଦେଇଥିଲା ।

ବଡବାପା ପୁରୀ ଶିକ୍ଷକତା କାଳରେ ତାଙ୍କ ପାଖରେ ମୋର ଜେଜେ ଓ ଜେଜେମା ବାପାଙ୍କ ସହ ରହୁ ଥାଆନ୍ତି । ଏହି ସମୟରେ ବାପା କଲେଜ ପଢ଼ିବା ପାଇଁ ପ୍ରସ୍ତୁତ ହେଉ ଥାଆନ୍ତି । ମାତ୍ର ବଡବାପା ତାଙ୍କ ଦ୍ୱିତୀୟ ପତ୍ନୀଙ୍କ ପ୍ରରୋଚନାରେ ପରିବାର ଭରଣ ପୋଷଣ ପାଇଁ ଅବହେଳା ପ୍ରଦର୍ଶନ କଲେ , ଯାହାଫଳରେ ବାପାଙ୍କ ଉଚ୍ଚଶିକ୍ଷା ଆଶା ମଉଳି ଆସୁଥିଲା । ବଡବାପା ଦିନେ ପ୍ରକାଶ୍ୟରେ କହିଲେ- ' ଉଚ୍ଚଶିକ୍ଷାର ମୃଗତୃଷ୍ଣା ପଛରେ ନଗୋଡାଇ ଯାଆଁଳାରେ ଖଣ୍ଡିଏ ଡାଲି ଚାଉଳ ଦୋକାନ କରି ବସିବା ତୁମ ପକ୍ଷରେ ଶ୍ରେୟସ୍କର ହେବ ।' ତାଙ୍କ ମାତା ଏଥିରେ ପ୍ରତିବାଦ କଲେ ଓ କ୍ରୋଧରେ ଗର୍ଜନ କଲେ ସିନା ଅନନ୍ୟୋପାୟ ହୋଇ ଦାରିଣୀ ଠାକୁରାଣୀଙ୍କ ଶରଣାପନ୍ନ ହେବାହିଁ ସାର ହେଲା । ଜ୍ୟେଷ୍ଠପୁତ୍ର ଯେ ତାଙ୍କ ପ୍ରତି ବିମୁଖ ହେଲେଣି ଏହା ସେମାନେ ଜାଣି ପାରିଲେ । ପରେ ନିଜକୁ ପରମ ବଦାନ୍ୟ ଦେଖାଇ ବଡବାପା କଲେଜ ନାମ ଲେଖା ପଇସା କେତୁଟା ବାପାଙ୍କ ଆଡକୁ ଫୋପାଡି ଦେଇ ପାଟଣା ଚାଲି ଗଲେ ।

ଏଠାରେ କହିବା ଆବଶ୍ୟକ ପଡୁଛି ଯେ ବଡବାପା ଜଣେ ଉଚ୍ଚ ଶିକ୍ଷିତ ହୋଇ ମଧ୍ୟ ନିଜ ବଂଶର କାହାରି ଉଚ୍ଚ ଶିକ୍ଷାରେ ସହାୟକ ହୋଇ ନଥିଲେ । ସେ ବାପାଙ୍କ ପ୍ରତି ଦେଖେଇ ଥିବା ବ୍ୟବହାର ତାଙ୍କ ପୁଅ ପ୍ରଫୁଲ୍ଲଚନ୍ଦ୍ର ପ୍ରତି ପୁନରାବୃତ୍ତି କରିଥିଲେ । ମାତ୍ର ନିଜ ଗୋଡରେ ଠିଆ ହୋଇଥିବା ବାପା ବୁଝି ଥିଲେ ପାଠର ମହତ୍ତ୍ୱ । ଏଣୁ ପରବର୍ତ୍ତୀ କାଳରେ ତାଙ୍କ ପୁତୁରା ପ୍ରଫୁଲ୍ଲଙ୍କ ଉଚ୍ଚଶିକ୍ଷାରେ ବିମାତା ବିମୁଖ ହେବାରୁ ବାପା ତାଙ୍କୁ ନିଜ ପାଖରେ ରଖି ପାଠ ପଢ଼ାର ଦାୟିତ୍ୱ ବହନ କରିଥିଲେ । ବଡ ବାପାଙ୍କ ଏ ଅସୂୟାର କାରଣ ଥିଲେ ତାଙ୍କର ଦ୍ୱିତୀୟ ପତ୍ନୀ , ଯେ କି ଦିନେ ହେଲେ ମୋ ବାପା ଏବଂ ତାଙ୍କ ସାବତ ପୁଅପ୍ରଫୁଲ୍ଲ ଭାଇଙ୍କୁ ସୁନଜରରେ ଦେଖି ନଥିଲେ । ଯଦି ତାଙ୍କ ପାଖରୁ ପ୍ରକୃତ ଅନାବିଳ ମାତୃ ସୁଲଭ ସ୍ନେହ ଓ ମମତା ଏ ଦୁଇ ଦୁଃଖୀ ବ୍ୟକ୍ତି ଠିକ୍ ସମୟରେ

ପାଇ ଥାଆନ୍ତେ ତେବେ ହୁଏତ ଏମାନଙ୍କ ଜୀବନର ଗତି ପଥ ଆହୁରି ପୁଷ୍କଳ ହୋଇ ପାରି ଥାଆନ୍ତା ।

୧୯୨୦ ମସିହାରେ ବାପା ରେଭେନ୍ସା କଲେଜରେ ଆଇ.ଏ ଶ୍ରେଣୀରେ ନାମ ଲେଖାଇଲେ । ବର୍ତ୍ତମାନ ଚାଲିଥିବା କଲେଜିଏଟ ସ୍କୁଲରେ ସେତେବେଳେ ରେଭେନ୍ସା କଲେଜ ଚାଲୁଥିଲା । ବାପାଙ୍କ ସହ କଲେଜ ହଷ୍ଟେଲର ଗୋଟିଏ କୋଠରୀରେ ଆହୁରି ଦୁଇଜଣ ଅନ୍ତେବାସୀ ଥିଲେ । ମାତ୍ର ବାପାଙ୍କ ତୁଳନାରେ ସେମାନେ ଥିଲେ ଆର୍ଥିକ ସଙ୍ଗତି ସମ୍ପନ୍ନ । ନିଜର ଆର୍ଥିକ ଓ ଶାରୀରିକ ଅକ୍ଷମତା ପାଇଁ ବାପା ସେମାନଙ୍କଠାରେ ସଂକୁଚିତ ହୋଇ ପଡୁଥିଲେ ହେଁ ଗଭୀର ଈଶ୍ୱର ବିଶ୍ୱାସ, ଦୃଢ଼ଚିତ୍ତ ଓ ଆତ୍ମବଳ ତାଙ୍କୁ ବିଦ୍ୟାର ବାରିଧିକୁ ଉଲଙ୍ଘ ଲମ୍ଫ ପ୍ରଦାନ ପାଇଁ ପ୍ରେତ୍ସାହିତ କରିଥିଲା । ଏହାର କାରଣ ଥିଲା ବିଦ୍ୟାଗ୍ରହଣ ପ୍ରତି ତାଙ୍କର ଅଦମ୍ୟ ପ୍ରଚେଷ୍ଟା ଓ ଅନ୍ୟ ଆଗରେ ନିଜକୁ ନ୍ୟୂନ ନକରିବାର ପ୍ରବଣତା । ଯାହା ଫଳରେ ସେ ସହଧ୍ୟାୟୀ ମହଲରେ ଆଲୋଚନାର ବିଷୟ ପାଲଟି ଯାଇଥିଲେ ।

ଏପରି ଏକ ଘଟଣା ତାଙ୍କ ଲକ୍ଷ୍ୟ ପଥକୁ ପ୍ରଭାବିତ କରିଥିଲା । ପୂଜା ଛୁଟି ପରେ ବାପା ହଷ୍ଟେଲକୁ ଫେରି ଦେଖନ୍ତି ତାଙ୍କ ସହଧ୍ୟାୟୀମାନେ ତାଙ୍କୁ ଗଭୀର ଭାବେ ସମ୍ବର୍ଦ୍ଧନା ଜଣାଉଛନ୍ତି । କାରଣ ଜାଣିଲେ ଯେ ଛୁଟି ପୂର୍ବରୁ ହୋଇଥିବା ତ୍ରୈମାସିକ ପରୀକ୍ଷାର ଇଂରାଜୀ ଉତ୍ତର ଖାତାରେ ପରୀକ୍ଷକ ତାଙ୍କୁ ୧୦୦ ପୂର୍ଣ ସଂଖ୍ୟାରୁ ୮୦ ନମ୍ବର ଦେଇଥିଲେ । ଜଣେ ସିଭିଲିଆନ ଛାତ୍ର ଭାବେ ସାହେବ ପ୍ରଫେସରଙ୍କ ଠାରୁ ଏତେ ନମ୍ବର ପାଇବା ସେକାଳରେ ଅଶ୍ରୁତ ପୂର୍ବ ଥିଲା । ବାପାଙ୍କ ଇଂରାଜୀ ରଚନା ଶୈଳୀ ଏତେ ଉନ୍ନତ ହୋଇଥିଲା ଯେ ତାହା ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିଲା । ଅଧ୍ୟାପକଙ୍କ ମତ ଥିଲା ଯେ ତାଙ୍କର ଏହି ଶୈଳୀ ଇଂରାଜୀ ସାହିତ୍ୟକ ଓ ସମାଲୋଚକ ମାକଲେଙ୍କ ରଚନାର ସମକକ୍ଷ । ଇଂରାଜୀ ଅଧ୍ୟାପକ ଏଥିରେ ମୁଗ୍ଧ ହୋଇ ଖାତାଟିକୁ ଅଧ୍ୟକ୍ଷ ହୁଇଟ୍‌ଲକ୍ ସାହେବଙ୍କୁ ଦେଖାଇଥିଲେ । ଅଧ୍ୟକ୍ଷଙ୍କ ଏକ ଲିଖିତ ଆଦେଶରେ ତାଙ୍କର ଏହି ଉତ୍ତର ଖାତା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀ ଠାରୁ ଶେଷ ବର୍ଷ ପର୍ଯ୍ୟନ୍ତ ଇଂରାଜୀ ଟିଉଟୋରିଏଲ କ୍ଲାସରେ ପଢ଼ା ଯାଇଥିଲା । ଏହା ଫଳରେ ବାପା ଅଳ୍ପଦିନ ମଧ୍ୟରେ ସାରା କଲେଜରେ ପରିଚିତ ହୋଇ ଯାଇଥିଲେ ।

ଈଶ୍ୱର କୃପାରେ ପଙ୍ଗୁ ଗିରି ଲଙ୍ଘନ କଲା ପରି ବାପା ଶାରୀରିକ ଅକ୍ଷମ ଥାଇ ସୁଦ୍ଧା ନାନା ସଂଘାତ ଭିତରେ ଅଦୃଶ୍ୟ ଦୈବ ପ୍ରେରଣା ବଳରେ ନିଜକୁ ପ୍ରସ୍ଫୁଟିତ କରି ପାରିଥିଲେ ।

ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ଛାତ୍ର ଜୀବନର ସ୍ୱପ୍ନ କେବଳ ନିଜକୁ ମଣିଷ କରି ଗଢ଼ିବା ନୁହେଁ, ଦେଶ ମାତୃକାର ସେବାରେ ନିଜକୁ ଉତ୍ସର୍ଗ କରିବା ଥିଲା ସେ ସମୟର ଲକ୍ଷ୍ୟ । ମହାତ୍ମାଗାନ୍ଧୀଙ୍କ ପଦ୍ମତୋଳା ଡାକରାରେ ଦେଶର ସମସ୍ତ ସଚ୍ଚା ନାଗ ତାଙ୍କ ବିଳରୁ ବାହାରି ଆସିଲେଣି ଦେଶ ସ୍ୱାଧୀନତା ପାଇଁ ନିଜକୁ ଉତ୍ସର୍ଗ କରିବାକୁ । ବୁଦ୍ଧିଜୀବି ଠାରୁ ଛାତ୍ର ସମାଜ ଏଥିରେ ନିଜକୁ ବିଶେଷ ଭାବେ ସାମିଲ କରି ଥାଆନ୍ତି । ସେତେବେଳେ ଓଡିଶା ଶିକ୍ଷାର ପ୍ରାଣ କେନ୍ଦ୍ର ରେଭେନ୍ସା କଲେଜରେ ଏ ବିଷୟରେ ଚାଞ୍ଚଲ୍ୟ ଖେଳିଯାଇଥାଏ । ଗୋଟିଏ ବର୍ଷ ମଧ୍ୟରେ ଦେଶ ସ୍ୱାଧୀନ ହେବ ଏହି ସ୍ୱପ୍ନରେ ଛାତ୍ର ସମାଜ ମସଗୁଲ ।

ସେତେବେଳର ରେଭେନ୍ସା କଲେଜ ହଷ୍ଟେଲର ପଛପଟେ କାଠଯୋଡି ନଦୀର ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ଥାଏ ଛାତ୍ରମାନଙ୍କ ସଭା ସମିତି ଓ ଆଲୋଚନାର ପୀଠସ୍ଥଳ । ପ୍ରତ୍ୟହ ସଭା ବା ଆଲୋଚନା ପରେ ସେମାନଙ୍କ ଚିତ୍ତରେ ଉନ୍ମାଦନା ଖେଳି ଯାଉ ଥିଲା । ଦେଶମାତୃକାର ସେବା ଆଗରେ ସେମାନଙ୍କର ଏ ଶିକ୍ଷା ଗ୍ରହଣ ନିରର୍ଥକ ବୋଲି ଛାତ୍ରମାନେ ମନେ କରୁଥିଲେ । ହଷ୍ଟେଲରେ ପାଠପଢା ଏକପ୍ରକାର ବନ୍ଦ କହିଲେ ଚଳେ । ଖଞ୍ଜ ଥିବାରୁ ବାପା ସିନା ପ୍ରତ୍ୟେହ ସଭାରେ ପ୍ରତ୍ୟକ୍ଷ ଭାବେ ଯୋଗ ଦେବାର ସମ୍ଭାବନା ନଥିଲା , ମାତ୍ର ସେ ସମୟର ସମସ୍ତ ଓଡିଆ,ଇଂରାଜୀ ଓ ବଙ୍ଗଳା ସମ୍ବାଦ ପତ୍ର ପାଠ କରି ଏବଂ ସହଧ୍ୟାୟୀଙ୍କ ସହ ଆଲୋଚନା କରି ସକଳ ତଥ୍ୟ ସଂଗ୍ରହ କରୁ ଥାଆନ୍ତି । ଦେଶ ସ୍ୱାଧୀନତା ସମ୍ବନ୍ଧୀୟ ବିଭିନ୍ନ ଭାଷାରେ ରଚିତ ପୁସ୍ତକମାନ ପାଠ କରି ସହପାଠୀଙ୍କୁ ସେ ବିଷୟରେ ଅବଗତ କରାଉ ଥାଆନ୍ତି ଏବଂ ଘରେ ବସି କିପରି ଏହି ଆନ୍ଦୋଳନକୁ ସଂଗଠିତ କରା ଯାଇ ପାରିବ ତାହାର ଯୋଜନା କରୁଥାଆନ୍ତି ।

ଏହି ସମୟରେ ଏକ ମଣି କାଞ୍ଚନର ସଂଯୋଗ ଘଟିଲା । ପଂଡିତ ନୀଳକଂଠ ଦାସ କଲିକତା ବିଶ୍ୱ ବିଦ୍ୟାଳୟରୁ ଅଧ୍ୟାପକ ଚାକିରୀରୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ସେ କଟକରେ ପହଞ୍ଚିଲା ମାତ୍ରେ ପୂର୍ବତନ ସତ୍ୟବାଦୀ ବିଦ୍ୟାଳୟର ଛାତ୍ର ମାନେ ତାଙ୍କ ଆହ୍ୱାନରେ ଅନୁପ୍ରେରିତ ହେଲେ । ବିଦେଶୀ ପରିଚାଳିତ ଶିକ୍ଷାନୁଷ୍ଠାନ ପରିତ୍ୟାଗ କରି ଦେଶ ସ୍ୱାଧୀନତାରେ ସହଯୋଗ କରିବାକୁ ଦୃଢ଼ ସଂକଳ୍ପ ହେଲେ । ନିଜର ନୈତିକ ସହଯୋଗ ଓ ସମର୍ଥନ ଦ୍ୱାରା କିଛି ହେଲେ ଦେଶ ସେବା ହୋଇ ପାରିବ ବିଚାରି ବାପା ନିଜ ବହି ପତ୍ରରେ ଡୋରି ବାନ୍ଧି କଲେଜ ପରିତ୍ୟାଗ କଲେ ।

ଏ ସମସ୍ତ କଥା କହୁଥିଲା ବେଳେ ମୁଁ ବାପାଙ୍କଠାରେ ଏକ ସ୍ୱତନ୍ତ୍ର ବ୍ୟକ୍ତି ସତ୍ତା ଅନୁଭବ କରେଁ । ଏ କି ବିଚିତ୍ର ଲୋକ ! ନିଜ ଇଚ୍ଛାରେ ଚାଲିବାରେ ଅସମର୍ଥ ଏହି ବ୍ୟକ୍ତି ପୁଣି ଦେଶ ପାଇଁ ଆତ୍ମବଳି ଦେବାକୁ ବଦ୍ଧପରିକର ! ଚିତ୍ତରେ ଗଭୀର

ଆତ୍ମବିଶ୍ୱାସ ନଥିଲେ କେହି ଅସମର୍ଥ ବ୍ୟକ୍ତି ଏତେ ସାହସ କରି ପାରି ନଥାଆନ୍ତା ଏପରି ଦୁଃସାହସିକ କାର୍ଯ୍ୟକୁ ଓହ୍ଲାଇ ପଡିବାକୁ । ବାପା ଏହି କଥା କହୁଥିଲା ବେଳେ ବର୍ତ୍ତମାନର ନେତାମାନଙ୍କ ସ୍ୱେଚ୍ଛା ପ୍ରଣୋଦିତ ଚେତନାକୁ ଭୀଷଣ ଆକ୍ଷେପ କରୁଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ନ ଦେଇ ବା ଶସ୍ତା ଲୋକ ପ୍ରିୟତାରେ ନେତା ସାଜିଥିବା ଏହି ଅନୈତିକ ବ୍ୟକ୍ତିଙ୍କୁ ବାପା ଭୀଷଣ ଘୃଣା କରୁ ଥିଲେ ।

ନିଜ ପୁତ୍ର କନ୍ୟାଙ୍କୁ ଉଚ୍ଚଶିକ୍ଷିତ କରାଇବାର ସ୍ୱପ୍ନ ଦେଖିଥିବା କୌଣସି ପିତା ମାତା ଏଭଳି ପାଠପଢ଼ା ଛାଡିବାକୁ କେବେ ସମର୍ଥନ କରି ଥାଆନ୍ତେ ? ତାଙ୍କ ବାପା ମାଆ ଓ କନିଷ୍ଠ ଭଉଣୀ ନିଶାମଣି ଏଥିରେ ଗଭୀର ମର୍ମାହତ ଓ ଦୁଃଖିତ ହୋଇ ଥିଲେ । ମାତ୍ର ତାଙ୍କ ଭାଉଜ ଓ କନିଷ୍ଠ ଭ୍ରାତା ତାଙ୍କୁ ଆକ୍ଷେପ କରିବା ସହ ବାପାଙ୍କ ଏ ଅଧୋଗତିରେ ଆନନ୍ଦିତ ହୋଇ ଥିଲେ । ଶିକ୍ଷା ଲାଭ ପୂର୍ଣ ନ ହେବାରୁ ଏବେ ଏହି ଅସମର୍ଥ ଯୁବକ ଦାରିଦ୍ର୍ୟର କଷାଘାତରେ ନିଷ୍ପେଷିତ ହୋଇ ଦିନେ ଅକାଳ ମୃତ୍ୟୁ ଲଭିବ । ଏହା ଫଳରେ ସେ ଦିନେ ହେଲେ ତାଙ୍କ ଉପରେ ବୋଝ ହେବ ନାହିଁ ,ଏହାହିଁ ଥିଲା ସେମାନଙ୍କ ଲକ୍ଷ୍ୟ ।

ଥରେ ଅସୁସ୍ଥ ହେବାରୁ କେତେ ଦିନ ପାଇଁ ମୋର ସ୍କୁଲ ବନ୍ଦ ହୋଇଗଲା । ଏଥିରେ ମୋ ମନରେ ଦୁଃଖ ଜାତ ହେଉଥାଏ । ସ୍କୁଲରେ ଗାଳି ଖାଇବି ବୋଲି ମୋର ମନରେ ଭୟ ଆସୁଥାଏ । ବାପା ବୁଝଉ ଥାଆନ୍ତି- 'ମୋ ଝିଅକୁ ପୁଣି କିଏ ଗାଳି ଦେବ । ମୁଁ ତୋତେ ଘରେ ସବୁ ପଢ଼େଇ ଦେବି । ହସି କରି କହନ୍ତି- ମୁଁ ପରା ତୋ ଗୁରୁ ।' ସେଇଠୁ ସେ ବଖାଣି ବସିଲେ ତାଙ୍କ ଦୁଃଖଦ ଅତୀତ । ତାଙ୍କ ଶିକ୍ଷା ଗ୍ରହଣ କିପରି ସାଗରର ଜୁଆର ଭଟ୍ଟା ପରି ଧୀରେ ଧୀରେ ଆଗ ପଛ ହୋଇ କିପରି ମାଡି ଚାଲିଥାଏ ତାହାର ଲୋମହର୍ଷ କାହାଣୀ ।

ଅସହଯୋଗ ଆନ୍ଦୋଳନ ଯୋଗୁଁ କଲେଜ ପରିତ୍ୟାଗ କରି ତାଙ୍କୁ ଦୁଇ ବର୍ଷକାଳ ଘରେ ବସି ରହିବାକୁ ପଡିଲା । ଅବଶ୍ୟ ଏହି ଦୁଇବର୍ଷ ଘରେ ବସି ରହିବା ତାଙ୍କର ଅନ୍ୟଥା ହୋଇ ନଥିଲା । ଏହି ସମୟ ମଧ୍ୟରେ ବିଭିନ୍ନ ଭାଷାର କାବ୍ୟ କବିତା-ଉପନ୍ୟାସ , ନାଟକାବଳୀ, ସମାଲୋଚନା ଓ ପତ୍ର ପତ୍ରିକା ପାଠ କରି ସେ ତାଙ୍କ ଜ୍ଞାନ ଭଣ୍ଡାରକୁ ପରିପୁଷ୍ଟ କରିଥିଲେ । ମାତ୍ର ୧୯୨୧ ମସିହାର 'ଚୌରୀଚୌରା' ହତ୍ୟାକାଣ୍ଡ ପରେ ଅସହଯୋଗ ଆନ୍ଦୋଳନରେ ଭଟ୍ଟା ପଡିଗଲା ।

ସ୍କୁଲ କଲେଜ ଛାଡିଥିବା ପିଲାମାନେ ପୁଣି ଶିକ୍ଷାୟତନକୁ ଲେଉଟିବା ଆରମ୍ଭ କଲେ । ବାପା ଏହି ଉଜାଣି ସ୍ରୋତରେ ପୁଣି ନିଜକୁ ସାମିଲ୍ କରିବାକୁ ଇଚ୍ଛାକଲେ । ସେ ଜାଣିଥିଲେ ସୁସ୍ଥ ସବଳ ବ୍ୟକ୍ତି ଯେ କୌଣସି କାର୍ଯ୍ୟ କରିବାରେ ସକ୍ଷମ । ମାତ୍ର ସେ ଯେ

ଖଞ୍ଜ ! ତାଙ୍କ ପାଇଁ ବିଦ୍ୟାର୍ଜ୍ଜନ ନିହାତି ଆବଶ୍ୟ । କାରଣ ଏହା ଫଳରେ ନିଜର ଭରଣ ପୋଷଣ ପାଇଁ କୌଣସି ସ୍କୁଲ ବା କଲେଜରେ ଅଧ୍ୟାପନା ଚାକିରିଟିଏ ଯୋଗାଡ କରିବାରେ ଅସମ୍ଭବ ହେବ ନାହିଁ । ନିଜକୁ ସମାଜରେ ସୁପ୍ରତିଷ୍ଠିତ କରିବାକୁ ପଡିବ ଏହି ଆଶାରେ ସେ ପୁଣି ପାଠପଢ଼ାରେ ଯୋଗ ଦେବାକୁ ମନସ୍ଥ କଲେ । ରେଭେନ୍ସା କଲେଜର ତତ୍କାଳୀନ ଅଧ୍ୟକ୍ଷ ଲାମ୍ବର୍ଟ ସାହେବଙ୍କୁ ଦରଖାସ୍ତ କରି ଶିକ୍ଷା ଗ୍ରହଣରେ ପୁନଃ ଯୋଗ ଦାନ ପାଇଁ ଅନୁମତି ପାଇଲେ ଏବଂ ଆଇ.ଏ ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଯୋଗ ଦେଲେ ।ବର୍ତ୍ତମାନ ତାଙ୍କର ମନୋକାମନା ପୂରଣ ପାଇଁ କିଛି ପ୍ରତି ବନ୍ଧକ ନାହିଁ ବୋଲି ଭାବି ସେ ପାଠ ପଢ଼ାରେ ମନ ନିବେଶ କଲେ ।

ବର୍ତ୍ତମାନ ଶିକ୍ଷାଗ୍ରହଣ କ୍ଷେତ୍ରରେ ତାଙ୍କର ଉଚ୍ଚାକାଂକ୍ଷା ଓ ଦୃଢ଼ ପ୍ରତିଜ୍ଞ ଥିବାର ଦେଖି ତାଙ୍କ ଜ୍ୟେଷ୍ଠ ଭ୍ରାତା ଏଥିରେ ଆଉ ପ୍ରତିବନ୍ଧକ ହେବାକୁ ସାହସ କରି ନଥିଲେ । ସେ ତାଙ୍କୁ ଆଉ କେବଳ ଗୋଟିଏ ବର୍ଷ ଆଇ. ଏ ପଢ଼ିବା ପାଇଁ ଖର୍ଚ୍ଚ ଯୋଗାଇ ଥିଲେ । ମାତ୍ର ବିଧିର ବିଧାନ ବିଚିତ୍ର ! ସେହି ଭାଇ ତାଙ୍କର ବି.ଏ ପଢ଼ିବାରେ କିଛି ସାହାଯ୍ୟକରିବାକୁ ନାସ୍ତି ବାଣୀ ଶୁଣାଇ ଦେଲେ । ଭାଉଜ ମଧ୍ୟ ଭାଇଙ୍କ କଥାରେ ଏକ ମତ ହେଲେ । ଏବେ ଅନନ୍ୟୋପାୟ ହୋଇ ସେ ଭାଇଙ୍କ ଉପରେ ଅଯଥା ବୋଝ ଓ ଭାଉଜଙ୍କ କୋପ ଦୃଷ୍ଟିରୁ ନିବୃତ୍ତ ହେବା ପାଇଁ ଭାଇଙ୍କ ବାସଗୃହରୁ ବିଦାୟ ନେଇ ନିଜ ଗାଆଁକୁ ଫେରି ଆସିବାକୁ ବାଧ୍ୟ ହୋଇ ଥିଲେ । ସେତେବେଳେ ଭାଇଙ୍କ ପାଖରେ ରହୁଥିବା ମାତା ନିଜର ଅସହାୟତାରେ ନିରବ ରହିଥିଲେ ଏବଂ ପୁତ୍ରକୁ ଗାଁ ପ୍ରତ୍ୟାବର୍ତ୍ତନ ପାଇଁ ଅଶ୍ରୁଳ ବିଦାୟ ଦେଇଥିଲେ ।

ସେତେବେଳେ ଗାଆଁରେ ତାଙ୍କ ପିତା ଅବସ୍ଥାନ କରୁଥିଲେ । ସେ ପୁତ୍ରଠାରୁ ସକଳ ବୃତାନ୍ତ ଶୁଣିଲେ ହେଁ ନିଜର ବୟସାଧିକ୍ୟ ହେତୁ ଏହି ଶାରୀରିକ ଅସମର୍ଥ ପୁତ୍ରଠାରୁ ଆହୁରି ଅସହାୟ ହୋଇ ଯାଇଥିଲେ । ଏଣୁ ନୀରବରେ ଅଶ୍ରୁ ବର୍ଜ୍ଜନ କରିବା ବ୍ୟତୀତ ତାଙ୍କଠାରେ ଅନ୍ୟ କୌଣସି ପନ୍ଥା ନଥିଲା । ତଥାପି ଉଚ୍ଚାକାଂକ୍ଷୀ ପୁତ୍ର ଥରେ କଟକ ଯାଇ ଉଚ୍ଚଶିକ୍ଷା ଲାଭ ବା ଅନ୍ୟ କୌଣସି ରୋଜଗାର ପନ୍ଥା ଅବଲମ୍ବନ କରିବା ବା ଅନ୍ୱେଷଣ କରିବାକୁ ତାଙ୍କର ଇଚ୍ଛା ପ୍ରକାଶ କଲେ। ପୁତ୍ରର ଏହି ଅଭିଳାଷରେ ପିତା ପ୍ରତିବନ୍ଧକ ହେଲେ ନାହିଁ ବରଂ ତାଙ୍କୁ ସାଥିରେ ଧରି କଟକ ଆସିଲେ । ସେ କାଳରେ ବସ୍ ଯୋଗେ ଯାତ୍ରାର ସୁବିଧା ନଥିବାରୁ ବାପା ଶଗଡରେ ଜଟଣୀ ଆସି ସେଠାରୁ ରେଳ ଯୋଗେ କଟକ ଆସିଥିଲେ । ଲୋକେ ସେକାଳରେ ପୁରୀ ଯିବା ପାଇଁ ମଧ୍ୟ ଏହି ରେଳ ପଥକୁ ଆଶ୍ରୟ କରୁଥିଲେ ।

ଲୋକେ ବେଳେବେଳେ ଜାଙ୍କାରୁ ଶଗଡରେ ବାରଙ୍ଗ ଆସି ମଧ୍ୟ ଟ୍ରେନ୍ ଧରୁଥିଲେ । ଏହି ସମୟରେ ସେମାନେ ଚନ୍ଦକା ଜଙ୍ଗଲ ମଧ୍ୟରେ ବାରମ୍ବାର ବାଘ ପ୍ରଭୃତି ହିଂସ୍ର ଜନ୍ତୁର ହାବୁଡରେ ପଡୁଥିଲେ । ବାପା ଏଭଳି ଭୟଂକର ପରିସ୍ଥିରେ କେତେଥର ପଡିଛନ୍ତି । ଥରେ ବାଘ ତାଙ୍କୁ ଏପରି ବାଟ ଓଗାଳିଲା ଯେ ସେ ଅନ୍ୟ ସହ ଯାତ୍ରୀଙ୍କ ସହ ଘୋର ଜଙ୍ଗଲ ମଧ୍ୟରେ ତିନି ଚାରି ଘଣ୍ଟା ଧରି ଅଟକି ରହିଥିଲେ । ସେ ସମୟର ଘଟଣା ବର୍ଣନା କରୁଥିଲା ବେଳେ ବାପାଙ୍କ ଭଳି ସାହସୀ ଲୋକର ରୋମ ଟାଙ୍କୁରି ଉଠୁଥାଏ ।

ସେ ସମୟରେ ରେଭେନ୍ସା କଲେଜ ହଷ୍ଟେଲର ସୁପରିନ୍‌ଟେଣ୍ଡେଣ୍ଟ ଥିଲେ ସ୍ୱନାମ ଧନ୍ୟ ସାହିତ୍ୟିକ ଡକ୍ଟର ଆର୍ତ୍ତ ବଲ୍ଲଭ ମହାନ୍ତି ଯେ କି ବାପାଙ୍କୁ ବହୁତ ସ୍ନେହ କରୁଥିଲେ। ସେ ବାପାଙ୍କ ପୂର୍ବ କୃତି ସ୍ମରଣ କରି ତାଙ୍କୁ ଉଚ୍ଚ ଭବିଷ୍ୟତଗଢ଼ିବା ପାଇଁ ଆଶ୍ୱାସନା ଦେଲେ । ସେ ଏତେ ଦିନ ଯାଏ କାହିଁକି ବି.ଏ ଶ୍ରେଣୀରେ ନାମ ଲେଖାଇ ନାହାନ୍ତି ବୋଲି ପଚାରିଲେ । ବାପାଙ୍କ ଦୁସ୍ଥ ଆର୍ଥିକ ଅବସ୍ଥା କଥା ଶୁଣି ଆର୍ତ୍ତବାବୁ ନିଜେ ବାପାଙ୍କ ଉଚ୍ଚ ଶିକ୍ଷାର ଦାୟିତ୍ୱ ବହନ କରିବାର ପ୍ରତିଶ୍ରୁତି ଦେଇ ତାଙ୍କୁ କଲେଜରେ ନାମ ଲେଖାଇବାରେ ସାହାଯ୍ୟ କଲେ । ସେ ବାପାଙ୍କ ସମସ୍ତ ଅଧ୍ୟୟନ ଖର୍ଚ୍ଚ ବହନ କରୁଥିଲେ ।

ସେତେବେଳକୁ ଆର୍ତ୍ତବାବୁ ପ୍ରାଚୀନ ଓଡିଆ ସାହିତ୍ୟର ପୁନରୁଦ୍ଧାର କାର୍ଯ୍ୟରେ ଆତ୍ମନିବେଶ କରି ସାରି ଥିଲେ । ସେ ବାପାଙ୍କୁ ତାଙ୍କର ସହକାରୀ ଭାବେ ଗ୍ରହଣ କଲେ । ଏଣୁ ପାଠ ପଢ଼ା ସହ ହାତ ଖର୍ଚ୍ଚ ପାଇଁ ବାପାଙ୍କର କିଛି ରୋଜଗାର ହୋଇ ଯାଉଥିଲା । ବୈଷୟିକ ଦିଗରୁ ନାନା ସମୟରେ ପ୍ରତିବନ୍ଧକ ଆସିଥିଲେ ଉଚ୍ଚାଭିଳାଷୀଙ୍କୁ ଦେବଦୂତ ଭଳି କେହି ନାଁ କେହି ଯଥା ସମୟରେ ସାହାଯ୍ୟ କରି ଥାଆନ୍ତି । ସେତେବେଳେ ଆର୍ତ୍ତବାବୁ ଥିଲେ ବାପାଙ୍କ ପାଇଁ ଏହି ଭଳି ଦେବଦୂତ ।

ପୁରୀର ତତ୍କାଳୀନ ଜିଲ୍ଲା କଲେକ୍ଟର ଦେଓ୍ୱାନ ବାହାଦୁର ଦୟାନିଧି ଦାସ ତାଙ୍କ ପୁତ୍ର ସକାଶେ ଜଣେ ଗୃହ ଶିକ୍ଷକର ସନ୍ଧାନରେ ଥାଆନ୍ତି । ସେ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ଆର୍ତ୍ତବାବୁଙ୍କ ଠାରେ ଏବିଷୟରେ ପରାମର୍ଶ କଲେ । ତାଙ୍କ ଠାରେ ଆର୍ତ୍ତବାବୁ ବାପାଙ୍କ କୃତିତ୍ୱ ବର୍ଣନା କରିତାଙ୍କ ନାମ ଘରୋଇ ଶିକ୍ଷକ ପାଇଁ ସୁପାରିସ୍ କଲେ । ଦୟାନିଧି ବାବୁ ଏଥିରେ ପ୍ରୀତ ହୋଇ ବାପାଙ୍କୁ ତାଙ୍କ ପୁତ୍ର ନିମାଇଁ ଚରଣଙ୍କ ଗୃହ ଶିକ୍ଷକ ଭାବେ ନିଯୁକ୍ତ କଲେ । ଏହା ଫଳରେ ବାପାଙ୍କ ଉଚ୍ଚ ଶିକ୍ଷାର ପଥ ସୁଗମ ହୋଇ ଥିଲା । ତାଙ୍କ ହଷ୍ଟେଲ ବୋର୍ଡିଂ ଖର୍ଚ୍ଚ ବହନ କରୁଥିଲେ ଦୟାନିଧି ବାବୁ । ପ୍ରକାଶ ଥାଉକି ବାପା ଓ ନିମାଇଁ ବାବୁ ହଷ୍ଟେଲରେ ଗୋଟିଏ ପ୍ରକୋଷ୍ଠରେ ଅବସ୍ଥାନ କରୁଥିଲେ । ବାପାଙ୍କ ଉତ୍ତମ ବ୍ୟବହାରରେ ଦୟାନିଧି ଦଂପତ୍ତି ଏତେ ପ୍ରୀତ ହୋଇ ଥିଲେ ଯେ ସେମାନେ ବାପାଙ୍କୁ ତାଙ୍କର ଅନ୍ୟତମ ପୁତ୍ର ଭାବେ ସ୍ନେହ କରୁଥିଲେ । ତାଙ୍କ ଶିକ୍ଷା ଦାନରେ ପ୍ରୀତ

ହୋଇ ଦେଓ୍ୱାନ ବାହାଦୁର ବାପାଙ୍କୁ ଭବିଷ୍ୟତରେ କୌଣସି ପଦସ୍ଥ ଚାକିରି କରାଇ ଦେବେ ବୋଲି ମଧ୍ୟ କଥା ଦେଇଥିଲେ ।

ପୂର୍ବରୁ ବାପାଙ୍କ ପୁରୀ ଅବସ୍ଥାନ କାଳରେ ଏକ ଘଟଣା ଘଟି ତାଙ୍କ ଜୀବନର ଗତି ପଥକୁ ଓଲଟ ପାଲଟ କରି ଦେଇଥିଲା । ଏହା ତାଙ୍କ ଜୀବନରେ ବିଧାତାର ଆଶୀର୍ବାଦ ସ୍ୱରୂପ ତାଙ୍କ ଜୀବନର ଦିବ୍ୟ ଚେତନାର ସ୍ରୋତଟିଏ ସୃଷ୍ଟି କଲା । ଏହି ଘଟଣାଟି ମୁଁ ତାଙ୍କ ଆତ୍ମଜୀବନୀରୁ ଉଦ୍ଧାର କରି ସଂକ୍ଷେପରେ ବର୍ଣ୍ଣନା କରୁଛି । କନ୍ୟା ଭାବେ ଏପରି ଘଟଣାକୁ ମୋର ଏଡାଇ ଯିବାର କଥା । ଏହା ପ୍ରକାଶ କରିବା ମୋ ପକ୍ଷେ ଧୃଷ୍ଟତା ହୋଇ ପାରେ । କିନ୍ତୁ ନ ଲେଖିଲେ ତାଙ୍କ ଜୀବନୀ ଯେ ଅସଂପୂର୍ଣ୍ଣ ରହି ଯିବ ! ପୁଣି ଯେଉଁ ପ୍ରଣୟ ମଣିଷକୁ ଉନ୍ନତିର ମାର୍ଗରେ ଅଗ୍ରସର କରାଏ ତାହା , ଜୈବିକ ପ୍ରଣୟ ଠାରୁ କେତେ ମହତ୍ତର !

ସେତେବେଳେ ତାଙ୍କ ଜ୍ୟେଷ୍ଠଭ୍ରାତା ପୁରୀ ଜିଲା ସ୍କୁଲରେ ସହକାରୀ ଶିକ୍ଷକ ଥାଆନ୍ତି । ମାଟି ମଣ୍ଡପ ସାହିର ଏକ ଭଡା ଘରେ ସେମାନେ ରହୁ ଥାଆନ୍ତି । ତାଙ୍କ ଘର ନିକଟରେ ଓଡିଶା ବାହାରର ଜଣେ ସମ୍ଭ୍ରାନ୍ତ କରଣ ପରିବାର ଗ୍ରୀଷ୍ମ ଅବକାଶ ଅତିବାହିତ ନିମନ୍ତେ ଅବସ୍ଥାନ କରୁଥିଲେ । ସେହି ପରିବାରରେ ପ୍ରମିଳା ନାମ ଧାରୀ କିଶୋରୀଟିଏ ଥିଲେ । ସେହି କିଶୋରୀ ଜଣକ ସ୍ୱଳ୍ପ ସମୟ ପାଇଁ ମୋ ବାପାଙ୍କ ଜୀବନରେ ପ୍ରୀତିର ଅନିନ୍ଦ୍ୟ ମନ୍ଦାକିନୀ ପ୍ରବାହିତ କରି ଥିଲେ। ଏହା ଥିଲା ବାପାଙ୍କ ଜୀବନର ପ୍ରଥମ ଓ ଶେଷ ପ୍ରଣୟ ।ଏପରି ଜଣେ ସୁନାରୀଙ୍କୁ ଜୀବନ ସଙ୍ଗିନୀ ଭାବେ ଲାଭ କରିବା ପାଇଁ ନିଜକୁ ପ୍ରତିଷ୍ଠିତ କରିବାକୁ ହେବ , ଏଇ ପ୍ରତିଜ୍ଞା ତାଙ୍କ ମାନସ ପଟରେ ଜାତହେଲା ।

ବାପାଙ୍କ ସକଳ କାର୍ଯ୍ୟ ମଧ୍ୟରେ ପ୍ରେରଣାର ଉତ୍ସ ଥିଲେ ତାଙ୍କ ପ୍ରେୟସୀ । ତାଙ୍କୁ ପାଇବା ପାଇଁ ସେ ନିଜକୁ ଗଢ଼ି ତୋଳିବାରେ ମନ ପ୍ରାଣ ଦେଇଥିଲେ । ମାତ୍ର କାଳର ଗତି ବିଚିତ୍ର ! ତାଙ୍କ କଳ୍ପନାର ଧ୍ରୁବତାରା ଅନ୍ୟତ୍ର ବିବାହ କରିଗଲେ । ଏହା ବାପାଙ୍କୁ ଦାରୁଣ ଆଘାତ ଦେଇଥିଲା । ସେ ସାମୟିକ ଭାବେ ମାନସିକ ଭାରସାମ୍ୟ ହରାଇ ବସିଥିଲେ ।

ବାପା ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କୁ ଭୁଲି ପାରି ନଥିଲେ । ମାତ୍ର ବିବାହ ପରେ ଏହି ମହିଳା ଜଣକ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ଦେଇ ମୃତ୍ୟୁବରଣ କଲେ । ସେ ସିନା ଇହ ଲୋକରୁ ଚାଲି ଗଲେ, ମାତ୍ର ବାପାଙ୍କ ହୃଦୟ ମଧ୍ୟରେ ଏକ ସ୍ୱତନ୍ତ୍ର ଆସନରେ ସେ ଚିର ଦିନ ଅବସ୍ଥାନ କରି ଥିଲେ । ବାପାଙ୍କ ଏହି ଗୋପନୀୟ ତଥା ସ୍ପର୍ଶ କାତର ଘଟଣାକୁ ନିଃସଙ୍କୋଚରେ କବିତା ମାଧ୍ୟମରେ ଅମର କରି ଯାଇଛନ୍ତି । ଏହି ମହିଳାଙ୍କ ଉଦ୍ଦେଶ୍ୟରେ ରଚିତ ଏକ ଶୋକଗୀତିକାରୁ ସେ ଚିରନ୍ତନ ପ୍ରେମର ସୂଚନା ମିଳେ ।

ବିଚ୍ଛନ୍ଦ ଚରଣ ପଟ୍ଟନାୟକ

କଳ୍ପନା ମହୀରୁହ ବାସ୍ତବ ଅଶନି
ଜାଳିଦେବ ବନ୍ଧୁ ଆରେ ଥିଲି ନାହିଁ ଜାଣି ,
ଚିର ବିଚ୍ଛେଦ ବଉଦେ
ଲୁଚି ଯାଇ ବାରେ ଆଉ ନହୋଇବୁ ଉଦେ ।
( କବିତା କୁମୁଦ)

ଚିତ୍ତରେ ଉଚ୍ଚ ହେବାର ଦୁର୍ବାର ଇଚ୍ଛା ସତ୍ୱେ ବି.ଏ ଅଧ୍ୟୟନ କାଳରେ ସେ ହଠାତ୍ ଅସୁସ୍ଥ ହୋଇ ପଡିଥିଲେ। ଏପରି ଅବସ୍ଥାରେ ମଧ୍ୟ ସେ ପରୀକ୍ଷା ଦାନରୁ ବିଚ୍ୟୁତ ହେଲେ ନାହିଁ, ଏବଂ ଓଡିଶାରୁ ପ୍ରଥମ ସ୍ଥାନରେ ସେ ଏକମାତ୍ର ଛାତ୍ର ଭାବେ କୃତ କାର୍ଯ୍ୟ ହୋଇ ଥିଲେ । ତଥାପି ତାଙ୍କର ଦୁଃଖ ରହିଗଲା ଯେ ସେ ସମଗ୍ର ବିହାର-ଓଡିଶାର ଛାତ୍ର ମଧ୍ୟରେ ପ୍ରଥମ ହୋଇ ପାରି ନଥିଲେ ବୋଲି ।

ଏମ୍. ଏ. ପଢ଼ିବାର ଇଚ୍ଛା ଥିଲେ ହେଁ ଆର୍ଥିକ ଅସୁବିଧା ଦୃଷ୍ଟିରୁ ଆଇନ୍ ପଢ଼ାରେ ଯୋଗ ଦେଲେ । ମାତ୍ର ତାଙ୍କର ଚିର ସହଚର ଅସୁସ୍ଥତା ଏ ଶିକ୍ଷା ସମାପନରେ ପ୍ରତି ବନ୍ଧକ ସୃଷ୍ଟିକଲା ।

ବିଧାତାର ନିୟମ ଅଲଂଘନୀୟ । ତା ପାଖରୁ କେହି ଜୀବ ନିସ୍ତାର ପାଇ ନାହାନ୍ତି । ପୁଣି କବି ଓ ଭାବୁକଙ୍କୁ ନିୟତି ସଦାବେଳେ ପରୀକ୍ଷା କରେ । କାରଣ ସେ ଜାଣେ ଯେ ଅଭାବ ନହେଲେ ଭାବ ଆସିବ କେଉଁଠୁ ? ସେଥିପାଇଁ ମଧ୍ୟେ ମଧ୍ୟେ ପ୍ରିୟ ଜନର ବିଚ୍ଛେଦ ତାଙ୍କ ପାଇଁ ସେ ସାଇତି ରଖି ଥିଲା । ହଠାତ୍ ତାଙ୍କ ପ୍ରିୟ ଛାତ୍ର ତଥା ଯୌବନର ଦରଦୀ ବନ୍ଧୁ ନିମାଇଁ ଚରଣଙ୍କ ଅକାଳ ବିୟୋଗ ଘଟିଲା । ବାପା ଏଥିରେ କେବଳ ହତ ଚକିତ ହେଲେ ନାହିଁ, ନିଜକୁ ନିଃଶ୍ୱ ମଣିଲେ । ଉଚ୍ଚ ଶିକ୍ଷାର ରାସ୍ତା ତାଙ୍କ ପାଇଁ ହଠାତ୍ ବନ୍ଦ ହୋଇଗଲା ।

ଏହି ସମୟରେ ଗୃହ ମଧ୍ୟରେ ଅଶାନ୍ତ ବାତାବରଣ ଖେଳି ଗଲା । ଆମ ଦାଦା ବଡମାଆଙ୍କ କନିଷ୍ଠ ଭଉଣୀକୁ ବିବାହ ପାଇଁ ଜିଦ୍ ଧଇଲେ । ମାତ୍ର ପରମ ନ୍ୟାୟ ଓ ଆଦର୍ଶବାଦୀ ଜେଜୀମା ତାକୁ ବରଦାସ୍ତ କଲେ ନାହିଁ । ସେ ଏଥିରେ ପ୍ରତିବାଦ କରି ଗୃହ ତ୍ୟାଗ କଲେ । ଖଣ୍ଡଗିରିର ଭୟଙ୍କର ଜଙ୍ଗଲ ମଧ୍ୟରେ ସାତ ଦିନଧରି ଆତ୍ମଗୋପନ କରିଥିଲେ । ଆତ୍ମୀୟମାନେ ବହୁ ଖୋଜା ଖୋଜି କରି ତାଙ୍କୁ ଠାବ କଲେ ଏବଂ ଘରକୁ ଫେରିବାର ଅନୁରୋଧ କଲେ । ସେମାନଙ୍କ ଅନୁରୋଧରେ ସେ ଘରକୁ ଫେରିଲେ ସିନା ବଞ୍ଚିବଥିବା ଯାଏ ଦିନେ ହେଲେ ସାନ ବୋହୂର ମୁହଁ ଚାହିଁ ନଥିଲେ ।

ଆମ ଜେଜୀମାଆ ସନ୍ତାନଙ୍କ ଦୋଷ ତ୍ରୁଟି ସୁଧାରିବାକୁ କେବେହେଲେ ଗାଳି ବା ପ୍ରହାର କରନ୍ତି ନାହିଁ । ବିଭିନ୍ନ ଢ଼ଗ ଢ଼ମାଳୀ ବା କବିତା ମଧ୍ୟମରେ ସେ

ଅନ୍ୟର ତ୍ରୁଟି ଦେଖାଇ ତାଙ୍କୁ ସତ୍ ପଥରେ ଯିବା ପାଇଁ ଉପଦେଶ ଦେଉଥିଲେ । ସେ କାଉଁରିଆ କାଠି- ଭାଙ୍ଗି ଯିବ ପଛେ କେବେ ନଇଁବ ନାହିଁ । ସେ କହୁ ଥିଲେ-' ମରିବ ହଂସ, ନଖାଇବ ଗୋରୁ ମାଂସ' । ଆମ ଜେଜୀମାଙ୍କ ଏହି ଜିଦ୍‌ଖୋର ମନୋଭାବ ବାପାଙ୍କଠାରେ ଥିଲା ।

ସେ ୧୯୩୪ ମସିହାରେ ଇହଲୀଳା ସମ୍ବରଣ କଲେ । ଏହା ବାପାଙ୍କୁ ଦାରୁଣ ଆଘାତ ଦେଇଥିଲା । ଜୀବନରେ କୌଣସି ସମ୍ମାନ ଲାଭ ବେଳେ ସେ ଜନନୀଙ୍କୁ ମନେ ପକାଇ ଥାଆନ୍ତି । ଯେ ତାଙ୍କ ପାଇଁ ନିରନ୍ତର ଚିନ୍ତିତ ଥିଲା ଆଜି ସେ ନାହିଁ ପୁଅର ଯଶ ଖ୍ୟାତି ଦେଖିବାକୁ । ଆଜି ତାଙ୍କ ପୁଅ ପଲ୍ଲୁ ହୋଇ ଗିରି ଲଂଘି ଦରିଆ ପାରିରେ ପରିଚିତ ହେଲେଣି । ଜନନୀଙ୍କୁ ସବୁଦିନ ପାଇଁ ହରାଇ ସେ ହତବମ୍ବ ହୋଇ ଗଲେ ।

ମାଆ ମୃତ୍ୟୁର ଦୁଇ ବର୍ଷ ପରେ ୧୯୩୬ ମସିହାରେ ତାଙ୍କ ବାପା ପରଲୋକ ଗମନ କଲେ । ଏବେ ମୋ ବାପା ପିତୃ ମାତୃ ହରା ହୋଇଗଲେ । ବାପାଙ୍କ ଭବିଷ୍ୟତ କଥା ଭାବି ତାଙ୍କ ଜନନୀ ପୁରୀ ଜଗନ୍ନାଥଙ୍କ ଶରଣାପନ୍ନ ହୋଇ ପ୍ରତି ଦିନ ଗରୁଡ ଖୁମ୍ବ ପାଖରେ ନିଜ ଛୋଟା ପୁତ୍ରର ମଙ୍ଗଳ କାମନା କରି ପ୍ରାର୍ଥନା କରୁଥିଲେ । ପିତା ଗ୍ରାମର ଦାରିଣୀ ଦେବୀଙ୍କୁ ଆକୁଳ ନିବେଦନ ଜଣାଉଥିଲେ ଅସହାୟ ପୁତ୍ରର ସହାୟ ହେବାକୁ । ଜନକ ଜନନୀଙ୍କ ବିଗଳିତ ଲୋତକଧାରା ଭଗବାନଙ୍କ ଚରଣ ଧୋଉଥିଲା ମୋ ବାପାଙ୍କ ପାଇଁ । ସେ ପୁଣ୍ୟ ମୟ ପିତା ମାତା ମୋ ବାପାଙ୍କୁ ଛାଡି ଗଲେ ସବୁଦିନ ପାଇଁ । କିନ୍ତୁ ଦେଇଗଲେ ବିଷ୍ଣୁପାଦାଶ୍ରିତ ଚିର ଆଶୀର୍ବାଦ , ଯାହାକୁ ବାପା ଲଲାଟରେ ତିଳକ ରୂପେ ଧାରଣ କରି ଜୀବନ ନୌକା ବାହିବାକୁ ସକ୍ଷମ ହେଲେ ।

ଆଗକୁ ବହୁତ କାର୍ଯ୍ୟ ଅଛି । ଅଦୃଷ୍ଟ ତାଙ୍କୁ ପଥ କଢ଼େଇ ନେଉଥାଏ । ଏବେ ସେ ଦୁଃଖ ଓ କୋହକୁ ହୃଦୟର ନିଭୃତ ସ୍ଥାନରେ ସାଇତି ନିଜ କର୍ତ୍ତବ୍ୟରେ ଲାଗି ଗଲେ ।



## ବୃତ୍ତି ଓ ପ୍ରବୃତ୍ତି :

ଆବାଲ୍ୟରୁ ପରିବାର ଉପରେ ବୋଝ ହୋଇଥିବା ବେଳେ ବର୍ତ୍ତମାନ ଆଉ ଶିକ୍ଷା ପଛରେ ନଧାଇଁ ଅନ୍ତତଃ ନିଜର ଅନ୍ନ ସଂସ୍ଥାନ ପଥରେ ସେ ବାହାରି ପଡିଲେ । ସେତେବେଳେ ଖୋର୍ଦ୍ଧା ନିକଟବର୍ତ୍ତୀ ଓଳସିଂ ହାଇ ସ୍କୁଲରେ ଶିକ୍ଷକ ପଦବୀଟିଏ ଖାଲି ପଡିଥିଲା । ବାପା ସେଠରେ ସହକାରୀ ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । ମାତ୍ର ବର୍ଷ ଟିଏ ( ୧୯୨୮-୨୯) ଅଧ୍ୟାପନା କରିଥିଲେ ମଧ୍ୟ ସେଠାରେ ଜଣେ ଉତ୍ତମ ଶିକ୍ଷକ ଭାବେ ସେ ଅଳ୍ପ ଦିନ ମଧ୍ୟରେ ଛାତ୍ର ମହଲରେ ସୁଖ୍ୟାତି ଅର୍ଜନ କରି ପାରିଲେ ।

ସେତେବେଳେ ଏକ ପରଂପରା ଥିଲା ଛାତ୍ରମାନେ ବିଦାୟ ନେବା ପୂର୍ବରୁ ଗୁରୁଙ୍କୁ ପ୍ରଣାମୀ ଦେଇ ବିଦାୟ ନିଅନ୍ତି । ଛାତ୍ରମାନେ ତାଙ୍କୁ ଉପହାର ଦେବାରୁ ସେ ତାହା ନ ନେଇ ତା ବଦଳରେ କିଛି ପୁରୁଣା ପୋଥି ସଂଗ୍ରହ କରିଦେବା ପାଇଁ କହିଲେ । ପୂର୍ବରୁ ଛାତ୍ର ଜୀବନରେ ଆର୍ତ୍ତବାବୁଙ୍କ ସହ ପ୍ରାଚୀନ ପୋଥି ସଂପାଦନା କାର୍ଯ୍ୟ କରି ସେ ଜାଣି ପାରିଥିଲେ ଯେ ଓଡିଶାର ପୁରପଲ୍ଲୀରେ ଏଭଳି ଅନେକ ଦୁର୍ଲଭ ପୋଥି ପଡି ରହି ଉପଯୁକ୍ତ ସଂରକ୍ଷଣ, ସଂପାଦନା ଅଭାବରୁ ନଷ୍ଟ ଏବଂ ବିଲୁପ୍ତ ହେବାକୁ ବସିଛି । ଏଣୁ ସେ ପ୍ରାଚୀନ ପୋଥି ସଂଗ୍ରହ ଓ ସଂପାଦନାକୁ ଜୀବନର ଅନ୍ୟତମ ଲକ୍ଷ୍ୟ ଭାବେ ଗ୍ରହଣ କରିଥିଲେ ।

'ପ୍ରାଚୀ ସମିତି' ୧୯୨୬ ମସିହା ( ମାର୍ଚ୍ଚ)ରେ ଗଠନ ଠାରୁ ବାପା ତାହାର ସଂପାଦକ କାର୍ଯ୍ୟ ନିର୍ବାହ କରୁଥିଲେ । ଓଳସିଂରେ ଥାଇ ମଧ୍ୟ ବାପା ସେ କାର୍ଯ୍ୟରେ ଆତ୍ମ ନିୟୋଗ କରିଥିଲେ । ସେ ସେଠାରୁ ବହୁ ଦୁର୍ଲଭ ପୋଥି ସଂଗ୍ରହ କରି ତାକୁ ପ୍ରାଚୀ ସମିତି ହସ୍ତରେ ଅର୍ପଣ କରିଥିଲେ । ପରେ ସେଥିରୁ କିଛି ସଂପାଦିତ ହୋଇ ପ୍ରକାଶ ଲାଭ କରିଥିଲା ।

ବାପା ବିଶ୍ୱାସ କରୁଥିଲେ ଗୁରୁ ଛାତ୍ର ମଧ୍ୟରେ ଏକ ସୁ ସଂପର୍କ ରହିବା ଉଚିତ । ମାତ୍ର ଏ ବିଷୟରେ ବାପାଙ୍କ ନୀତି ସହ ଅନ୍ୟ ଶିକ୍ଷକଙ୍କ ମେଳ ନ ହେବାରୁ ସେ ଗୋଟିଏ ବର୍ଷ ପରେ ଓଳସିଂରୁ ବିଦାୟ ନେଇଥିଲେ । ଏବେ ସେ ପୂର୍ଣ୍ଣପ୍ରାଣରେ ପ୍ରାଚୀ କାର୍ଯ୍ୟରେ ଲାଗି ପଡିଲେ । ସେ କେବଳ ସମିତିର ସଂପାଦକ ନଥିଲେ ନିଜେ ମଧ୍ୟ କେତୋଟି ପୁସ୍ତକ ସ୍ୱତନ୍ତ୍ର ଭାବେ ସଂପାଦନା କରିଥିଲେ । ସେଗୁଡିକ ହେଉଛି-

ଗୁରୁ ଭକ୍ତି ଗୀତା - ୧ମ ଖଣ୍ଡ　　　୧୯୩୦

| | |
|---|---|
| ଜୟକୃଷ୍ଣ ଭଜନ | ୧୯୩୧ |
| ଚଉତିଶା ମଧୁଚକ୍ର- ୧ମ ରୁ ୫ମ ଖଣ୍ଡ | ୧୯୩୧ -୩୩ |
| ସାଧୁ ଗୀତି | ୧୯୩୨ |
| ଖାଡାଙ୍ଗା ଭାଗବତ | ୧୯୩୨ |
| ଶଶିରେଖା | ୧୯୩୩ |
| ଗୁରୁ ଭକ୍ତିଗୀତା | ୧୯୩୪ |

ଏଠାରେ ଉଲ୍ଲେଖ ଯୋଗ୍ୟ 'ପ୍ରାଚୀ ସମିତି' ଦ୍ୱାରା ପ୍ରକାଶିତ ୫୪ ଖଣ୍ଡ ପୁସ୍ତକ ମଧ୍ୟରୁ ବାପା ନିଜେ ସଂପାଦନା କରିଥିଲେ ୧୧ ଖଣ୍ଡି । ଏତଦ୍ ବ୍ୟତୀତ ଅନ୍ୟ ପୁସ୍ତକମାନ ସଂପାଦନାରେ ସେ ଆର୍ତ୍ତବାବୁଙ୍କୁ ସହାୟତା କରିଥିଲେ ।

ପ୍ରାଚୀ ସମିତି ପକ୍ଷରୁ ପ୍ରକାଶ ପାଉଥିବା ତ୍ରୈମାସିକ ଗବେଷଣାତ୍ମକ ଇଂରାଜୀ ପତ୍ରିକା ' ପ୍ରାଚୀ'ର ପ୍ରଥମ ସଂସ୍କରଣ ଠାରୁ ଶେଷ ପର୍ଯ୍ୟନ୍ତ ବାପା ଏହାର ସମ୍ପାଦନା ମଣ୍ଡଳୀର ସଦସ୍ୟ ଥିଲେ । ମୁଖ୍ୟ ସଂପାଦକ ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା ।

ସେତେବେଳେ କଟକ ସହରରେ କାଠଯୋଡୀ ତୀରସ୍ଥ ଗଣେଶଘାଟର ଏକ ଦ୍ୱିମହଲା କୋଠାରେ ପ୍ରାଚୀ ସମିତି ଅବସ୍ଥିତ ଥିଲା । ବାପା ଏହାର ଉପର ମହଲାର ଏକ ପ୍ରକୋଷ୍ଠରେ ଅବସ୍ଥାନ କରୁଥିଲେ । ତାଙ୍କ ସହକାରୀ ଭାବେ ଥିଲେ କୁଜଙ୍ଗ ନିବାସୀ ମାୟାଧର ମହାନ୍ତି । ସେ କେବଳ ତାଙ୍କ ବ୍ୟକ୍ତିଗତ ସହକାରୀ ନଥିଲେ ଶେଷ ପର୍ଯ୍ୟନ୍ତ ସେ ଆମ ପରିବାର ଜଣେ ସଦସ୍ୟ ପାଲଟି ଯାଇ ଥିଲେ । ଆମେ ତାଙ୍କୁ ମାୟାଧରବାବୁ ବା ସଂକ୍ଷେପରେ 'ମାଧୋଉ' ବୋଲି ଡାକୁଥିଲୁଁ । କହିବା ନିସ୍ପ୍ରୟୋଜନ ବାପା ଓ ମାୟାଧର ବାବୁଙ୍କ ସଂପର୍କ ଥିଲା ରାମ- ହନୁମାନ ପରି ।

ସେତେବେଳେ ବାପା 'ପ୍ରାଚୀ ସମିତିର' ସଂପାଦକ ଥାଆନ୍ତି । କିନ୍ତୁ, କ୍ରମେ ସମିତିର ସଦସ୍ୟମାନଙ୍କ ମଧ୍ୟରେ ମନୋମାଳିନ୍ୟ ଓ ଆର୍ଥନୀତିକ ଅସ୍ୱଚ୍ଛଳତା ଯୋଗୁଁ ପ୍ରାଚୀସମିତି ଅଚଳ ହୋଇ ଆସିଲା । ହଠାତ୍ ୧୯୩୪ ମସିହାରେ ପ୍ରାଚୀ ସମିତି ମଧ୍ୟ ଭାଙ୍ଗିଗଲା । ପ୍ରାଚୀ ଆକାଶରେ ଯେଉଁ ସୂର୍ଯ୍ୟୋଦୟ ଘଟିଥିଲା ତାକୁ ସିନା ରାହୁ ଗ୍ରାସ କରି ଦେଲା; କିନ୍ତୁ ଏ ଜାତିର ସାହିତ୍ୟ ଓ ସଂସ୍କୃତି ପାଇଁ ତାହାର ଦିଗ୍‌ଦର୍ଶନ ଓ ଅବଦାନ ଭବିଷ୍ୟତ ବଂଶ ଧରଙ୍କ ପାଇଁ ଚିର ଅନୁକରଣୀୟ ହୋଇ ରହିଗଲା ।

୧୯୪୧ ମସିହାରେ ବାପା ବି. ଏଲ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ ଜଜ୍‌କୋର୍ଟରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ମାତ୍ର ଏହା ଦୀର୍ଘ ଦିନ ସ୍ଥାୟି ହେଲା ନାହିଁ । ଏହି ବ୍ୟବସାୟ ପରିତ୍ୟାଗ କରିବା ପଛରେ ଏକ ସ୍ୱର୍ଣକାତର କାହାଣୀ ଅଛି । ଥରେ ଜଣେ ଗରିବ ଲୋକ ଓକିଲାତି ଫିସ୍ ଦେବା ପାଇଁ ତାର ଜମି ବନ୍ଧକ ରଖି ଥିବାର

ସଂବାଦ ପାଇ ମୋ ମାଆ ମର୍ମାହତ ହେଲେ । ସେ ବାପାଙ୍କଠାରେ ଜିଦ୍ କଲେ ପରର ତଣ୍ଟିଚିପା ପଇସା ତାଙ୍କ ଘରେ ପଶିବ ନାହିଁ । ଏଥିରେ ବାପା ଓକିଲାତି ବ୍ୟବସାୟ ପରିତ୍ୟାଗ କଲେ ।

ଏହା ପରେ ଆରମ୍ଭ ହେଲା ତାଙ୍କ ସରକାରୀ ଚାକିରୀ ଜୀବନ । ୧୯୪୨ ମସିହାରେ ଓଡିଶା ସରକାରଙ୍କ ଲୋକ ସଂପର୍କ ବିଭାଗରେ ଆଡିସ୍ନାଲ୍ ଓଡିଆ ଟ୍ରାନ୍ସଲେଟର ଭାବେ ଯୋଗ ଦେଲେ । ପରେ ରାଇଟର ଟ୍ରାନ୍ସଲେଟର ପଦବୀକୁ ଉନ୍ନୀତ ହୋଇଥିଲେ । ଜଣେ ଶାରୀରିକ ଅକ୍ଷମ ବ୍ୟକ୍ତି ଉତ୍ତୀର୍ଣ୍ଣ ବୟସରେ ସରକାରୀ ଉଚ୍ଚ ପାହ୍ୟାରେ ଅବସ୍ଥାପିତ ହେବା ସମ୍ଭବ ହୋଇ ନଥାଆନ୍ତା, ମାତ୍ର ଉଭୟ ଇଂରାଜୀରୁ ଓଡିଆ ଏବଂ ଓଡିଆରୁ ଇଂରାଜୀ ଅନୁବାଦ କରିବାର ଅପୂର୍ବ ଦକ୍ଷତା ଏବଂ ସର୍ବଜନ ବିଦିତ ସାହିତ୍ୟିକ ପ୍ରତିଭା ଏ ପ୍ରତିବନ୍ଧକ ଅପସାରଣ କରିଥିଲା ।

କଟକରେ ରାଜ୍ୟ ସଚିବାଳୟ ଥିବାବେଳେ ବାପା ଏକ ହାତଟଣା ରିକ୍ସାରେ ଅଫିସ୍ ଯିବା ଆସିବା କରନ୍ତି । ଏହି ରିକ୍ସାଟି ତାଙ୍କୁ ଶ୍ୱଶୁର ଘରୁ ଯୌତୁକ ଆକାରରେ ମିଳିଥିଲା । ଭିକାରୀ ମିଆଁ ଥିଲା ଏ ରିକ୍ସା ଚାଳକ । ମୁଁ ଛୋଟ ଥିଲାବେଳେ ପ୍ରତିଦିନ ବାପାଙ୍କୁ ରିକ୍ସାରେ ଅଫିସ୍ ଛାଡି ଯାଏଁ । ପୁଣି ଉପରଓଳି ଯାଇ ନେଇ ଆସେଁ । ମୋତେ ଏଇ ରିକ୍ସାରେ ବସିବାକୁ ଭାରି କୌତୁକ ଲାଗୁଥିଲା ।୧୯୫୨ ମସିହା ଯାଏ ରାଜ୍ୟ ସଚିବାଳୟ କଟକ ରେ ଥିଲା ପର୍ଯ୍ୟନ୍ତ ବାପାଙ୍କ ବାହନ ଥିଲା ଭିକାରୀ ମିଆଁ ଚାଳିତ ଏହି ରିକ୍ସା ।

ମାତ୍ର ସଚିବାଳୟ ଭୁବନେଶ୍ୱର ଉଠିଗଲା ପରେ ବାପା ଭୁବନେଶ୍ୱରସ୍ଥ ୧ ନମ୍ବର ୟୁନିଟରେ ଏକ ବଙ୍ଗଳାରେ ରହିଲେ । ସେ ଅଧିକାଂଶ ସମୟ ନିଜ ବଙ୍ଗଳାରେ ଅଫିସ କରୁଥିଲେ । କେବଳ ଦରକାର ପଡିଲେ ସରକାରୀ ଜିପ୍‌ରେ ଅଫିସ୍ ଯାଉଥିଲେ । ଏଠାରେ କହି ରଖୁଛି , ବାପା ଜଣେ ଏତେ ନିଷ୍ଠାପର କର୍ମଚାରୀ ଥିଲେ ଯେ ଦିନେ ହେଲେ ନିଜର ବ୍ୟକ୍ତିଗତ କାର୍ଯ୍ୟରେ ସରକାରୀ ଗାଡି ବ୍ୟବହାର କରି ନଥିଲେ । ମୋର ମନେ ଅଛି ଆମେ କେବେ ବାହାରକୁ ଗଲେ ରିକ୍ସାରେ ବୁଲି ଯାଉଥିଲୁଁ ।

କଟକରେ ବାପାଙ୍କ ସହକର୍ମୀମାନଙ୍କ ମଧ୍ୟରୁ ମୁଁ କେତେଜଣଙ୍କୁ ବ୍ୟକ୍ତିଗତ ଭାବେ ଜାଣିଥିଲି । ସେମାନଙ୍କ ମଧ୍ୟରେ ଥିଲେ- ପ୍ରାଣନାଥ ମହାନ୍ତି, ସୁଧୀର ଘୋଷ , ପରମାନନ୍ଦ ମହାନ୍ତି ପ୍ରଭୃତି ।

ବାପା ୧୯୬୦ ମସିହା ପର୍ଯ୍ୟନ୍ତ ଏହି ଚାକିରୀ କରି ଅବସର ନେଲେ । ଏହି କେତେ ବର୍ଷ ତାଙ୍କର ଚାକିରୀ ନିସ୍ତରଙ୍ଗ ନଥିଲା । କାରଣ, ଭାରତ ସ୍ୱାଧୀନ ହେଲା ପରେ ନିର୍ବାଚିତ ପ୍ରତିନିଧିମାନେ ଶାସନ କାର୍ଯ୍ୟ ନେଲେ । ମାତ୍ର ସେମାନଙ୍କର କେତେକ

ରୁଢ଼ୀବାଦୀ ଚେତନା ଥିଲା । ସେମାନେ ଧର୍ମକୁ ଶାସନଠାରୁ ଅଲଗା ବୋଲି ଭାବିଥିଲେ । ବାହାରେ ସେମାନେ ଜଗତର ନାଥ ଜଗନ୍ନାଥଙ୍କୁ ଓଡିଶା ସଂସ୍କୃତିର ମୂଳ ପିଣ୍ଡ ବୋଲି ଭାବୁଥିଲେ ହେଁ ଏହାକୁ ଶାସନରେ ପ୍ରୟୋଗ କରିବାକୁ ଚାହୁଁ ନଥିଲେ । କାରଣ ତାଙ୍କର ବିଶ୍ୱାସ ଥିଲା ଏହା ଫଳରେ ମୁସଲମାନ ମାନେ ବିଦ୍ରୋହ କରିବେ । ଥରେ ବାପା ଜଗନ୍ନାଥଙ୍କ ଉପରେ ଏକ ପ୍ରବନ୍ଧରେ ଜଗନ୍ନାଥଙ୍କୁ ଉତ୍କଳୀୟ ସଂସ୍କୃତିର ପ୍ରତୀକ ଭାବେ ଚିତ୍ରଣ କରିବାରୁ ତତ୍କାଳୀନ ରାଜ ନେତାଙ୍କ କ୍ରୋଧର ଶିକାର ହେଲେ । ଏହି ରାଜ ନେତାମାନେ ହେଉଛନ୍ତି ହରେକୃଷ୍ଣ ମହତାବ ଏବଂ ନବକୃଷ୍ଣ ଚୌଧୁରୀ । ମାତ୍ର ବାପା ଏହାକୁ ଭ୍ରୂକ୍ଷେପ କରି ନଥିଲେ ।

କହିବା ନିସ୍ପ୍ରୟୋଜନ ଯେ, ପରେ ଅବଶ୍ୟ ସେମାନେ ତାଙ୍କର ଭୁଲ ବୁଝି ପାରିଥିଲେ ଏବଂ ବାପାଙ୍କ ସହ ସେମାନଙ୍କ ସୌହାର୍ଦ୍ଦ୍ୟ ପୁନସ୍ଥାପିତ ହୋଇଥିଲା ।



## ସାଲିସ ହୀନ ସଂଗ୍ରାମ :

ଭାରତ ସ୍ୱାଧୀନ ପାଇଁ ମହାତ୍ମା ଗାନ୍ଧୀଙ୍କ ଅହିଂସା ଆନ୍ଦୋଳନର ଦାବାନଳ ସାରା ଦେଶରେ ଲେଲିହାନ ଶିଖାରେ ବିଚ୍ଛୁରିତ ହେଉଥିଲା ବେଳେ ମହା ଶକ୍ତିଧର ଓଡିଆ ଜାତି ଶୋଇ ପଡିଥାଏ । ତାର ସନ୍ତାନମାନଙ୍କୁ ଏହି ଗାଢ଼ ନିଦ୍ରାରୁ ଜାଗ୍ରତ କରାଇବା ପାଇଁ , ମହିମାନ୍ୱିତ ଓଡିଆ ସଂସ୍କୃତିର ପୁନରୁଦ୍ଧାର, ଏହାର ସୁଦୀର୍ଘ ପରଂପରାର ଉଜ୍ଜୀବନ ଓ ଓଡିଶାର ସାଂସ୍କୃତିକ କ୍ଷେତ୍ରରୁ ସକଳ ବିଜାତୀୟତାର ସମୂଳ ଉତ୍ପାଟନ ପାଇଁ ତଥା ଓଡିଶାର ସାମଗ୍ରିକ ବିକାଶର ନବଜାଗରଣ ପାଇଁ ବାପା ସାଲିସ ବିହୀନ ସଂଗ୍ରାମ ଘୋଷଣା କରିଥିଲେ ।

କେତେକ ବଙ୍ଗ ପ୍ରଭାବିତ ଆଧୁନିକ ଚେତନାର ଉତ୍କଳୀୟ ଯୁବକ ଉତ୍କଳ ସାହିତ୍ୟର ସଂପାଦକ ବିଶ୍ୱନାଥ କରଙ୍କ ପ୍ରଚ୍ଛନ୍ନ ଇଙ୍ଗିତରେ 'ପ୍ରାଚୀ' ଅନୁଷ୍ଠାନକୁ ସହି ପାରୁ ନଥିଲେ । ସେମାନେ ନାନା ପତ୍ର ପତ୍ରିକାରେ ଏହି ଅନୁଷ୍ଠାନକୁ ସମାଲୋଚନା କରୁଥିଲେ । ଥରେ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥାଏ । ମୁକୁର ପତ୍ରିକାର ସଂପାଦକ ବ୍ରଜସୁନ୍ଦର ଦାସ ଏଥିରେ ସଭାପତିତ୍ୱ କରୁ ଥାଆନ୍ତି । ଏହାର ପ୍ରାରମ୍ଭିକ ସଂଗୀତଟି ପ୍ରାଚୀ ସମିତିକୁ ଆକ୍ଷେପ କରି ରଚିତ ହୋଇଥାଏ । ଗୀତର ପଦଟିଏ ଏହିପରି-

'ତରୁଣ ଅରୁଣ ବଦନ
ଜୀର୍ଣ୍ଣ ମୁଖା ପିନ୍ଧି ଦିଶିବ କି ଶୋଭନ'

ଓଡିଶାର ଏତେ ସୁଦୀର୍ଘ ପରଂପରା ପ୍ରତି ଏ ତରୁଣ କବିର ଆକ୍ଷେପ ବାପାଙ୍କୁ ଅସହ୍ୟ ଥିଲା । ସେ ଏ ଭଳି ଗୀତ ବିରୋଧରେ ଦୃଢ଼ କଣ୍ଠରେ ପ୍ରତିବାଦ କରି ପୁରୋଧାଙ୍କ ଦୃଷ୍ଟି ଆକର୍ଷଣ କଲେ । ପୁରୋଧାଙ୍କ ଆଦେଶରେ ଏ ଗୀତ ବୋଲା ବନ୍ଦ ରହିଲା । ବାପା ପ୍ରାଚୀନ ପନ୍ଥୀ ନଥିଲେ । ନବ ଯୁଗକୁ ସ୍ୱାଗତ କରିବାରେ ସେ କେବେହେଲେ ଅବହେଳା ପ୍ରଦର୍ଶନ କରି ନହାନ୍ତି । ବରଂ ସଦା ବେଳେ ନବଯୁଗ ବୀଣା ବାଜୁ ବୋଲି ସେ କହି ଥାଆନ୍ତି । ମାତ୍ର ଉତ୍କଳର ପ୍ରାଚୀନ ସଂସ୍କୃତି ସୁରକ୍ଷା ନକରି ତାକୁ ବ୍ୟଙ୍ଗ ଓ ବିଦ୍ରୂପ କରିବାକୁ ସେ କେବେ ସହ୍ୟ କରୁ ନଥିଲେ ।

ଏଥିପାଇଁ ଅତ୍ୟାଧୁନିକ ଓ ବିଜାତୀୟ ଚେତନାର ଯୁବଦଳଙ୍କୁ ସେ ଆକ୍ଷେପ ଓ ସମାଲୋଚନା କରିବାରେ କେବେହେଲେ ପଶ୍ଚାଦ ପଦ ନଥିଲେ । ତାଙ୍କ ଏକଦା ବନ୍ଧୁ ଓ ସହପାଠୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ସହ ବାପାଙ୍କ ସାହିତ୍ୟାଦର୍ଶଗ୍ତ ବିରୋଧ ଥିଲା । କାରଣ କାଳିନ୍ଦୀ ବାବୁ ଓଡିଆ ସାହିତ୍ୟରେ ବିଜାତୀୟ ପରଂପରାର ନେତୃତ୍ୱ ନେଉଥିଲେ । ଏତଦ୍ ସତ୍ୱେ, ସେମାନଙ୍କ ବନ୍ଧୁତ୍ୱରେ କୌଣସି ଫାଟ ନଥିଲା । ବାପାଙ୍କ ସ୍ମୃତି ଚାରଣ କରି କାଳିନ୍ଦୀବାବୁ କହନ୍ତି - ମନେ ହୁଏ ଯେପରି ବିଚ୍ଛନ୍ଦଚରଣ ନାମର ତାତ୍ପର୍ଯ୍ୟକୁ ସେ ନିଜ ଜୀବନରେ ପ୍ରତିପଳିତ କରିଛନ୍ତି । ତାଙ୍କ ସାଧନାର ପରମ ଗୁରୁ ଉପେନ୍ଦ୍ର ଭଞ୍ଜଙ୍କ ଭଳି ବିଚ୍ଛନ୍ଦଚରଣ ଆମର ଚିର ନମସ୍ୟ, ଚିର ଶ୍ରଦ୍ଧେୟ ।

ବାପା ଓଳସିଂହରେ ଭାରପ୍ରାପ୍ତ ପ୍ରଧାନ ଶିକ୍ଷକ ଥିଲା କାଳରେ ସେ ସ୍କୁଲରେ ଥିବା କେତେକ ଅପରିଚ୍ଛନ୍ନ ରୀତିର ପରି ବର୍ତ୍ତନ ଚାହିଁ ଥିଲେ । ସେଠାରେ ସତ୍ୟବାଦୀ ବିଦ୍ୟାଳୟର କେତେକ ଆଦର୍ଶ ରୀତି ନୀତି ପ୍ରଚଳନ ପାଇଁ ସେ ଇଚ୍ଛା କରିଥିଲେ । ମାତ୍ର, ଛାତ୍ର ତଥା ଅଭିଭାବକଙ୍କ ଠାରୁ ଏ ଦିଗରେ ପୂର୍ଣ ସହଯୋଗ ନ ପାଇବାରୁ ସେ କ୍ଷୁର୍ଣ ହେଲେ । ଏହା ଫଳରେ ଓଳସିଂହ ତାଙ୍କ ପାଇଁ ଅପ୍ରୀତିକର ବୋଧ ହେଲା । ସେ ଜାଣିଲେ ତାଙ୍କ ପାଇଁ ଏକ ବିରାଟ ବିଶ୍ୱ ପ୍ରତୀକ୍ଷା କରିଛି । ଏହି କାମନା କରି ସେ ଉକ୍ତ ସ୍ଥାନ ପରିତ୍ୟାଗ କଲେ । ଆଦର୍ଶ ସହ ସାଲିସ କରିଥିଲେ ବାପା କେବଳ ଜଣେ ବିନୟୀ ଶିକ୍ଷକ ହୋଇ ରହି ଯାଇ ଥାଆନ୍ତେ।

ଲୋକ ସମ୍ପର୍କ ବିଭାଗରେ ଟ୍ରାନ୍ସଲେଟର ଥିଲା ବେଳେ ସରକାରଙ୍କ ମୁଖପତ୍ର 'ଉତ୍କଳ ପ୍ରସଙ୍ଗ ' ଏବଂ ଇଂରାଜୀରେ ପ୍ରକାଶିତ 'ଓଡିଶା ରିଭ୍ୟୁ'ର ସଂପାଦକ ଥିଲେ । ଏଥିରେ ସେ ମଧ୍ୟେ ମଧ୍ୟେ ପ୍ରାଚୀନ କବିଙ୍କ ସୁନ୍ଦର କବିତାକୁ ଇଂରାଜୀରେ ଅନୁବାଦ କରି ପ୍ରକାଶ କରୁଥିଲେ । ତାଙ୍କର ଲକ୍ଷ୍ୟ ଥିଲା ଇଂରାଜୀ ପତ୍ରିକା ମଧ୍ୟ ଦେଇ ଅଣ ଓଡିଆ ପାଠକକୁ ପ୍ରାଚୀନ ଓଡିଆ ସାହିତ୍ୟ ବିଷୟରେ କିଛି ହେଲେ ଅବଧାରଣା ଦେଇ ହେବ ।

ଥରେ ସେ 'ଉତ୍କଳ ପ୍ରସଙ୍ଗ' ରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ ଏକ ପ୍ରଣୟ ଗୀତିର ଓଡିଆ ଅନୁବାଦ ପ୍ରକାଶ କରି ଥିଲେ । ମାତ୍ର ଏହା କେତେଜଣ ଉପରିସ୍ଥ କର୍ମଚାରୀଙ୍କୁ ପସନ୍ଦ ଲାଗି ନଥିଲା । ସେମାନେଙ୍କ ମତରେ ଉପରିସ୍ଥ କର୍ମକର୍ତ୍ତାଙ୍କ ବିନା ଅନୁମତିରେ ଏଭଳି ଅନୁବାଦ ପ୍ରକାଶ କରିବା ଗର୍ହିତ କାର୍ଯ୍ୟ । ସାରା ଦପ୍ତରରେ ଏହା ଆଲୋଚିତ ହେଲା । ତତ୍କାଳୀନ ମୁଖ୍ୟ ମନ୍ତ୍ରୀ ମଧ୍ୟ ଏହାକୁ 'ପ୍ରକାଶ ଅନୁପଯୋଗୀ ବାଜେ କଥା' ବୋଲି ଏଥିରେ ପ୍ରତିକୂଳ ମନ୍ତବ୍ୟ ଦେଇଥିଲେ । ବାପାଙ୍କ ବଂଧୁମାନେ ଉପଦେଶ ଦେଲେ ଏପରି ପରିସ୍ଥିତିରେ ଉପରିସ୍ଥ କର୍ମକର୍ତ୍ତାଙ୍କ ପାଖରେ ମୁଣ୍ଡ ନୁଆଁଇ

ଦେବା ଉଚିତ । ମାତ୍ର ବାପା ଏଥିରେ ସହମତ ହୋଇ ନଥିଲେ । ବରଂ ସେ ଏହା ବିରୋଧରେ ମସୀ ଯୁଦ୍ଧ ଚଳାଇବା ପସନ୍ଦ କଲେ । ନିଜ ସିଦ୍ଧାନ୍ତର ଯଥାର୍ଥତା ପ୍ରତିପାଦନରେ ସେ ଅଟଳ ରହିଲେ । ଏପରି ଅବସ୍ଥାରେ ତାଙ୍କ ଚାକିରୀ ଚାଲି ଯିବା ଏକପ୍ରକାର ନିଶ୍ଚିତ ହୋଇ ଯାଇଥିଲା । ମାତ୍ର ତାଙ୍କ ଗୁଣମୁଗ୍ଧ ସହକର୍ମୀ ପ୍ରାଣନାଥ ମହାନ୍ତିଙ୍କ ହସ୍ତକ୍ଷେପ ଫଳରେ ଅବସ୍ଥା ଶାନ୍ତ ପଡିଲା । ପୂର୍ବରୁ କହିଛି ବାପା ସାରା ଜୀବନ ସାଲିସ୍‌କୁ ପସନ୍ଦ କରୁ ନଥିଲେ କିମ୍ବା କୌଣସି ବିଷୟରେ ଭୟ କରୁ ନଥିଲେ । ପରିଶେଷରେ ସତ୍ୟ ଓ ନିର୍ଭୀକତାର ଜୟ ହେଲା ।



## ପରମ୍ପରାର ଅତନ୍ଦ୍ର ପ୍ରହରୀ :

ଓଡିଶାର ଏକ ସଂସ୍କୃତି ସଂପନ୍ନ ଏବଂ ପରଂପରା ପ୍ରିୟ ଖୋର୍ଦ୍ଧା ମାଟିରେ ଜନ୍ମ ଲାଭ କରି ବାପା ବାଲ୍ୟ ଓ କୈଶୋର ସେହି ପରିବେଶରେ ଅତି ବାହିତ କରିଥିଲେ । ଖୋର୍ଦ୍ଧା ଭୂମି ବହୁଦିନ ଧରି ସ୍ୱାଧୀନ ରାଜ୍ୟ ଭାବେ ଥିବାରୁ ଏହା ଐତିହ୍ୟ ସଂପନ୍ନ । ମୁସଲମାନ ଏବଂ ଇଂରେଜ ଶାସନର ଅପସଂସ୍କୃତି ଏହାର ଜନ ଜୀବନକୁ ପ୍ରଭାବିତ କିମ୍ବା କଳୁଷିତ କରି ପାରି ନଥିଲା । ଏ ଦୃଷ୍ଟିରୁ ଖାଣ୍ଟି ଉତ୍କଳୀୟ ଭାଷା ଓ ସଂସ୍କୃତି ଏଠାରେ ଅକ୍ଷୁର୍ଣ୍ଣ ରହିଥିଲା ।

ଭାଷାତତ୍ତ୍ୱବିତ୍ ମାନେ ଖୋର୍ଦ୍ଧା ଅଞ୍ଚଳର ଭାଷାକୁ ଏକ 'ମାନକ ଓଡିଆ ଭାଷା'ଭାବେ ଗ୍ରହଣ କରି ଥାଆନ୍ତି । ବାପା ଏମିତି କେତେକ ଶବ୍ଦ ବ୍ୟବହାର କରୁଥିଲେ ଯାହା ଆଜିକାଲିର ସାହିତ୍ୟରେ ଅପ୍ରଚଳିତ ହୋଇ ଯାଇଛି । ମୁଁ ଏହିଭଳି କେତେକ ଶବ୍ଦ ଆମ ଗାଁ ମାନଙ୍କରେ ବ୍ୟବହୃତ ହେଉଥିବାର ଶୁଣିଛି । ଯେପରି- ତଳିପା, ମାଣ୍ଡି ମୁଚୁଳା, ତବତ ଭାତ, ପୋଖରୀ ପାଣି,ନିଚିପର, ନିତ୍ୟାନି, (ଇତ୍ୟାଦି) ।

ସେହିପରି ସେ ଅଞ୍ଚଳର ଅନ୍ତପୁରରେ ଏପରି କେତେକ କୌଳିକ କଳା ଜୀବିତ ଥିଲା ଯାହା କ୍ରମେ ଆମ ସମାଜରୁ ଉଭେଇ ଯାଉଛି । ସେ ସମୟରେ ପ୍ରତି ଝିଅମାନଙ୍କର ଗୋଟେ ଗୀତ ଖାତାଥିଲା । ଏଥିରେ ରଜ, କୁମାର ପୂର୍ଣ୍ଣମୀ ଗୀତ, ସହିତ କାନ୍ଦଣାଗୀତ ଏବଂ ନାନାବାୟା ଗୀତ ମାନ ରହୁଥିଲା । ବାପା ଏହି ଗୀତମାନଙ୍କର ଏକ ସଂକଳନ ପ୍ରସ୍ତୁତ କରିଥିଲେ । ମୋତେ ଗାଁ ମାନଙ୍କରେ ପ୍ରଚଳିତ ଲୋକ କଥା ଓ ଢ଼ଗ ଢ଼ମାଳି ସଂଗ୍ରହ କରିବା ପାଇଁ ଏକ ଖାତା ଦେଇଥିଲେ । ମାତ୍ର ମୋର ଗାଁର ରହଣି ସଂକ୍ଷିପ୍ତ ହୋଇ ଥିବାରୁ ମୁଁ ଏ କାର୍ଯ୍ୟ ସଂପୂର୍ଣ କରିପାରିଲି ନାହିଁ ।

ଆମର ପର୍ବ ପର୍ବାଣୀର ରୀତି ଓ ଧାରା ଏବଂ ପିଠା ପଣା ପ୍ରଭୃତି ପାରଂପରିକ ରୀତିରେ ହେବା ସେ ପସନ୍ଦ କରୁଥିଲେ । ଏପରିକି ରଜ ପର୍ବ ବେଳେ ମୋର ବା ଅନ୍ୟ କେହି ଝିଅ ପାଦରେ ଚଟି ନଥିଲେ ସେ ତାଗିଦ କରୁଥିଲେ । ଯେଉଁ ଋତୁରେ ବା ପର୍ବରେ ଯେଉଁ ପିଠା ପଣା ହେବା କଥା ତାହା ହେବା ଉଚିତ ବୋଲି ସେ କହୁଥିଲେ । ଯେପରି ଚିତୋଉ ଅମାବସ୍ୟାରେ ଚିତୋଉ ପିଠା, ରଜ ଓ ପ୍ରଥମାଷ୍ଟମୀରେ କିମ୍ବା ମାର୍ଗଶୀର ମାସ ଗୁରୁବାର ଦିନ ପାଳି ଅନୁସାରେ ପିଠା ହେଲେ ସେ ଭାରି ଖୁସି ହେଉଥିଲେ । ବାପା ପିଠା ସହ କେବେହେଲେ ତରକାରୀ ଭଲ ପାଉ ନଥିଲେ । ସେ

କହୁଥିଲେ ଓଡିଆ ଘରର ଖାଦ୍ୟ ହେଉଛି ପିଠା ସହ ମିଠା ଖାଇବା । ବିଭିନ୍ନ ଓଷା ବ୍ରତ ପ୍ରଚଳିତ ରୀତିରେ ହେବା ସେ ପସନ୍ଦ କରୁଥିଲେ । ଏଥିପାଇଁ ଆବଶ୍ୟକ ସରଞ୍ଜାମ ଆଣି ଦେବାରେ କେବେହେଲେ ଅବହେଳା କରୁ ନଥିଲେ ।

ବାପା ଚାହୁଁଥିଲେ ଆମ ଦେଶର ପୁରୁଷ ମାନଙ୍କ ଭଳି ନାରୀମାନେ ତାଙ୍କର ପରମ୍ପରାକୁ ନିଜର କରିବା ଉଚିତ । କାରଣ ଗୋଟିଏ ମାଆ ପରମ୍ପରା ବାଦୀ ହେଲେ ଗୋଟିଏ ପରିବାର ସେଥିରେ ପ୍ରଭାବିତ ହେବେ । ପୁଣି ଗୋଟିଏ ପରିବାରରେ ନାରୀ ମାନେହିଁ ମୁଖ୍ୟତଃ ପୁରୁଣା ଚଳଣିକୁ ଜାବୋଡି ଧରି ରଖିବାକୁ ପସନ୍ଦ କରନ୍ତି । ଏଇଥି ପାଇଁ ପରିବାରରେ ଶାଶୁ ବୋହୂ ଭିତରେ ପରମ୍ପରା ଗତ ସଂଘର୍ଷ ହୋଇଥାଏ । ବାପା କହୁଥିଲେ ଓଡିଆ ଘରର ବୋହୂ ଝିଅ ତାଙ୍କର ବେଶ ପୋଷାକ ସମେତ ତାଙ୍କ ଝୋଟି, ମୁରୁଜ, ଚିତା ପକାଇବା ଚନ୍ଦନ ଚିତା, ଲୁଗା କୁଞ୍ଚ , ଶଙ୍ଖ ହୁଳହୁଳି ପ୍ରଦାନପ୍ରଭୃତିରୁ ବାରି ହୋଇ ପଡିବେ ।ହାର ବ୍ୟତିକ୍ରମ କରୁ ଥିବା ମହିଳାକୁ ସେ ବିଜାତୀୟ ବୋଲି ଆକ୍ଷେପ କରୁଥିଲେ । ହିନ୍ଦୁ ନାରୀ ପକ୍ଷୀ ମାଂସ ବା ଅଣ୍ଡା ଖାଇବା ଉଚିତ ନୁହେଁ ବୋଲି ସେ କହୁଥିଲେ ।

ମୋ'ର ଏକ ଛୋଟ ଘଟଣା ମନେ ପଡେ । ବାପା ଏକ ବହିର ପ୍ରୁଫ ଦେଖୁଥିଲେ । ମୁଁ ବହିର ମୂଳ ହାତ ଲେଖା ଧରି ଡାକି ଦେଉଥିଲି । ହଠାତ୍ ତାଙ୍କର ନଜର ମୋ ହାତ ଉପରେ ପଡିଗଲା । ମୋ ହାତରେ ଚୁଡି ନାହିଁ କାହିଁକି ବୋଲି ପଚାରିଲେ, ଏବଂ ସଙ୍ଗେ ସଙ୍ଗେ ଚୁଡି ପିନ୍ଧି ଆସିବାକୁ କହିଲେ । ମୁଁ ତାହା ପାଳନ କଲି । ସେଖୁସି ହୋଇ କହିଲେ ଏବେ ଓଡିଆ ଘରର ଝିଅ ହେଲୁ । ସେ କହୁଥିଲେ ଆମେ ଆମ ପରମ୍ପରାକୁ ଜଳାଞ୍ଜଳି ଦେଲେ ଆମ ଚଳଣି, ଭାଷା ସାହିତ୍ୟ ଏପରିକି ଦିନେ ଆମ ଦେଶର ସ୍ୱାତନ୍ତ୍ର୍ୟ ଲୋପ ପାଇ ଯିବ । ଯେଉଁମାନେ ଆଧୁନିକତା ନାମରେ ପାଶ୍ଚାତ୍ୟ ରଙ୍ଗ ଢ଼ଙ୍ଗ ରୀତି ନୀତି ବେଶ ଭୂଷାକୁ ଅନୁକରଣ କରୁଛନ୍ତି ସେମାନେ ମନେ ମନେ ମେମ୍ ସାହେବ ପାଲଟି ଯାଉଛନ୍ତି । ବାପା ସେଭଳି ନାରୀଙ୍କୁ ଭାରି ନିମ୍ନ ଚକ୍ଷୁରେ ଦେଖୁଥିଲେ । ପାରମ୍ପରିକ ଉତ୍କଳୀୟ ଚଳଣିର ପୁନରୁତ୍ଥାନ ପାଇଁ ଏବଂ ଏହାର ଉପଯୁକ୍ତ ପ୍ରଶିକ୍ଷଣ ଓ ପ୍ରୋତ୍ସାହନ ପାଇଁ ସେ ଭଞ୍ଜ ଜୟନ୍ତୀ ସମାରୋହରେ ଉତ୍କଳୀୟ ପରମ୍ପରାର ଶଙ୍ଖ, ମହୁରୀ, ଯୋଡି ନାଗରା, ହୁଳହୁଳି, ଝୋଟି ମୁରୁଜ ପ୍ରତିଯୋଗିତା ସହ ଆମ ପାରମ୍ପରିକ ପାଲା, ଦାସକାଠିଆ ,କେନ୍ଦରାଗୀତ, ଗୋଟିପୁଅ ନାଚ ପ୍ରଭୃତି ପରିବେଷଣ କରି ଆମ ସହର ବାସୀଙ୍କୁ ତାଙ୍କ ପରମ୍ପରା ସ୍ମରଣ କରାଉଥିଲେ । ଥରେ ଜଣେ ପାଲା ଗାୟକ ତାଙ୍କ ପାରମ୍ପରିକ ପଗଡି ଆଣି ନଥିବାରୁ ବାପା ବିରକ୍ତ ହୋଇଥିଲେ ।

ଉତ୍କଳୀୟ ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି । ଓଡିଆ ପ୍ରଥ ସର୍ବ ମଙ୍ଗଳ ଜଗନ୍ନାଥ କହି ତାର କାର୍ଯ୍ୟ ଆରମ୍ଭ କରେ । ଆମର ଗ୍ରାମ ଦେବତୀ ପରି ଜଗନ୍ନାଥ ହେଉଛନ୍ତି ଆମର ଜାତୀୟ ଦେବତା । ଆମେ ସକଳ କାର୍ଯ୍ୟ ଆରମ୍ଭରେ ଆମର ଈଶାଣ, ଇଷ୍ଟ, ଏବଂ ଗ୍ରାମ ଦେବତୀଙ୍କୁ ନିମନ୍ତ୍ରଣ କରୁଥିଲା ପରି ଜଗନ୍ନାଥଙ୍କୁ ନିମନ୍ତ୍ରଣ କରିବା ଉଚିତ । ସେ ଭଞ୍ଜ ଜୟନ୍ତୀର ପ୍ରଥମେ ଜଗନ୍ନାଥଙ୍କୁ ଆମନ୍ତ୍ରଣ କରୁଥିଲେ ।



## ପରିହାସପ୍ରିୟତା :

ଦୂରରୁ ଦେଖିଲେ ଜଣେ କେହି ଭାବିବ ବାପା ଜଣେ ଗମ୍ଭୀର ପ୍ରକୃତିର ରାଗୀ ଲୋକ ବୋଲି । ତାଙ୍କର ଆୟତ ମୁଖ ମଣ୍ଡଳରେ ମୋଟା ଗୋଲ ଚସମା ତାଙ୍କୁ ଗମ୍ଭୀର କରି ତୋଳେ । କାର୍ଯ୍ୟଧାରାରେ ସାମାନ୍ୟ ବ୍ୟତିକ୍ରମ ହେଲେ ବାପା ଭାରି ବିରକ୍ତ ହୋଇ ଉଠନ୍ତି । ଏଥିରୁ ଜଣେ କେହି ମନେ କରିବ ସେ ଜଣେ ନିଷ୍ଠୁର ଓ ବଦ୍ ରାଗୀ ଲୋକ । ମାତ୍ର ଏହି ବିରାଟ ବ୍ୟକ୍ତିର ଅନ୍ତରରେ ଯେ ସ୍ନେହ ଦୟା ପରିହାସପ୍ରିୟତାର ଏକ ଫଲ୍‌ଗୁ ପ୍ରବାହିତ ହେଉଥିଲା ଏହା ତାଙ୍କୁ ଖୁବ୍ ନିକଟରୁ ଅନେକ ଦିନ ଯାଏ ଦେଖି ନଥିବା ଲୋକ କେବେ ଅନୁଭବ କରି ପାରିବ ନାହିଁ ।

ଏହି ପରିହାସ ପ୍ରବଣତା ତାଙ୍କର ବାଲ୍ୟ ସାଥୀ । ପିଲା ଦିନେ ଭାଇ ଭଉଣୀ ମାନଙ୍କ ସହ ମଧ୍ୟ ଏଭଳି କୌତୁକ କାର୍ଯ୍ୟ କରି ଆନନ୍ଦ ଲାଭ କରୁଥିଲେ । ସାନ ଭାଇ ଭଉଣୀଙ୍କୁ ନାନା ପ୍ରକାରେ ହଇରାଣ ହରକତ କରାଇ ଆନନ୍ଦ ଲାଭ କରୁଥିଲେ । ସେ ଭାରି ମିଠା ଓ ପିଠା ପ୍ରିୟ । ତାଙ୍କ ମାଆ ପିଠା କରି ଶିକାରେ ରଖି ଥାଆନ୍ତି । ବାପାତ ଛୋଟା , ଏଣୁ ତାଙ୍କୁ ପିଠା ଜଗିବା ଦାୟିତ୍ୱ ଦେଇ ସେ ନିଶ୍ଚିନ୍ତରେ ବାହାରକୁ ଯାଆନ୍ତି । ମାତ୍ର ବାପା ଅନ୍ୟ ଭାଇ ଭଉଣୀଙ୍କୁ ଡାକି ତାଙ୍କ ସାହାଯ୍ୟରେ ଶିକାରୁ ପିଠା ଆଣି ଖାଆନ୍ତି ଓ ଖୁଆନ୍ତି । ପଚାରିଲେ କେହି ମାନନ୍ତି ନାହିଁ ସିନା ତାଙ୍କ ମାଆ ଅସଲ ଚୋରକୁ ଚିହ୍ନି ପାରନ୍ତି । ବୁଢ଼ୀ ଅଭ୍ୟାସ ଗତ ଢ଼ଗ ମେଲନ୍ତି-

ବସି ବସି କରୁ କାର୍ଯ୍ୟ । ପଦ ଚାଳିବାକୁ ନ ହେଉ ଭାର୍ଯ୍ୟ ।

ସମୟ ସମୟରେ ସାନ ଭାଇ ଭଉଣୀଙ୍କୁ ଡାକି ନେଇ ଜନ୍ଦା ପିମ୍ପୁଡି ମନ୍ଦାରେ ଠିଆ କରାଇ ମଜା ଦେଖୁଥିଲେ ।

ଛାତ୍ର ଜୀବନରେ ମଧ୍ୟ ବାପା ସହପାଠୀମାନଙ୍କ ସହ ଏଭଳି ହାସ ପରିହାସ ହେଉଥିଲେ । ତତ୍କାଳୀନ ସାହିତ୍ୟ ଆକାଶରେ ପ୍ରକାଶ ପାଇଥିବା ସବୁଜ ଯୁଗର କବି ଯଥା- ଅନ୍ନଦା ଶଙ୍କର ରାୟ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ବୈକୁଣ୍ଠ ନାଥ ପଟ୍ଟନାୟକ, ଶରତ ଚନ୍ଦ୍ର ମୁଖାର୍ଜୀ, ହରିହର ମହାପାତ୍ର, ହରିଶ ଚନ୍ଦ୍ର ବଡାଳ ପ୍ରଭୃତି ଥିଲେ ବାପାଙ୍କ ସହଧ୍ୟାୟୀ ଓ ବନ୍ଧୁ । ମାତ୍ର ଏମାନେ ରବୀନ୍ଦ୍ରନାଥଙ୍କ କାବ୍ୟ ଚେତନା ଦ୍ୱାରା ବିଶେଷ ଭାବେ ପ୍ରଭାବିତ ଥିଲେ । ଆଦର୍ଶ ଦୃଷ୍ଟିରୁ ବାପା ସେମାନଙ୍କୁ ବିରୋଧ କରୁଥିଲେ ।

ଏତଦ୍ ସତ୍ତ୍ୱେ ସେମାନଙ୍କ ମଧ୍ୟରେ ଥିଲା ଅଦ୍ଭୁତ ସୌହାର୍ଦ୍ଦ୍ୟ । ଏଠାରେ କହିବା ଉଚିତ ମନେ ହେବ ବଙ୍ଗୀୟ କାବ୍ୟ ଚେତନା ଓ ଉଗ୍ର ଆଧୁନିକତା ଧାରାରେ ପ୍ରଭାବିତ ଏହି କବିମାନଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀର ବୋଲି ବାପା ବିଶ୍ୱାସ କରୁଥିଲେ । ସେମାନେ କେହି ଜଣେ ସବୁଜ ନାୟିକାର ପ୍ରଣୟାସକ୍ତ ହୋଇ ଏପରି ବିଜାତୀୟ ଶୈଳୀରେ କବିତା ରଚନା କରୁଥିଲେ ବୋଲି ତାଙ୍କ ହୃଦ୍‌ବୋଧ ହୋଇ ଥିଲା ।

ଥରେ ଏହି କବିମାନଙ୍କୁ ଲକ୍ଷ୍ୟ କରି ସେ ' ସବୁଜ ପରୀ' ବୋଲି ଗୋଟିଏ ବ୍ୟଙ୍ଗ କବିତା ଲେଖି ଉପହାର ଦେଇଥିଲେ । ଉପହାର ନୁହେଁ ଏକ ପ୍ରକାର ଆକ୍ଷେପ- କବିତାଟି ଏକ କାଗଜରେ ସୁନ୍ଦର ଅକ୍ଷରରେ ଲେଖା ଯାଇ ଏକ ଶର ଫଳକରେ ଲଗାଇ ସେହି ତରୁଣ କବିଙ୍କ ହଷ୍ଟେଲର କୋଠରୀ ସାମ୍ନାକୁ ବାପା ଶର ନିକ୍ଷେପ କରି ଥିଲେ । ବାପା ଯୁବକ ବୟସରେ ସେମାନଙ୍କୁ ' ସବୁଜ ' ଆଖ୍ୟା ଦେଇଥିଲେ । ଏବିଷୟରେ ତାଙ୍କ ସହଧ୍ୟାୟୀ ଶରତ ଚନ୍ଦ୍ର ମୁଖାର୍ଜୀ କହନ୍ତି,-

'ବିଚ୍ଛନ୍ଦ ଚରଣ ତାଙ୍କ ବ୍ୟଙ୍ଗ କବିତା ' ସବୁଜ ପରୀ'ରେ ପ୍ରଥମ ଥର ପାଇଁ ଆମ୍ଭମାନଙ୍କୁ ଯେଉଁ 'ସବୁଜ' ଆଖ୍ୟା ଦେଇଥିଲେ ଆମ୍ଭେ ମାନେ ଅଜ୍ଞାତ ସାରରେ ପରେ ସେହି ନାମଟିକୁ ବରଣ କରିନେଇଥିଲୁଁ । କାରଣ ସେହି ଘଟଣା ଆଗରୁ ଆମ୍ଭେମାନେ ନିଜ ପ୍ରତି ବା ନବ୍ୟ ସାହିତ୍ୟ ପ୍ରତି, ଏପରିକି ନିଜର ଲେଖାରେ ସବୁଜ ନାମ ବ୍ୟବହାର କରିଥିଲୁ ବୋଲି ମୋର ସ୍ମରଣ ନାହିଁ ।

'ଗୋପ ପୁରର ଲୋକେ ରାଧାଙ୍କୁ କଳଙ୍କିନୀ କହିଲେ । ପରେ ରାଧା ସେହି ନାମରେ ନାମିତା ହୋଇ ଜୀବନର ସାର୍ଥକତା ଲାଭ କରିଥିଲେ । ତେଣୁ ଆମ ଦଳଟିର ସବୁଜ ନାମରେ ନାମକରଣ ବିଚ୍ଛନ୍ଦ ଚରଣ ଯେଉଁ ଉଦ୍ଦେଶ୍ୟରେ କରି ଥାଆନ୍ତୁ ନା କାହିଁକି ସେଇ ନାମ ଧାରଣ କରି ଆମ୍ଭେମାନେ ସାର୍ଥକ ହୋଇଛୁଁ ।'

କହିବା ବାହୁଲ୍ୟ ବାପା ଥଟ୍ଟାରେ ଯେଉଁ 'ସବୁଜ' ଉପାଧି ତାଙ୍କୁ ଦେଇଥିଲେ ସେହି ଶବ୍ଦ ସେମାନଙ୍କ ଜୀବନ ଧାରାର ଅଙ୍ଗ ପାଲଟି ଯାଇ ଥିଲା । ଏସବୁ ମଜ୍ଜାଳିଆ କଥା କହୁଥିଲା ବେଳେ ବାପାଙ୍କ ଆଖି ଆନନ୍ଦ ଉଲ୍ଲାସରେ ଚମକି ଉଠୁଥିଲା । ମୁଁ ଜାଣୁଥିଲି ବାପା କେବଳ ଏକ ବାଗିଆ ବା ଜିଦ୍‌ଖୋର ନଥିଲେ ଭାରି ପରିହାସ ପ୍ରିୟ ମଧ୍ୟ ଥିଲେ ।

ଏହି ପରି ଆଉ ଏକ ମଜ୍ଜା ଘଟଣା ଏଠାରେ ଅବତାରଣା କରୁଛି । ଥରେ ଆମ ଘରେ ଆସି ପହଞ୍ଚିଲେ କବି, ଲେଖିକା ଓ ସମାଜ ସେବିକା ଶ୍ରୀମତୀ ସରଳା ଦେବୀ । ସେ ବାପାଙ୍କ ସହ ଆଲୋଚନା କରି ଫେରିଗଲେ । ମୁଁ ଆସି ସେ ଜଣେ ନାରୀ ହୋଇ କେମିତି ବଡ ପାଟିରେ କଥା କହନ୍ତି ବୋଲି ବାପାଙ୍କୁ ପଚାରିଲି । ବାପା ତାଙ୍କ ସହ କେମିତି ମଜ୍ଜା କରନ୍ତି ମୋତେ କହିଲେ ।

ଥରେ ସରଳା ଦେବୀଙ୍କୁ ଆକ୍ଷେପ କରି ସେ ଏକ ବେନାମୀ କବିତା ପଠାଇ ଥିଲେ । କବିତାଟି କେବଳ ସରଳା ଦେବୀଙ୍କୁ ପଠେଇ ନଥିଲେ ଆହୁରି କେଇ ଜଣଙ୍କ ପାଖକୁ ପଠେଇ ଦେଇଥିଲେ । ଏପରିକି ନିଜ ପାଖକୁ ମଧ୍ୟ ଗୋଟିଏ ପ୍ରତିଲିପି ପଠେଇ ଥିଲେ । ସରଳା ଦେବୀ ଏ କାର୍ଯ୍ୟ ବାପାଙ୍କର ବୋଲି ଆକ୍ଷେପ କରିବାରୁ ବାପା କିଛି ନଜାଣିଲା ପରି- 'ଆରେ ହଁ ତ ମୋ ପାଖକୁ ଏମିତି ଏକ କବିତା ଆସିଛି '- କହି ତାଙ୍କ ଟେବୁଲ ଡ୍ର ରୁ ଏହି କବିତାର ଏକ ନକଲ ସରଳା ଦେବୀଙ୍କୁ ଦେଖେଇଲେ । ସରଳା ଦେବୀ କହିଲେ ତୁମ ଛଡା ଏହା ଆଉ କାହାର କାମ ନୁହେଁ । ତୁମେ କେଳା ହେଇ ସାପ ଖେଳେଇ ଜାଣ ଆଉ ଗୁଣିଆ ହେଇ ମନ୍ତ୍ରବି ଝାଡି ଜାଣ ।

ବାପାଙ୍କ ସହ ବିଶ୍ୱନାଥ କରଙ୍କ ଆଦର୍ଶଗତ ମନୋମାଳିନ୍ୟ ଥିଲା ।ତାଙ୍କ ଦୃଷ୍ଟିରେ ଏହି ନବ୍ୟ ବଙ୍ଗାନୁସାରୀ କର ମହାଶୟ ଥିଲେ ଦ୍ୱିତୀୟ କଳା ପାହାଡ । ଏଣୁ ତାଙ୍କ ବିଷୟ ଉତ୍ଥାପିତ ହେଲେ ବାପା ଆକ୍ଷେପ କରି ଗାଉଥିଲେ-

'ଭଲ କରି ଦେଖିନିଅ ଭ୍ରାତାଙ୍କ ବଦନ
ଉପକାରୀ ପୁରୁଷ ଗୋ ଅଟନ୍ତି ଏଜନ ।'

ଏହି ଘଟଣା ଉପରେ ନିଆଁଖୁଣ୍ଟା ପତ୍ରିକା 'ବିଚ୍ଛନ୍ଦଙ୍କ ଆଟମ୍ ବମ୍' ଶୀର୍ଷକ ଏକ ବ୍ୟଙ୍ଗାତ୍ମକ ରଚନା ପ୍ରକାଶ କରିଥିଲେ । ସେଭଳି ସାହସିକ ବ୍ୟକ୍ତି ହୋଇ ନଥିଲେ ଭରପୂର ସଭାରେ ସେ ବଙ୍ଗୀୟ ସମାଲୋଚକଙ୍କୁ ଏତେ ରୁକ୍ଷ ଭାବେ ସମାଲୋଚନା କରି ପାରି ନଥାଆନ୍ତେ !

ସେତେବେଳେ ଅନ୍ୟାନ୍ୟ ପତ୍ରିକା ମଧ୍ୟ ତାଙ୍କୁ ସମାଲୋଚନା କରିବାକୁ ପାଶ୍ଚାଦ ପଦ ହେଉ ନଥିଲେ । ବାପା ସେହି ସମାଲୋଚନା ଓ ବ୍ୟଙ୍ଗ୍ୟକୁ ଶିଷ୍ୟମାନଙ୍କ ଗହଣରେ ଆଲୋଚନା କରି ଆମୋଦିତ ହେଉଥିଲେ । ସେତେବେଳେ ' ବାଇଡଙ୍କ' ନାମକ ଏକ ବ୍ୟଙ୍ଗ ପତ୍ରିକାରେ ତାଙ୍କ ଗୋଷ୍ଠୀକୁ ' ଖଞ୍ଜ ଶାର୍ଦ୍ଦୁଳର ରଜତ ଲାଙ୍ଗୁଳ' ବୋଲି ଆକ୍ଷେପ କରା ଯାଇ ଥିଲା । ସାପ୍ତାହିକ ମାତୃଭୂମି ପତ୍ରିକାରେ ମୋଟା ବୁଦ୍ଧିଆର ସୂକ୍ଷ୍ମ ବିଚାର ଶୀର୍ଷକରେ -'ବିଚ୍ଛନ୍ଦ ଗୋଟି ପୁଅ ନଚାଉଛନ୍ତି ' ବୋଲି ରଜତବାବୁ ଓ ହୃଦାନନ୍ଦବାବୁଙ୍କୁ ଆକ୍ଷେପ କରା ଯାଇ ଥିଲା । ସେଥିରେ ଲେଖା ଯାଇଥିଲା- ହୃଦାନନ୍ଦ ବତୀ ଓ ରଜତ ସୁନ୍ଦରୀ ' ଏବଂ ' ଲାବଣ୍ୟବତୀ ରାୟ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ କର' ପ୍ରଭୃତି । ମାତ୍ର ଏ ସମସ୍ତ ସମାଲୋଚନାକୁ ବାପା ବା ତାଙ୍କ ଗୋଷ୍ଠୀ ତିଳେ ହେଲେ ଭ୍ରୂକ୍ଷେପ କରୁ ନଥିଲେ । ବରଂ ଆମ ଦେଶର ପତ୍ର ପତ୍ରିକା ତାଙ୍କ ଆଡକୁ ମୁହାଁଇଲେଣି ଜାଣି ସେ ଖୁସି ହେଉଥିଲେ ।

ଯିଏ ପରିହାସ କରି ଜାଣେ ତାର ପରିହାସ ସହିବାର କ୍ଷମତା ଥିବା ଦରକାର । ବାପା ଅନ୍ୟକୁ ଯେପରି ଥଟ୍ଟା ପରିହାସ କରୁଥିଲେ ଅନ୍ୟର ପରିହାସକୁ ସେହି ଭଳି ହସି ହସି ଗ୍ରହଣ କରି ନେଉଥିଲେ । ତାଙ୍କୁ ଜଣେ ଆକ୍ଷେପ କରୁ ପଛେ ତାଙ୍କ ଜାତିକୁ ସାମାନ୍ୟ ଆକ୍ଷେପ କଲେ ବାପା ଅଗ୍ନିଶର୍ମା ହୋଇ ଉଠୁଥିଲେ । ଟିକିଏ କଥାରେ ତାଙ୍କର ବଙ୍କୁଲି ବାଡି କଚାଡି ସେ ଭୟଙ୍କର ଗର୍ଜନ କରି ଉଠୁଥିଲେ ।



ବାପାଙ୍କ ଜାତୀୟତା ବାଦର ଅନ୍ୟ ତମ ଦିଗ ଥିଲା ଅନୁବାଦ ସାହିତ୍ୟ । ତାଙ୍କର ଅଗାଧ ଇଂରାଜୀ ଜ୍ଞାନ ତାଙ୍କୁ ଜଣେ ଅସାଧାରଣ ଅନୁବାଦକ ରୂପେ ପ୍ରତିଷ୍ଠିତ କରି ପାରିଛି । ସେ 'ପ୍ରାଚୀ' ର ସଂପାଦକ ଥିଲା ବେଳେ ଉତ୍କଳୀୟ କବି ଉପେନ୍ଦ୍ର ଭଞ୍ଜ ,ଦୀନକୃଷ୍ଣ ଦାସ , ଅଭିମନ୍ୟୁ ସାମନ୍ତ ସିଂହାର ପ୍ରଭୃତି କବିଙ୍କ ଉତ୍କୃଷ୍ଟ ଛାନ୍ଦମାନ ଇଂରାଜୀରେ ଅନୁବାଦ କରି ପ୍ରକାଶ କରିଥିଲେ । ଏହା କେବଳ ଭାରତରେ ନୁହେଁ ବିଦେଶରେ ମଧ୍ୟ ଚହଳ ପକାଇ ଦେଇଥିଲା । ତାଙ୍କ ଇଂରାଜୀ ଅନୁବାଦରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କୁ ଏତେଦୂର ବିମୋହିତ କରିଥିଲା ଯେ ଥରେ ସେ ନିଜେ ଆସି ବାପାଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ସେଦିନ ବାପାଙ୍କ ଜୀବନର ଏକ ସ୍ମରଣୀୟ ଘଟଣା ଥିଲା । ମିଃ ଦାସ ବାପାଙ୍କ ଗଣେଶଘାଟ ସ୍ଥିତ ବାସ ଭବନରେ ନିଜ ଘୋଡା ଗାଡିରେ ଆସି ପହଞ୍ଚିଲେ । ତାଙ୍କୁ ଚିହ୍ନି ନଥିବା ଜାଣି ନଥିବା ମାୟାଧର ବାଟ କଢ଼େଇ ବାପାଙ୍କ ପାଖକୁ ନେଇ ଆସିଲେ । ଅତ୍ୟନ୍ତ କ୍ଷୁର୍ଣ ମନା ମିଃ ଦାସ ତାଙ୍କୁ ଅନୁସରଣ କଲେ ସିନା ବାପାଙ୍କ ଅହମିକା ବିଷୟ ଚିନ୍ତା କରୁଥିଲେ । 'ଏତେ ଅହଂକାରୀ ! ମିଃ ଦାସଙ୍କୁ ସ୍ୱାଗତ କରିବାକୁ ଆସିଲା ନାହିଁ !'

ବାପା ତାଙ୍କୁ ଦେଖି ଚୌକି ଛାଡି ଦଣ୍ଡାୟମାନ ହେଲେ । ମଧୁବାବୁଙ୍କ ରାଗ ପଞ୍ଚମକୁ ଉଠିଗଲା । ସେ ହଠାତ୍ କହିଲେ- ମିଃ ଦାସ କାହା ନିକଟକୁ ଆସେ ନାହିଁ । ଆଜି ତୁମ ନିକଟକୁ ଆସିଛି । ତୁମର ତ ଭଦ୍ରାମୀ ହେଲା ନାହିଁ ଗାଡି ପାଖକୁ ଆସିବାକୁ । ଅନ୍ତତଃ ଦୁଆର ମୁହଁ ପାଖକୁ ଆସି ପାଛୋଟି ନେଇ ପାରି ଥାଆନ୍ତ ! ବାପା ତାଙ୍କ ଖଞ୍ଜତ୍ୱ ବିଷୟ କହି କ୍ଷମା ମାଗିନେଲେ । ମଧୁବାବୁ ଏତିକିରେ ନରମି ଗଲେ ।

ସେ ନରମ ଗଳାରେ କହିଲେ- ମିଃ ଦାସ ଆଜି ଆସିଛି ତୁମ ଉଜ୍ଜ୍ୱଳ ପ୍ରତିଭାକୁ ସମ୍ମାନ ଦେବା ପାଇଁ । ଚିଠିଟିଏ ଲେଖି ତୁମକୁ ବଧେଇ ଜଣେଇ ପାରି ଥାଆନ୍ତି। ହେଲେ ତୁମ ଭଳି ପ୍ରତିଭାଧର ବ୍ୟକ୍ତି ପ୍ରତି ତାହା ଉଚିତ ବ୍ୟବହାର ହୋଇ ନଥାଆନ୍ତା । ମୋର ଏକ ଧାରଣା ଥିଲା ଓଡିଶାରେ ମୋ ଭଳି କେହି ଇଂରାଜୀ ଲେଖି ପାରିବେ ନାହିଁ । କିନ୍ତୁ ମୁଁ ତୁମ ଲେଖାରେ ଆଶ୍ଚର୍ଯ୍ୟ ହୋଇଛି । ଏ ଦିଗରେ ତୁମକୁ ମୋର ଉପଯୁକ୍ତ ଉତ୍ତରାଧିକାରୀ ବୋଲି ମଣୁଛି ।

ଫେରିଗଲା ବେଳେ ମାୟାଧରଙ୍କୁ କହିଗଲେ- ତୋ ବାବୁର ଗୋଡ ଦିଇଟା ସଳଖ ଥିଲେ ମୁଁ ତାଙ୍କୁ ବିଲାତ ନେଇ ଥାଆନ୍ତି । ସେତେବେଳଙ୍କୁ ମିଃ ଦାସ ଏକ ପ୍ରକାର ଦେବାଳିଆ ହୋଇ ଯାଇଥିଲେ । ମାତ୍ର ତାଙ୍କ ହୃଦୟରେ ପରୋପକାରର ବାସନା ପ୍ରଶମିତ ହୋଇ ନଥିଲା । ଯିଏ ଏ ଦେଶର ସ୍ୱାଭିମାନ ପାଇଁ ଅହରହ ଚିନ୍ତା କରୁଥିଲା ସେ ଜଣେ ସମଧର୍ମୀ ଯୋଦ୍ଧା ପାଇଲେ ଖୁସି ହୋଇ ନଥାନ୍ତା କି ? ମାତ୍ର ସେ ଦେଖିଲେ କ'ଣ ? ଯୋଦ୍ଧାଟି ପାଦରେ ଖଞ୍ଜ ହେଲେ କ'ଣ ହେବ । ତାର ମନ ଭିତରେ ଭରି ରହିଛି ଶତ ସିଂହର ସ୍ୱାଭିମାନ ଏବଂ ଶକ୍ତି । ଏହା ଯେ ଦିନେ ଉପଯୁକ୍ତ ଭାବେ ବିନିଯୋଗ ହେବ ସେଦିନ ମିଃ ଦାସ ମର୍ମେ ମର୍ମେ ଅନୁଭବ କରିଥିଲେ ଓ ଗର୍ବିତ ହୋଇଥିବେ । ଏଣୁ ବାପାଙ୍କ ଚିକିତ୍ସା କରି ତାଙ୍କୁ ସୁସ୍ଥ କରିବାକୁ ସେ ଇଚ୍ଛା କରିଥିଲେ । ସେ ଦିନ ମିଃ ଦାସ ନିଶ୍ଚୟ ଭାବି ଥିବେ, ଏ ଦେଶରେ ସୁସ୍ଥ ପାଦ ଧାରୀ ଶତ ଶହସ୍ର ଦୁର୍ବଳମନା ଲୋକ ଅପେକ୍ଷା ଜଣେ ଶକ୍ତିଶାଳୀ ଖଞ୍ଜ ହିଁ ଯଥେଷ୍ଟ ।

ମୋର ବଡବାପା ପୁଅ ଭାଇ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ ସ୍ମୃତି ଚାରଣ କରି କହନ୍ତି ତାଙ୍କ ଅନୁବାଦ ଲେଖା ଏତେ ଉଚ୍ଚକୋଟିର ହେଉଥିଲା ଯେ କେବଳ ମଧୁବାବୁ ବା ନୀଳକଣ୍ଠ ଦାସ ନୁହନ୍ତି ବହୁ ବିଜ୍ଞ ଲୋକ ତାଙ୍କୁ ଦେଖା କରିବାକୁ ଛୁଟି ଆସନ୍ତି । ଶ୍ୟାମା ପ୍ରସାଦ ମୁଖାର୍ଜୀ ପ୍ରଭୃତିଙ୍କୁ ସେ ସ୍ୱ ଚକ୍ଷୁରେ ଆସିଥିବାର ଦେଖିଛନ୍ତି । ଇଂରାଜୀ ଭାଷାରେ ଅଗାଧ ପାଣ୍ଡିତ୍ୟ ଯୋଗୁଁ ତାଙ୍କୁ ବହୁ ଇଂରେଜ ସାହେବ ମଧ୍ୟ ଜାଣି ଥାଆନ୍ତି ଏବଂ ଭଲପାଉ ଥାନ୍ତି ।

ମୋର ଦାଦା ଚାକିରୀ କାଳ ଭିତରେ ଦୁଇ ଥର ନଲମ୍ବିତ ହୋଇ ଥିଲେ । ପ୍ରଥମ ଥର ସେ ବାପାଙ୍କୁ ଅବଗତ କରାଇଲେ । ବାପା ଦାଦାଙ୍କ ପାଇଁ ଏକ ଦରଖାସ୍ତ ଲେଖି ଦେଇଥିଲେ । କଥିତ ଅଛି,ତାଙ୍କ ଦରଖାସ୍ତର ଇଂରାଜୀରେ ସାହେବ ଏପରି ମୁଗ୍ଧ ହୋଇ ଯାଇ ଥିଲେ ଯେ ଦାଦାଙ୍କୁ ତତ୍‌କ୍ଷଣାତ୍ ଚାକିରୀରେ ପୁନ ନିଯୁକ୍ତି କରି ଥିଲେ ।

ପୂର୍ବରୁ କହିଛି, 'ପ୍ରାଚୀ ସମିତି'ରେ କାର୍ଯ୍ୟ କରୁଥିଲା ବେଳେ ଗୋପାଳ ଚନ୍ଦ୍ର ପ୍ରହରାଜ ସହ ବାପାଙ୍କ ସୌହାର୍ଦ୍ଦ୍ୟ ବଢ଼ି ଯାଇ ଥିଲା । ସେ ବାପାଙ୍କୁ ପୁଅ ଭଳି ଭଲ ପାଉଥିଲେ । ବାପା ମଧ୍ୟ ତାଙ୍କୁ ପିତାର ସମ୍ମାନ ଦେଉଥିଲେ । ଗୋପାଳ ବାବୁ କହୁଥିଲେ- ବିଚ୍ଛନ୍ଦ ଚରଣଙ୍କ ଓଡିଆ ଓ ଇଂରାଜୀ ଭାଷାରେ ଏତେ ଦଖଲ ଅଛି ଯେ ତାହା ଦେଖି ମୋର ଈର୍ଷା ହୁଏ ।

ପ୍ରାଚୀ ସମିତିରେ ଭାରପ୍ରାପ୍ତ ଥିଲା ବେଳେ ବାପା କଟକସ୍ଥ 'ଉତ୍କଳ ସାହିତ୍ୟ ସମାଜ'ର ଜଣେ ସଦସ୍ୟ ଥିଲେ । ସେତେବେଳେ ଆର୍ତ୍ତ ବଲ୍ଲଭ ମହାନ୍ତି, ଲକ୍ଷ୍ମୀ କାନ୍ତ ଚୌଧୁରୀ ଏବଂ ଶଶିଭୂଷଣ ରାୟ ଏହି ସମିତିର ବରିଷ୍ଠ ସଦସ୍ୟ ଭାବେ ପରି ଗଣିତ

ହେଉଥିଲେ । ୧୯୩୪ ମସିହା ବେଳକୁ ବାପା ଏହି ସମିତିର କାର୍ଯ୍ୟ ନିର୍ବାହୀ କମିଟିର ଜଣେ ସଦସ୍ୟ ହୋଇଥିଲେ । ୧୯୩୭ ମସିହାରେ କବି ଭୂପତି ଭଞ୍ଜ ବିରଚିତ ' ଗଣେଶ ବିଭୂତି' ପୁସ୍ତକ ଉପରେ ତାତ୍ତ୍ୱିକ ଆଲୋଚନା କରି ସେ ବହୁ ବିଦ୍ୱାନଙ୍କ ଦୃଷ୍ଟି ଆକର୍ଷଣ କରିବା ସହ ସମ୍ମାନନୀୟ 'ତାଳଚେର ପୁରସ୍କାର' ଲାଭ କରିଥିଲେ ।

ପୂର୍ବରୁ ସେ ଉକ୍ତ ସମିତିକୁ ବାରମ୍ବାର ସହକାରୀ ସଂପାଦକ ଭାବେ ନିର୍ବାଚିତ ହୋଇଥିଲେ । ପୁଣି ୧୯୩୯ ମସିହାରେ ଉକ୍ତ ପଦବୀକୁ ପୁନଃ ନିର୍ବାଚିତ ହେଲେ । ପୂର୍ବରୁ ଉକ୍ତ ସମାଜର ବିଭିନ୍ନ ସଭାରେ ବାପାଙ୍କ ରଚିତ ଗୀତ ମାନ ପ୍ରାରମ୍ଭିକ ସଂଗୀତ ଭାବେ ଗାନ କରା ଯାଇଥିଲା । କାରଣ ବାପା ସଦାବେଳେ ପ୍ରାଚୀନ ରାଗ ରାଗିଣୀ ଯୁକ୍ତ ଗୀତ ରଚନା କରୁଥିଲେ । ଏ ଗୀତ ଗାନକରିବାରେ ତାଙ୍କୁ ପୂର୍ଣ ପ୍ରାଣରେ ସାହାଯ୍ୟ କରିଥିଲେ କାଳୀ ଭାଇ ( କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ) ସେତେବେଳକୁ ସେ 'ଉତ୍କଳ ଥିଏଟର୍ସ' ପ୍ରତିଷ୍ଠା କରି ଓଡିଶାରେ ବେଶ୍ ପରିଚିତ ହୋଇ ସାରିଥିଲେ ।

ବାପାଙ୍କ ବିରଚିତ ଗୋଟିଏ ଗୀତ 'ମୋ ଦେଶ ଦେଖା ସେହି ରୂପକୁ' ୧୯୪୩ ମସିହା ର ସାହିତ୍ୟ ସମାଜର ଏକ ଅଧିବେଶନ ( ତା ୧୩-୩- ୪୩ ) ରେ ଉଦ୍‌ଯାପନୀ ସଂଗୀତ ଭାବେ ଗାନ କରା ଯାଇ ଥିଲା । ପୁଣି ୧୫-୩- ୪୩ ମସିହାର ଅଧିବେଶନରେ 'ବାଜି ଉଠେ ବିପଞ୍ଚୀ ସତେ ପୁଣି' ଗାନ କରା ଯାଇଥିଲା । ଉଭୟ ଗୀତ ଗାନ କରିଥିଲେ ' ଉତ୍କଳ ଥିଏଟର୍ସ'ର କଳାକାର ବୃନ୍ଦ । ପୂର୍ବରୁ ୧୮-୩-୪୨ ମସିହାର ସାହିତ୍ୟ ସମାଜର ଏକ ଅଧିବେଶନରେ ଭକ୍ତ ଚରଣ ଦାସଙ୍କ ' ମନବୋଧ ଚଉତିଶା', ଦୀନକୃଷ୍ଣ ଦାସଙ୍କ 'ଅନୁରାଗ ରତ୍ନାକର ଚଉତିଶା' ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣିର' ରାଧା ଧରି ସଖି କର ଛାନ୍ଦକୁ ବାପା ଇଂରାଜୀ ଭାଷାରେ ଅନୁବାଦ କରି ଉପସ୍ଥାପନ କରିଥିଲେ । ଏହି ଗୀତମାନ ଓଡିଆରେ ପରିବେଷଣ କରିଥିଲେ କବିଚନ୍ଦ୍ର କାଳିଚରଣ । ସେ ଦିନ ସଭାପତିତ୍ୱ କରିଥିଲେ ଓଡିଶା କୁଟୀର ଶିଳ୍ପର ପଥ ପ୍ରଦର୍ଶକ ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକ ।

ବାପାଙ୍କ ସାହିତ୍ୟ ଜୀବନ ମୁଖ୍ୟତଃ ଅନୁବାଦରୁ ଆରମ୍ଭ ହୋଇଥିଲା । ପ୍ରାଚୀ ସମିତିରେ ଥିଲା ବେଳେ ସେ ଅନୁବାଦ ମାଧ୍ୟମରେ ଓଡିଆ ପ୍ରାଚୀନ ସାହିତ୍ୟର ପ୍ରସାର ଉପରେ ଗୁରୁତ୍ୱ ଆରୋପ କରିଥିଲେ । ପରେ ସେ କେତେକ ସମ୍ବାଦ ପତ୍ର ପାଇଁ ସଂବାଦ ଏବଂ ଫିଚରମାନ ଅନୁବାଦ କରୁଥିଲେ । ଏହା ଫଳରେ ସେ ସହଜ ଭାବେ ଓଡିଶା ସରକାରଙ୍କ ରାଇଟର ଟ୍ରାନ୍ସଲେଟର ଭାବେ ନିଯୁକ୍ତି ପାଇ ପାରିଥିଲେ ।

ଓଡିଆ ଭାଷାରୁ ଇଂରାଜୀକୁ ତାଙ୍କ ବିଶିଷ୍ଟ ଅନୁବାଦ ଗ୍ରନ୍ଥ ହେଉଛି, ' କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ସୋଭେନିର୍' (୧୯୫୦) । ଏଥିରେ ସେ ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟରୁ

କେତେକ ସୁନିର୍ବାଚିତ ଛାନ୍ଦର ମୂଳ ଭାବ ସଂପଦକୁ ଅକ୍ଷୁର୍ଣ ରଖି ଅନୁବାଦ କରି ଯାଇଛନ୍ତି । ସେ କହୁଥିଲେ, ଉପେନ୍ଦ୍ରଙ୍କୁ ପୃଥିବୀର ବିସ୍ମୟ କହି ଆମେ ଯେତେ ପାଟି କଲେ ତାଙ୍କୁ କେବେ ବିଶ୍ୱ ସ୍ୱୀକୃତି ଦେବ ନାହିଁ ଯେତେ ଦିନ ଯାଏ ବିଶ୍ୱବାସୀ ଏ ରଚନାର ସ୍ୱାଦ ନଚାଖିଛନ୍ତି । ଏଥିପାଇଁ ଆବଶ୍ୟକ ବିଶ୍ୱସ୍ତ ଅନୁବାଦ ।

୧୯୫୭ ମସିହାରେ ସେ ପ୍ରକାଶ କଲେ 'ଗ୍ଲିମ୍‌ସେସ୍ ଇନ୍‌ଟୁ କବିସୂର୍ଯ୍ୟ' । ଏଥିରେ କବି ସୂର୍ଯ୍ୟ ବଳଦେବ ବିରଚିତ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର କେତୋଟି ଗୀତ ସହ ଏହାର ସଂସ୍କୃତ ମଙ୍ଗଳାଚରଣକୁ ଅନୁବାଦ କରି ଯାଇଛନ୍ତି । ଏହାର ଦୁଇବର୍ଷ ପରେ ପ୍ରକାଶ ପାଇଲା ' କଳିଙ୍ଗ ଭାରତୀ ସୋଭେନିର' ଏଥିରେ ଉପେନ୍ଦ୍ରଙ୍କ କେତୋଟି ଛାନ୍ଦ ସହ ଅଭିମନ୍ୟୁସାମନ୍ତ ସିଂହାର, ଦୀନକୃଷ୍ଣ ଦାସ ଏବଂ କବିସୂର୍ଯ୍ୟଙ୍କ ଛାନ୍ଦମାନ ଅନୁବାଦ ହୋଇ ପ୍ରକାଶିତ ହୋଇଛି ।

ଏତେ ଅନୁବାଦ କରି ବାପା ଅନୁଭବ କରିଥିଲେ ଯେ ପାଶ୍ଚତ୍ୟ ଭାଷାକୁ ଏହି କାବ୍ୟମାନଙ୍କର ଭାବ ସଂପଦକୁ ସିନା ଅନୁବାଦ ମାଧ୍ୟମରେ ପହଞ୍ଚାଇ ହେବ ମାତ୍ର କାବ୍ୟ ଗତ ସୂକ୍ଷ୍ମ ଅଳଂକାର କଳା ଏବଂ ସଂଗୀତ ଧର୍ମିତାକୁ ଉପସ୍ଥାପିତ କରିହେବ ନାହିଁ । କହିବା ବାହୁଲ୍ୟ, ଓଡିଆ ପ୍ରାଚୀନ ସାହିତ୍ୟର ମୂଳ ଆବେଦନ ହେଉଛି ସଂଗୀତମୟତା । ସାହିତ୍ୟ ବିଷୟରେ ଧାରଣା ଆସିଲା ପରେ କାଳକ୍ରମେ ଏହି ଆଳଂକାରିକ ଓ ସାଙ୍ଗୀତିକ ବିଭବ ସେମାନଙ୍କ ପାଖକୁ ସଂକ୍ରମିତ ହୋଇ ପାରିବ ବୋଲି ସେ ବିଶ୍ୱାସ କରୁଥିଲେ ।

ଯଦି ପାଶ୍ଚାତ୍ୟ ଶ୍ରୋତା ଓଡିଶୀ ସଂଗୀତ ଓ ନୃତ୍ୟ ବୁଝି ପାରିଲେଣି ଓଡିଆ ସାହିତ୍ୟ ବୁଝିବାକୁ ତାଙ୍କୁ ବେଶି ପରିଶ୍ରମ ଲାଗି ନଥାଆନ୍ତା । ମାତ୍ର ବାପାଙ୍କ ପରେ ପ୍ରାଚୀନ କାବ୍ୟ କବିତା ଅନୁବାଦ ସଂପୂର୍ଣ ବନ୍ଦ ହୋଇଗଲା । ଏଣୁ ତାଙ୍କ ସ୍ୱପ୍ନ ଓ କାର୍ଯ୍ୟ ସଂପୂର୍ଣ ହୋଇ ପାରି ନାହିଁ । ଆମର କବି ସାହିତ୍ୟିକ ଏବଂ କଳାକାର ଅର୍ଥ ପଛରେ ଅଣ ନିଃଶ୍ୱାସୀ ଭାବେ ଧାଇଁ ଏ ଭଳି କାର୍ଯ୍ୟକୁ ଅଗ୍ରଗାମୀ କରାଇବାରେ ପରାଙ୍ମୁଖ ହୋଇଛନ୍ତି ।



## ଉଜାଣି ସ୍ରୋତର ନାୟକ :

ସାଧାରଣ ଲୋକଙ୍କ ଏକ ପ୍ରବୃତ୍ତି, ସେମାନେ ମାଛିକି ମ' କହିବେ ନାହିଁ, ହଲିଲା ପାଣିରେ ବି ଗୋଡ ଦେବେ ନାହିଁ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଭାଗ୍ୟବାଦୀ । ଏମାନେ ସୁଅ ମୁହଁରେ ପତର ଭଳି ଭାସି ଯିବାକୁ ପସନ୍ଦକରନ୍ତି । ନିସ୍ତରଙ୍ଗ ସମୁଦ୍ର ତାଙ୍କର କାମ୍ୟ । କୌଣସି ପ୍ରକାର ସଂଗ୍ରାମୀ ବା ଝଡ ଝଞ୍ଜାପୂର୍ଣ କାମ ତାଙ୍କୁ ଭଲ ଲାଗେ ନାହିଁ ।

ମାତ୍ର ସଂଗ୍ରାମୀ ମନର ନାୟକ ଭିନ୍ନ ପ୍ରକାର ମଣିଷ । ସେମାନେ ଭାଗ୍ୟବାଦୀ ନୁହନ୍ତି । ସେମାନେ ବିଶ୍ୱାସ କରନ୍ତି ଦାବୀ ହାସଲ କରିବାକୁ ପଡିବ । ଗଡ୍‌ଡାଳିକା ପ୍ରବାହରେ ଭାସିଯିବାକୁ ସେମାନେ ପସନ୍ଦ କରନ୍ତି ନାହିଁ । ସେମାନେ ସ୍ରୋତର ପ୍ରତିକୂଳରେ ଯାଇ କିଛି କରି ଦେଖେଇବାକୁ ଚାହାନ୍ତି । ସାହିତ୍ୟ ଜଗତରେ ଏକ ପ୍ରସିଦ୍ଧି ଅଛି ମଗର ମାଛର । ସେ ସ୍ରୋତର ଅନୁକୂଳକୁ ପସନ୍ଦ କରେ ନାହିଁ । କଥିତ ଅଛି ସେ ତାର ସାନ ସାନ ପିଲାକୁ ନଈ ସୁଅରେ ଛାଡି ଦେଇ ତଳେ ଜଗି ବସିଥାଏ । ଯେଉଁ ଛୁଆ ସୁଅର ଅନୁକୂଳରେ ଗଡି ଚାଲିଲା ତାକୁ ସେ ଗିଳି ଦିଏ । ସୁଅର ପ୍ରତି କୂଳରେ ଯାଉଥିବା ପିଲା ସହ ସେ ଉପରକୁ ଉଠିଚାଲେ ।

ବାପା ଏହି ଶ୍ରେଣୀର ମଣିଷ । ସେ ଅନ୍ୟାୟକୁ କେବେ ବରଦାସ୍ତ କରନ୍ତି ନାହିଁ । ସେ ବିଶ୍ୱାସ କରୁଥିଲେ, ପରଂପରାକୁ ଛାଡି ଗୋଟିଏ ମଣିଷ ହେଉ କି ଗୋଟିଏ ଜାତି ହେଉ କେବେ ତିଷ୍ଠି ପାରେ ନାହିଁ , ବା କେବେ ନିଜକୁ ପରିଚିତ କରି ପାରେ ନାହଁ । ପ୍ରତ୍ୟେକ ମଣିଷ ଗୋଟିଏ ମାଟି ଉପରେ ଠିଆ ହୋଇ ଥାଏ । ଏହି ପାଦ ତଳର ମାଟିଟି ହେଉଛି ତାର ପରଂପରା- ତାର ବଡ ବଡିଆ ।

'ଉତ୍କଳ ସାହିତ୍ୟ ସମାଜ' ସହ ବାପାଏତେ ଘନିଷ୍ଠ ଥିଲେ ଏବଂ ଏହାକୁ ଏତେ ଭଲ ପାଉଥିଲେ ଯେ ଏହାର ଅଙ୍ଗଚ୍ଛେଦ ପାଇଁ ତାର ପାଠାଗାରକୁ ସେଥିରୁ ଅଲଗା କରିବାକୁ ୧୯୪୪ ମସିହାରେ ଉଦ୍ୟମ ହେବାରୁ ବାପା ତାର ଘୋର ବିରୋଧ କରିଥିଲେ ଏବଂ ପ୍ରତିବାଦ ସ୍ୱରୂପ ଏହାର କର୍ମକର୍ତ୍ତା ପଦରୁ ଇସ୍ତଫା ପ୍ରଦାନ କଲେ ।

୧୯୩୨ ରୁ ୧୯୪୪ ମସିହା ପର୍ଯ୍ୟନ୍ତ ପ୍ରାଚୀ ସମିତି ଓ ଉତ୍କଳ ସାହିତ୍ୟ ସମାଜରେ କାର୍ଯ୍ୟ କରି ବାପା ତତ୍କାଳୀନ ବିଶିଷ୍ଟ ସାହିତ୍ୟିକଙ୍କ ମଧ୍ୟରେ ପରିଚିତ ଓ

ସୁପ୍ରତିଷ୍ଠିତ ହୋଇ ସାରି ଥିଲେ । ସେ ତାଙ୍କର ମନୋଭାବ ଓ ଚେତନା ଦ୍ୱାରା ବହୁ ସାହିତ୍ୟିକଙ୍କୁ ପ୍ରଭାବିତ ମଧ୍ୟ କରି ଥିଲେ । ଏବେ ସେ ଆରମ୍ଭ କଲେ ନୂଆ ଉଦ୍ୟମ । ବାପା ବିଶ୍ୱାସ କରଥିଲେ ଯେ ଏ ବୁଢ଼ା ମାନଙ୍କୁ ନେଇ କିଛି ନୂଆ ଗଢ଼ି ହେବ ନାହିଁ । ତାଙ୍କର କାମ ସଦାବେଳେ ପଛକୁ ଟାଣିବା ।

ବର୍ତ୍ତମାନ ତାଙ୍କ ଆଗରେ ଉଭା ହେଲେ ତରୁଣ ଅରୁଣ ଦଳ । କାରଣ ସେ ଜାଣିଥିଲେ ଯେ ପ୍ରଭାତ ତରୁଣ ଅରୁଣ ଅଳ୍ପ ସମୟ ମଧ୍ୟରେ ପ୍ରବଳ ମାର୍ତ୍ତଣ୍ଡରେ ପରିଣତ ହେଲା ପରି ଭବିଷ୍ୟତର ସକଳ ପ୍ରତିଭା ଓ ପ୍ରଭାବସଂପନ୍ନ ଏହି ତରୁଣ ସ୍ୱଳ୍ପ ସମୟ ମଧ୍ୟରେ ଶକ୍ତିଶାଳୀ ସଂଗ୍ରାମୀ ପୁରୁଷରେ ରୂପାନ୍ତରିତ ହେବେ । ସେମାନେ ଗଠନମୂଳକ କାର୍ଯ୍ୟ କଲେ ଏ ଦେଶରୁ ହୀନମଣ୍ୟତା ଏବଂ ଦୁର୍ଦ୍ଦିନ ଅକ୍ଳେଶରେ ବିଦୂରିତ ହେବ । ମାତ୍ର ସେମାନେ ପଥ ଭ୍ରଷ୍ଟ ହେଲେ ଏ ଦେଶ ଅଚିରେ କ୍ଳୀବ ପାଲଟି ଯିବ ।

ବାପାଙ୍କ ଆଗରେ ସେତେବେଳର ଆଦର୍ଶ ଥିଲା ମହାତ୍ମାଗାନ୍ଧୀ ପ୍ରବର୍ତ୍ତିତ ବାନର ବାହିନୀ । ଦେଶର ସ୍ୱାଧୀନତା ପାଇଁ ଏମାନେ ଯେଉଁ ଉନ୍ମାଦନା ପ୍ରଦର୍ଶନ କରିଛନ୍ତି ତାହାକୁ ସାହିତ୍ୟ ଓ ସଂସ୍କୃତି ରକ୍ଷଣା ବେକ୍ଷଣରେ ନିୟୋଜିତ କଲେ ଉତ୍ତମ ଫଳ ମିଳିବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ଅତୀତର ଏକ ଘଟଣା ତାଙ୍କୁ ଏଦିଗରେ ପ୍ରରୋଚିତ କଲା । ୧୯୪୧ ମସିହାରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ପାଳିତ ହୋଇଥିଲା ସାହିତ୍ୟ ସପ୍ତାହ ଉତ୍ସବ । ଏଥିରେ ଓଡିଶା ଓ ବାହାରର ବହୁ ସାହିତ୍ୟିକ ଯୋଗ ଦାନ କରିଥିଲେ । ବିଦ୍ୟାଳୟ ମାନଙ୍କରୁ ଆସୁଥିବା ଛାତ୍ରମାନେ ବାପାଙ୍କ ଓଜସ୍ୱିନୀ ଭାଷଣରେ ମନ୍ତ୍ରମୁଗ୍ଧ ହୋଇଥିଲେ । କ୍ରମେ ସେମାନେ ଗୃହର ଆକଟ ଓ କଟକଣାକୁ ଭ୍ରୁକ୍ଷେପ ନକରି ବାପାଙ୍କ ନିକଟର ହେବାକୁ ଲାଗିଲେ । ଏବେ ସେ ଆରମ୍ଭ କଲେ ଏହି ଛାତ୍ରମାନଙ୍କୁ ନେଇ ଏକ ଅଭିନବ ଉଦ୍ୟମ ।

୧୯୪୩ ମସିହାରେ ସେ ଛାତ୍ରମାନଙ୍କୁ ନେଇ ଆରମ୍ଭ କଲେ ଏକ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ 'ଉତ୍କଳ ଛାତ୍ର ସାହିତ୍ୟ ସମାଜ' । ଏଥିରେ ଯୋଗ ଦେଇଥିବା ଅସଂଖ୍ୟ ଛାତ୍ର ମଧ୍ୟରୁ ମୋର ମନେ ପଡୁଥିବା ବ୍ୟକ୍ତିମାନେ ହେଲେ-ହୃଦାନନ୍ଦ ରାୟ, ରଜତ କୁମାର କର, କିଶୋରୀ ମୋହନ ପରିଡା, ଗୋପବନ୍ଧୁ ରଥ, ବିଜୟ କୁମାର କାନୁନଗୋ, ଅନ୍ନଦା ଚରଣ ଦାସ, ପ୍ରମୋଦ ପତି , ବିନାୟକ ଚୌଧୁରୀ, ବିଷ୍ଣୁ ପ୍ରସାଦ ବାହାଲିଆ, ହରି ପ୍ରସାଦ ଚୌରାଶିଆ, ଅଗଣି ପୃଷ୍ଟି ପ୍ରଭୃତି ଅନେକ ।

ସେତେବେଳେ ବାପାଙ୍କ ବିରୋଧ କରୁଥିବା ସୁଧୀବୃନ୍ଦ ତାଙ୍କର ଏହି ସଂଗଠନକୁ ଦେଖି ଆଚମ୍ବିତ ଓ ତଟସ୍ଥ ହୋଇ ଯାଇଥିଲେ । ତାଙ୍କର ମାନସ ସନ୍ତାନ ସହ ସମତାଳରେ ଜନ୍ମିଥିଲେ ମୋର ଭାଇ ପୁରୁଷୋତ୍ତମ ପଟ୍ଟନାୟକ । ବାପା ପୂର୍ବରୁ ଗୋଟିଏ

ପୁତ୍ର ହରାଇ ଯେଉଁ ମାନସିକ ଯନ୍ତ୍ରଣା ମଧ୍ୟରେ ଥିଲେ ତାହାକୁ କିଞ୍ଚିତ ପ୍ରଶମିତ କଲେ ଏଇ ଦୁଇ ସନ୍ତାନ - ଉତ୍କଳ ଛାତ୍ର ସାହିତ୍ୟ ସମାଜ ଓ ପୁରୁଷୋତ୍ତମ ।

ପରେ ପରେ ବାପା ପ୍ରତିଷ୍ଠା କଲେ 'କଳିଙ୍ଗ ଭାରତୀ' ଅନୁଷ୍ଠାନ । ଏହା ଉତ୍କଳ ଛାତ୍ର ସାହିତ୍ୟ ସମାଜର ଏକ ପରି ବର୍ଦ୍ଧିତ ରୂପ । ଏହି ଦୁଇ ଅନୁଷ୍ଠାନ ଅଙ୍ଗାଙ୍ଗୀ ଭାବେ ଜଡିତ । ଏହି ଅନୁଷ୍ଠାନ ଦ୍ୱୟର ପ୍ରଥମ ବାର୍ଷିକ ଉତ୍ସବକୁ ସ୍ମରଣୀୟ କରିବା ଲକ୍ଷ୍ୟରେ ୧୯୪୪ ମସିହା ମଇ ୧୬ ତାରିଖରେ ଆରମ୍ଭ ହେଲା ଭଞ୍ଜ ଜୟନ୍ତୀ ଉତ୍ସବ । ସେହି ଦିନ ଠାରୁ ଆଜି ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବେ ଏହି ଦିନରୁ ଆରମ୍ଭ ହୁଏ ଭଞ୍ଜ ଜୟନ୍ତୀ ଉତ୍ସବ ।

ଚଳତ୍‌ଶକ୍ତି ବିହୀନ ଜଣେ ବ୍ୟକ୍ତି ନିଜର ଅସାମାନ୍ୟ ମନୋବଳ ଓ ସାଂଗଠନିକ ଶକ୍ତି ରେ କିପରି ଅସାଧ୍ୟ ସାଧନ କରି ପାରେ ବାପା ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ରୂପେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଉତ୍କଳ ଛାତ୍ର ସାହିତ୍ୟ ସମାଜ ଓ କଳିଙ୍ଗ ଭାରତୀ ଉତ୍କଳୀୟ ସଂସ୍କୃତି, କଳା ଓ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜଙ୍କୁ ପ୍ରତୀକ ଭାବେ ଗ୍ରହଣ କରିଛି । ଜଗନ୍ନାଥ ହେଉଛନ୍ତି ଉତ୍କଳୀୟ ଧର୍ମ ଓ ଆଧ୍ୟାତ୍ମିକ ଚେତନାର ପ୍ରତୀକ ଓ ବାର୍ତ୍ତାବହ । ତାଙ୍କ ଠାରେ ସାନ ବଡ କେହି ନାହିଁ ।ଏହା ହେଉଛି ଉତ୍କଳୀୟ ସଂସ୍କୃତିର ମୂଳ ମନ୍ତ୍ର । କଳା ଦୃଷ୍ଟିରୁ କୋଣାର୍କ ବିଶ୍ୱ ଦରବାରରେ ସୁପ୍ରତିଷ୍ଠିତ । ସେହି ପରି ସାହିତ୍ୟର ପ୍ରତୀକ ହେଉଛନ୍ତି ଉପେନ୍ଦ୍ରଭଞ୍ଜ । କହିବା ଅନାବଶ୍ୟକ ଉତ୍କଳର ଆଧ୍ୟାତ୍ମିକ ଚେତନା, କଳା ଓ ସାହିତ୍ୟର ପୁରୋଧା ଯଥାକ୍ରମେ ଜଗନ୍ନାଥ, କୋଣାର୍କ ଏବଂ ଉପେନ୍ଦ୍ର ଭଞ୍ଜଙ୍କୁ ନେଇ ସେ 'କଳିଙ୍ଗ ଭାରତୀର' ପ୍ରତୀକରେ ସ୍ଥାନ ଦେଇଛନ୍ତି । ଏଣୁ କଳିଙ୍ଗ ଭାରତୀ କେବଳ ଭଞ୍ଜ ଜୟନ୍ତୀ ପାଇଁ ପ୍ରତି ବଦ୍ଧିତ ନୁହେଁ ଓଡିଶାର ଆଧ୍ୟାତ୍ମିକ ଜାଗରଣ ସହ ଏହାର କଳା ଭାସ୍କର୍ଯ୍ୟ ଓ ସାହିତ୍ୟର ପୁନର୍ମୂଲ୍ୟାୟନ ପାଇଁ ପ୍ରତିଶ୍ରୁତିବଦ୍ଧ ବୋଲି ସେ ସୂଚନା ଦେଇଥିଲେ ।

ସେତେବେଳକୁ ରବୀନ୍ଦ୍ର ଆଲୋକରେ ସାରା ଦେଶ ଉଦ୍ଭାସିତ । ବିଶ୍ୱର ବିଭିନ୍ନ ପ୍ରାନ୍ତରେ ବଙ୍ଗବାସୀ ରବୀନ୍ଦ୍ରଙ୍କୁ ନେଇ ଗର୍ବ ଓ ଗୌରବରେ ସାହିତ୍ୟିକ ସମାରୋହମାନ କରୁଥାଆନ୍ତି । ଓଡିଶାରେ ଥିବା କେତେକ ବଙ୍ଗବାସୀ କଟକ ସହରରେ ସାତ ଦିନ ବ୍ୟାପି ରବୀନ୍ଦ୍ର ଜୟନ୍ତୀ ମହା ସମାରୋହରେ ପାଳନ କରୁଥାନ୍ତି । ଏଥିରେ କେବଳ ବଙ୍ଗ ଭାଷାର ଗୁଣ ଗାନ କରା ଯାଏ ନାହିଁ ଓଡିଆ ଭାଷାକୁ ହେୟଜ୍ଞାନ କରି ଭାଷଣମାନ ଦିଆ ଯାଏ । କଟକର ଓଡିଆ ବୁଦ୍ଧିଜୀବୀମାନେ ଏହାକୁ କେବଳ ସହ୍ୟ କରନ୍ତି ନୁହେଁ ନିର୍ଲଜ ଭାବେ ପାଟି ଆଁ କରି ପିଇ ଯାଉ ଥାଆନ୍ତି ।

ବାପା ବଙ୍ଗ ବିଦ୍ୱେଷୀ ନଥିଲେ ବା ନଥିଲେ ରବୀନ୍ଦ୍ର ବିରୋଧୀ । ସେ ରବୀନ୍ଦ୍ରନାଥଙ୍କ ଗୁଣ ଗାନ କରି କବିତା ରଚନା କରିଛନ୍ତି । ତାଙ୍କ ସ୍ମୃତି ତର୍ପଣ କରିବାରେ କେବେ ଅବହେଳା କରି ନାହାନ୍ତି ବରଂ ରବୀନ୍ଦ୍ରଙ୍କୁ ବିଶ୍ୱର ଆଲୋକ ଭାବେ ଚିତ୍ରଣ କରି ଅଛନ୍ତି । ତାଙ୍କ ବିରଚିତ ଏବଂ କବିତା କୁମୁଦରେ ପ୍ରକାଶିତ କବିତା, ' ବିଶ୍ୱ କବି ରବୀନ୍ଦ୍ରାଥ -୧ ଓ ୨ ରୁଏହି ଚେତନା ସ୍ପଷ୍ଟ ବାରି ହୋଇ ପଡେ । ଏଥିରେ କବି ଗୁରୁଙ୍କୁ ସେ 'ପ୍ରାଚୀ ଭାଲଟିକା ତାରୁଣ୍ୟ ପୁରୋଧା' ବୋଲି ସମ୍ବୋଧନ କରିଛନ୍ତି । ରବୀନ୍ଦ୍ରନାଥଙ୍କୁ ସେ ନବଯୁଗର ବାର୍ତ୍ତାବହ ବୋଲି ସମ୍ବୋଧନ କରି କହନ୍ତି-

ନିର୍ମୋକ ଅତୀତର   କରି ଅଙ୍ଗରୁ ଦୂର
  ଧରେ ଜଗତ ନୂଆ ଦ୍ୟୁତିକି ହେ ।
ପୁରୋଧା ନବୀନର  ପ୍ରାଚୀନ ନିଶାଘୋର
  ପ୍ରଭାତୁଛି ଛୁଟାଇ ଜ୍ୟୋତିକି ହେ । (ପୃ ୩୨)

ମାତ୍ର ବାପାଙ୍କ ଆଗରେ ଓଡିଶା ବା ଓଡ଼ିଆ ଭାଷାର ସାମାନ୍ୟ ତମ ଅବମାନନା ସ୍ପୃହଣୀୟ ନୁହେଁ । ନିଜ ଘର ଧନକୁ ନଚିହ୍ନି ପର ଧନରେ ନାଚିବାକୁ ସେ ଘୃଣା କରୁଥିଲେ । ତାଙ୍କ ବିରଚିତ କବିତା ଗ୍ରନ୍ଥ 'କବିତା କୁମୁଦ'ରେ ପ୍ରକାଶିତ ଏକ କବିତାରୁ ଏହା ପ୍ରମାଣିତ ହୁଏ । 'ବାଣୀ ରାଣୀ' କବିତାରେ ସେ କହନ୍ତି-

ଭଞ୍ଜ କବି ରବି ବନମାଳୀ    ଗୋପାଳକୃଷ୍ଣ ସଂଗୀତାବଳୀ
ଯେ ଦେଶ ସଂପତ୍ତି   ଦେଖିତା ବିପତ୍ତି
  ସେପୁଣି ବହଇ ଭିକ୍ଷା ଥାଳି ।
ଯିବ ଜାତିର ଏ ଅପମାନ    ଚିହ୍ନିବ ଉତ୍କଳୀ ଘର ଧନ
ବିଶ୍ୱ ସାରସ୍ୱତ      ସଙ୍ଗୀତ ବିଭବୁଁ
  କରିବ ସେ ସାର ଆହରଣ ।

ଉକ୍ତ ଗ୍ରନ୍ଥର 'ସେକାଳ ବିପଞ୍ଚୀ ଏକାଳ ତାନ' କବିତାରେ ଉତ୍କଳବାସୀଙ୍କ ଏହି ଗୋଡାଣିଆ ନୀତିକୁ ସେ କେବଳ ସମାଲୋଚନା କରି ନାହାନ୍ତି ଏହାର କୁପ୍ରଭାବ କିପରି ଏ ଦେଶକୁ କ୍ରମେ ରସାତଳଗାମୀ କରୁଛି  ତାହା ପ୍ରଦର୍ଶନ କରିଛନ୍ତି । ସେ କ୍ଷୋଭର ସହ ଲେଖିଛନ୍ତି-

ଗାଉଛି ଉତ୍କଳ ପର ସଂଗୀତ  ନଜାଣୁଛି ନିଜେ ନିଜର ବିତ୍ତ
ସେକାଳ ବିପଞ୍ଚୀ ଏକାଳ ତାନ     ଯୋଗ ବିନା ଧନୀ ହାରୁଛି ମାନ ।

'ଶସ୍ୟଶ୍ୟାମା' କବିତାରେ ସେ ଉତ୍କଳ ମାଟିର ବିଭବ ଓ ଉତ୍କଳ ଜନନୀର ସ୍ୱାଭିମାନ ଦର୍ଶାଇ ଗାଇଛନ୍ତି- 'କେଉଁ ଭୂମି କହ ଭଲା ତୋହ ସମା ଗୋ ଶସ୍ୟଶ୍ୟାମା'

ଗୀତର ଅନ୍ତରା ପଦରେ ଥିବା ଶବ୍ଦ ଯୋଜନାକୁ ଟିକିଏ ତଳେଇ ଦେଖିଲେ ବାପାଙ୍କ ତୀବ୍ର ସ୍ୱଦେଶ ପ୍ରୀତିର ନମୁନା ବେଶ୍ ବାରି ହୋଇ ପଡେ । ସେ କହନ୍ତି ଧନ ଧାନ୍ୟ ପୂର୍ଣ୍ଣ, ବୀର ସନ୍ତାନର ଜନନୀ, ତଥା କଳା ଲକ୍ଷ୍ମୀର ଗନ୍ତାଘର ମନୋରାମା ଉତ୍କଳ ମାତାର ଶୌର୍ଯ୍ୟରେ ବିମୋହିତ ହୋଇ ବଙ୍ଗ ସାଗର ତାଙ୍କର ପଦ ଧୌତ କରୁଛି ।

ଭକ୍ତି ଭରେ ବଙ୍ଗ ସାଗର ତରଙ୍ଗ ଧୁଉଥିଇ ଜନନୀ ତୋହ ଅଧମାଙ୍ଗ
ତରଣୀ ବିଶାଳା ତୁହିମା କଳିଙ୍ଗ କଳା ଲକ୍ଷ୍ମୀ ମନୋରମା ।
ଗୋ ଶସ୍ୟ ଶ୍ୟାମା ।

ଅନ୍ଧବତ୍ ଉତ୍କଳବାସୀଙ୍କୁ ପଥ ପ୍ରଦର୍ଶନ କରିବାକୁ ସେ ଗଢ଼ିଲେ ବିରାଟ ଅନୁଷ୍ଠାନ 'କଳିଙ୍ଗଭାରତୀ' । ସମଗ୍ର ଓଡିଶାରେ ଜଗନ୍ନାଥ, କୋଣାର୍କ ଏବଂ ଉପେନ୍ଦ୍ର ଭଞ୍ଜଙ୍କୁ ଯେପରି ସମସ୍ତେ ସକଳ ଆଞ୍ଚଳିକତା, ଉଚ୍ଚନୀଚ ଭେଦ ଭାବ ଭୁଲି ନିଜର ବୋଲି ସ୍ୱୀକାର କରନ୍ତି ସେହି ପରି କଳିଙ୍ଗ ଭାରତୀ ତାର ବିଶାଳ ବାହୁ ବେଷ୍ଟନୀରେ ସାରା ଉତ୍କଳବାସୀଙ୍କୁ ନିଜର କରି ନେଇଛି । ଅନ୍ୟ ସାହିତ୍ୟ ଅନୁଷ୍ଠାନ ପରି ଏହା କୌଣସି ଆଞ୍ଚଳିକତାରେ ବିଶ୍ୱାସ କରେ ନାହିଁ । ମନେ ହୁଏ ଉତ୍କଳର ସକଳ ସାଂସ୍କୃତିକ ଚେତନାକୁ ଆପଣାର କରି ସେ ଏତେ ବଡ ବଟବୃକ୍ଷରେ ପରିଣତ ହୋଇ ପାରିଛି ।

ବାପା ସମଗ୍ର ଉତ୍କଳର ସାରସ୍ୱତ ଉନ୍ନତି ପାଇଁ ବ୍ୟାକୁଳ ଥିଲେ । ଏହି ସାରସ୍ୱତ ସାଧନାରେ ଆମର ପରଂପରାନୁସାରୀ କିଛି ନୂଆ କରି ଗଢ଼ା ହେଉ ବୋଲି ସେ ବିଶ୍ୱାସ କରୁଥିଲେ ।ଏଣୁ ସେ ଗାଇ ଉଠିଛନ୍ତି-

ମା ଭାରତୀ, ନବ ଯୁଗ ଶଂଖ ବାଜୁ
ନବ ସାରସ୍ୱତ ଗଉରବେ ଟୀକା କଳିଙ୍ଗ ଲଲାଟେ ରାଜୁ ।୭( ଭାରତୀ ବନ୍ଦନା)

ସେ ଭାବିଲେ ଯଦି କଟକ ସହର ଛାତି ଉପରେ , ଓଡିଆ ମାଟିରେ ସାତ ଦିନ ବ୍ୟାପି ରବୀନ୍ଦ୍ର ଜୟନ୍ତୀ ହୋଇ ପାରିବ ଏବଂ ଲୋକେ ତାକୁ ଉପଭୋଗ କରିବେ ତେବେ ସେହି କଟକରେ ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରେରଣାର ଉତ୍ସ ଉପେନ୍ଦ୍ର ଭଞ୍ଜଙ୍କ ଜୟନ୍ତୀ କାହିଁକି ହୋଇ ନ ପାରିବ ? ଉତ୍କଳର ଦୁରବସ୍ଥା ଦେଖି ବାପା ମ୍ରିୟମାଣ ହୋଇ ପଡିଥିଲେ । ଏହାର ସନ୍ତାନ ଗଣ ଏ ଦିଗରେ ପ୍ରତିକାର ନକରିବାରୁ ସେ କ୍ଷୁବ୍ଧ ହୋଇ ଥିଲେ । ଭବିଷ୍ୟତରେ କିପରି ଉତ୍କଳର ମହିମା ମୟ ଅତୀତର ପୁନର୍ଜନ୍ମ ଓ ନବ ଜନ୍ମ ହେବ ଏଥିପାଇଁ ସେ ଯୁବଗଣଙ୍କୁ ପନ୍ଥା ନିର୍ଦ୍ଦେଶ କରୁଥିଲେ । ଅତୀତକୁ ପାଶୋରି ଦେଇଥିବା., ଏହାର ସୁବିଶାଳ ପରଂପରା ସହ ଅପରିଚିତ, ଏହା ପ୍ରତି ଅବହେଳା କରୁଥିବା ଲୋକଙ୍କ ମଧ୍ୟରେ ଥିବା ହୀନ ମନ୍ୟତା ଓ ଅପରକୁ ଅନ୍ଧ ଅନୁକରଣ କରିବାର ପ୍ରବଣତା

ପ୍ରକାଶ କରୁଥିଲେ ବାପା ସେମାନଙ୍କୁ କେବଳ ଘୃଣା କରୁ ନଥିଲେ ତାଙ୍କ ବିରୋଧରେ ଉଦାତ୍ତ ସ୍ୱର ଉତ୍ତୋଳନ କରିବାକୁ ପଶ୍ଚାଦ୍‌ପଦ ନଥିଲେ ।

ଅନ୍ୟ ଦେଶ ବା ସଂସ୍କୃତିରୁ ଭାବ ଆମଦାନୀକୁ ସେ ବିରୋଧ କରୁ ନଥିଲେ, ବରଂ ଏହାର ଅନ୍ଧ ଅନୁକରଣକୁ ସେ ଘୃଣା କରୁଥିଲେ । ଆମେ ଆଉ ଥରେ ଆମ ଚକ୍ଷୁରେ କୋଣାର୍କ କଳାକୁ ଦେଖିବୁଁ , ଓଡିଶୀ ନୃତ୍ୟକୁ ଉପଭୋଗ କରିବୁଁ , ଓଡିଆ ସାହିତ୍ୟକୁ ଆଲୋଚନା ଓ ତର୍ଜମା କରିବୁଁ ଏହି ଭାବନାରେ ବଶବର୍ତ୍ତୀହୋଇ ସେ ଅଥୟ ହୋଇ ପଡୁଥିଲେ ।

ପରଂପରାକୁ ସାମାନ୍ୟ ଆଘାତ କଲେ ତାଙ୍କ ହାତରୁ ତ୍ରାଣ ନଥିଲା । ସେ ଆଗ୍ନେୟ ଗିରି ପରି ଅଗ୍ନିଶର୍ମା ହୋଇ ଗର୍ଜି ଉଠୁଥିଲେ । କହିବା ବାହୁଲ୍ୟ ଏହି କ୍ରୋଧ ପାଇଁ ସେ କିଛି ଲୋକ ଠାରେ ଅପ୍ରିୟ ହୋଇଛନ୍ତି ଓ ଅନେକ ସମୟରେ ମାନସିକ କ୍ଳେଶ ଭୋଗିଛନ୍ତି । ଏହା ଫଳରେ ତାଙ୍କର କେତେକ ଶତ୍ରୁ ମଧ୍ୟ ସୃଷ୍ଟି ହୋଇ ଯାଇ ଥିଲେ ।

କଳିଙ୍ଗ ଭାରତୀ ପକ୍ଷରୁ ପ୍ରତି ବର୍ଷ ମଇ ମାସ ୧୬ ତାରିଖରୁ ୨୨ ତାରିଖ ପର୍ଯ୍ୟନ୍ତ ସାପ୍ତାହିକ ଭଞ୍ଜ ଜୟନ୍ତୀ  ସମାରୋହ ପାଳନ କରାଯାଏ । ଲୋକଙ୍କ ମନରେ ଏବେ ବି ପ୍ରଶ୍ନ ଉଠେ ଉପେନ୍ଦ୍ର ଭଞ୍ଜ କ'ଣ ମଇ ୧୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ? ଉପେନ୍ଦ୍ର ଭଞ୍ଜ କେବେ ଜନ୍ମ ଗ୍ରହଣ କରିଥିଲେ ସେ ନିଜେ ଲେଖି ନାହାନ୍ତି । ଏଣୁ ତାହା ଏ ପର୍ଯ୍ୟନ୍ତ ଅସମାହିତ ହୋଇ ରହିଛି ଯେପରି ରହିଛି କାଳିଦାସ ବା ସେକ୍ସପିୟରଙ୍କ ।

ବାପା କାହିଁକି ମଇ ୧୬ ତାରିଖକୁ ଗ୍ରହଣ କରିଥିଲେ। ତାର କାରଣ ବିବିଧ । ପ୍ରଥମତଃ, ମଇ ୯ ତାରଖରୁ ରବୀନ୍ଦ୍ର ଜୟନ୍ତୀ ଆରମ୍ଭ ହୋଇ ମଇ ୧୫ ତାରିଖରେ ଶେଷ ହେଉଥାଏ । ବାପା ସ୍ଥିର କଲେ ରବୀନ୍ଦ୍ର ଜୟନ୍ତୀ ପ୍ରତିଦ୍ୱନ୍ଦ୍ୱୀରେ ସେହି ଭଳି ସପ୍ତାହ ବ୍ୟାପୀ ଭଞ୍ଜ ଜୟନ୍ତୀ ଠିକ୍ ତା ପର ଦିନ ମଇ ୧୬ ରୁ ଆରମ୍ଭ କରା ଯିବ । ମଇ ୧୫ ତାରିଖରୁ ସମସ୍ତ ସ୍କୁଲ କଲେଜର ଗ୍ରୀଷ୍ମାବକାଶ ଆରମ୍ଭ ହୁଏ । ଏଣୁ ଶ୍ରୋତା ଓ ବକ୍ତା ପାଇଁ ଛାତ୍ର ଓ ଶିକ୍ଷକ ଉଭୟ ଉପଲବ୍ଧ ହୁଅନ୍ତି । ବହୁ ଜନ ସମାଗମ ପାଇଁ ବିରାଟ ସ୍ଥାନର ଆବଶ୍ୟକ । ଏଥିପାଇଁ ସ୍କୁଲ ବା କଲେଜ ପ୍ରାଙ୍ଗଣ ହେଉଛି ଉପଯୁକ୍ତ ସ୍ଥାନ । ସ୍କୁଲର ବେଞ୍ଚ ହେଉଛି ଉପଯୁକ୍ତ ଆସନ ଏ ଦୃଷ୍ଟିରୁ ମଇ ୧୬ ତାରିଖରେ ସଭା କଲେ ଏ ସ୍ଥାନ ଓ ଆସନର ଅଭାବ ରହିବ ନାହିଁ ।

ପ୍ରାରମ୍ଭିକ ଅବସ୍ଥାରେ ଭଞ୍ଜ ଜୟନ୍ତୀ  କଟକ ଟାଉନ୍ ହଲ୍‌ରେ ଆରମ୍ଭ ହୋଇ ପରେ ଏହା ରେଭେନ୍ସା କଲିଜିଏଟ୍ ସ୍କୁଲ ପ୍ରଙ୍ଗଣକୁ ସ୍ଥାନାନ୍ତରିତ ହୋଇଥିଲା ଏଠାରେ ଉକ୍ତ ସାମ୍ବତ୍ସରିକ ଉତ୍ସବ ଦୀର୍ଘ ବର୍ଷ ଧରି ଅନୁଷ୍ଠିତ ହୋଇଥିଲା । ସ୍କୁଲର ପ୍ରଧାନ ଶିକ୍ଷକ ଚୌକି ଓ ଟେବୁଲ ଅକୁଣ୍ଠ ଚିତ୍ତରେ ଚିତ୍ତରେ ସାହାଯ୍ୟ କରୁଥିଲେ । ସେ

ସମୟର ଭଞ୍ଜ ଜୟନ୍ତୀ ଯେ ଦେଖିଛି ସେ ଆଜି ପର୍ଯ୍ୟନ୍ତ ମନେ ରଖିଥିବ ।ଶହ ଶହ ଦର୍ଶକ ଏହି ଭବ୍ୟ ସଭାକୁ ଆନନ୍ଦ ପ୍ରାଣରେ ଉପଭୋଗ କରୁଥିଲେ । ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସେମାନେ ନିବିଷ୍ଟ ଚିତ୍ତରେ ସେଠାରେ ବସି ରହୁଥିଲେ । ଲୋ କଥାରେ ଯେପରି 'ଥାଳି ମାରି ଦେଲେ ଥାଳି ଚାଲିଯିବ 'ସେହିଭଳି ସଭାସ୍ଥଳୀ ଲୋକେ ଲୋକାରଣ୍ୟ ହୋଇ ଯାଉଥିଲା ।

ମାତ୍ର ଅସୁବିଧା ବଶତଃ ଆଉ ସେଠାରେ ସଭା କରିବା ସମ୍ଭବ ହେଲା ନାହିଁ । ଏହା ପରେ ବର୍ଷଟିଏ ସହୀଦ ଭବନରେ ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ବାରବାଟୀ ଷ୍ଟାଡିୟମରେ ପାଳନ କରା ଯାଉଥିଲା । ସେତେବେଳେ ଭଞ୍ଜ ଜୟନ୍ତୀର ଅଭ୍ୟର୍ଥନା ସମିତିର ସଭାପତି ଦାୟିତ୍ୱ ସାଦରେ ଗ୍ରହଣ କରୁଥିଲେ ରାଜ୍ୟ ପୋଲିସ ମହା ନିର୍ଦ୍ଦେଶକ । ଏହା ଫଳରେ ସାତ ଦିନଧରି ସଭାରେ ଆଇନ୍ ଶୃଂଖଳା ବିପର୍ଯ୍ୟସ୍ତ ହେବାର ସମ୍ଭାବନା ନଥିଲା ।

ପ୍ରତି ବର୍ଷ ଭଞ୍ଜ ଜୟନ୍ତୀ ପାଇଁ ଉପଯୁକ୍ତ ସ୍ଥାନ ମିଳିବା କଷ୍ଟକର ହେଲା । ବାପାଙ୍କ ଇଚ୍ଛା ଥିଲା 'ଭଞ୍ଜ ଜୟନ୍ତୀ' ଓ ଭଞ୍ଜ ଗବେଷଣା ପାଇଁ କଳିଙ୍ଗ ଭାରତୀର ଏକ ନିଜସ୍ୱ ପ୍ରେକ୍ଷାଗୃହ ଓ ପାଠାଗାର ନିର୍ମାଣ କରିବା । ଏହି ମଣ୍ଡପରେ କେବଳ ଜାତୀୟ ସାହିତ୍ୟ ଓ ସଂସ୍କୃତି ସଂପନ୍ନ ସଭାମାନ ଅନୁଷ୍ଠିତ ହେବ । ଏହା ଅବଶ୍ୟ ତାଙ୍କ ଜୀବଦ୍ଦଶାରେ ଫଳବତୀ ହୋଇ ନଥିଲା । ମାତ୍ର ତାଙ୍କର ଶ୍ରଦ୍ଧାଳୁ ଶିଷ୍ୟମାନେ ଏହାକୁ ସାକାର କରିଛନ୍ତି । ସଭାପତି ରଜତ କୁମାର କର ଏବଂ ଅନ୍ୟ କର୍ମକର୍ତ୍ତା ଙ୍ଗ, ଚନ୍ଦ୍ରଶେଖର ନନ୍ଦ, ଶରତକୁମାର କର ଡା. ଶୈଳେଶ୍ୱର ନନ୍ଦ ଓ ପୁରୁଷୋତ୍ତମ ପଟ୍ଟନାୟକ ପ୍ରଭୃତିଙ୍କ ବହୁ ଶ୍ରମ ଫଳରେ ୧୯୭୪ ମସିହାରୁ କଟକରେ 'ଭଞ୍ଜ ମଣ୍ଡପ' ପ୍ରତିଷ୍ଠା ଠାରୁ ସାମ୍ବତ୍ସରିକ ଭଞ୍ଜ ଜୟନ୍ତୀ ଏବଂ ସାରସ୍ୱତ ସମାରୋହମାନ ଏହିଠାରେ ପାଳିତ ହୋଇ ଆସୁଛି ।

ନାନା ବିବାଦୀୟ ପରିସ୍ଥିତିରେ ମଧ୍ୟ ଏହି ମଣ୍ଡପର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ଗୁରୁଙ୍କ ସଦିଚ୍ଛାକୁ ଚିତ୍ତରେ ଧାରଣ କରି କଳିଙ୍ଗ ଭାରତୀର ସାଧକ ବର୍ଗ ଯେଉଁ ଦିନ ଏହାକୁ ପୂର୍ଣାଙ୍ଗ କରିବେ ବାପା ସେ ପୁରରେ ଥାଇବି ଜାଣିବେ ଯେ ତାଙ୍କ ଶିଷ୍ୟମାନେ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ପଛଘୁଞ୍ଚା ଦେଇ ନାହାନ୍ତି ।

ଗାଆଁ କନିଆ ସିଙ୍ଘାଣୀ ନାକୀ ଭଳି ଓଡିଶାର ବରପୁତ୍ର ମାନଙ୍କ ରଚନାକୁ ଉତ୍କଳବାସୀ ଅଶ୍ଳୀଳ ଆଖ୍ୟା ଦେଇ ହେୟ ଜ୍ଞାନ କରି ଆସୁଥିଲେ । ମାତ୍ର ଭଞ୍ଜ ଜୟନ୍ତୀ ସେମାନଙ୍କ ଆଖି ଖୋଲି ଦେଲା । ପ୍ରାଚୀନ ସଂଗୀତ, ନୃତ୍ୟ ଓଡିଶାର ପାରମ୍ପରିକ ଲୋକ ସଂଗୀତ ଯଥା- ଶଂଖ ହୁଳହୁଳି, ଯୋଡି ନାଗରା, ପାଲା ଦାସକାଠିଆ, ଯୋଗୀ ଗୀତ ସହ ଉଚ୍ଚାଙ୍ଗ ସାହିତ୍ୟ ଚର୍ଚ୍ଚା ଓ ଗଳଦ୍‌ଘର୍ମ ଭାଷଣରେ ଲୋକେ ଚମତ୍କୃତ ହେଲେ ।

ଓଡିଶାର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ , ବକ୍ତାଙ୍କ ଭଞ୍ଜ ସାହିତ୍ୟର ବିଶ୍ଳେଷଣ ଓ ସଂଗୀତ ମୟ ଭାଷଣରେ ସେମାନେ ନିଜ ଭାଷା ସାହିତ୍ୟ ଓ ସଂସ୍କୃତିକୁ ଲୋକେ ଚିହ୍ନିଲେ । ଏପରି ଆମର ଅତୀତ ଅଛି ଜାଣି ନିଜେ ଗର୍ବିତ ହେଲେ ।

ମୋର ମନେ ପଡେ କଲେଜିଏଟ୍ ସ୍କୁଲରେ ହେଉଥିବା ସଭାମାନଙ୍କ କଥା । ସଭା ଆରମ୍ଭରୁ ଶଂଖ ଓ ଯୋଡି ମହୁରୀ ବାଜି ଚାଲି ଥିବ । ଏହାହିଁ ତ ଥିଲା ଉତ୍କଳୀୟ ପର୍ବ ପର୍ବାଣୀର ପ୍ରଥମ ପ୍ରାରମ୍ଭିକ ସଂକେତ । ଏପରି ଜାତୀୟ ପରଂପରା ଅନୁସାରେ ଅନ୍ୟ କୌଣସି ସଭା ଆରମ୍ଭ ହେଉଥିବ ବୋଲି ମୋର ହୃଦ୍‌ବୋଧ ହୁଏ ନାହିଁ ।

ପ୍ରତ୍ୟହ ସଭା ଶେଷରେ ପରିବେଷିତ ହୁଏ ପାଲା, ବା ଦାସକାଠିଆ, ଗୋଟିପୁଅ ନୃତ୍ୟ, ଓଡିଶୀ ନୃତ୍ୟ । ସଭା ଆରମ୍ଭ ପୂର୍ବରୁ ପ୍ରତ୍ୟହ ସ୍କୁଲ ଛାତ୍ର ଛାତ୍ରୀଙ୍କ ମଧ୍ୟରେ ସପ୍ତାହ ବ୍ୟାପୀ ଓଡିଶୀ ଓ ଛାନ୍ଦ ପ୍ରତି ଯୋଗିତା ହୁଏ । ସାତ ଦିନର ମୂଲ୍ୟାଙ୍କନକୁ ମିଶାଇ ତାଙ୍କୁ ପୁରସ୍କୃତ କରା ଯାଏ । ଏତଦ୍ ବ୍ୟତୀତ ଜୟନ୍ତୀ ସପ୍ତାହ ମଧ୍ୟରେ ପଡିଥିବା ରବିବାର ଦିନ ସ୍ୱତନ୍ତ୍ର ଓଡିଶୀ ଓ ଛାନ୍ଦ ପ୍ରତି ଯୋଗିତା , ବକ୍ତୃତା ପ୍ରତିଯୋଗିତା ମଧ୍ୟ ହୋଇ ଥାଏ । ଉଦ୍‌ଯାପନୀ ଉତ୍ସବ ଦିନ କୃତୀ ପ୍ରତିଯୋଗୀଙ୍କୁ ପୁରସ୍କାର ପ୍ରଦାନ କରା ଯାଏ ।

୧୯୪୭ ମସିହାର ଭଞ୍ଜ ଜୟନ୍ତୀର ସଭାପତି ଭାଷଣ ପ୍ରସଙ୍ଗରେ ବାପା କହିଥିଲେ- 'ମୋର ଅଶେଷ କଷଣ ମୟ ଜୀବନ ମା କଳିଙ୍ଗ ଭାରତୀର ବର୍ତ୍ତମାନ ଦୁର୍ଦ୍ଦଶାର ଏକ ସଂକ୍ଷିପ୍ତ ସାର ସଂଗ୍ରହ । ମାଆଙ୍କ ବନ୍ଦନା ସ୍ମରଣ କରି ମୁଁ ଯେତେ ବ୍ୟାକୁଳ ହୋଇ ଉଠେଁ , ମୋର ଅସହ୍ୟ ଭୌତିକ ଚଷଣ ତା ତୁଳନାରେ ମୋତେ କିଛି ବାଧେ ନାହିଁ ।'

୧୯୪୮ ବେଳକୁ ଭଞ୍ଜ ଜୟନ୍ତୀ ରେ ପାଲା ଦାସକାଠିଆ ଓ ଗୋଟି ପୁଅ ନୃତ୍ୟ ପ୍ରଭୃତି ପରିବେଷିତ ହେଲା । ଏହା ଯେ ଉତ୍କଳୀୟ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ତାହା ଆଲୋଚନା ମଧ୍ୟମରେ ପ୍ରତିପାଦିତ କରା ଯାଉ ଥିଲା ।

୧୯୫୩ ମସିହାରେ କଟକସ୍ଥ କଲେଜିଏଟ୍ ସ୍କୁଲରେ ଭଞ୍ଜ ଜୟନ୍ତୀର ଭବ୍ୟ ରୂପ ପ୍ରକଟିତ ହେଲା । ସେଥର ଅଭ୍ୟର୍ଥନା କମିଟିର ସଭାପତି ଥିଲେ ଡାକ୍ତର ବନବିହାରୀ ପଟ୍ଟନାୟକ । ଆଠ ଦିନ ବ୍ୟାପି ଏହି ଉତ୍ସବରେ ପଞ୍ଚମ ଦିନରେ ଓଡିଶାର ତତ୍କାଳୀନ ରାଜ୍ୟପାଳ ସୟଦ ଫଜଲ ଅଲ୍ଲି ଏବଂ ଅଷ୍ଟମ ଦିନରେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ପୁରୋଧା ଆସନ ଅଳଂକୃତ କରିଥିଲେ । ଏତଦ୍ ବ୍ୟତୀତ ଅନ୍ୟ ଯେଉଁ ଗଣ୍ୟମାନ୍ୟ ସାହିତ୍ୟିକ ଏଥିରେ ସେମାନଙ୍କ ଭାଷଣ ଉପସ୍ଥାନ କରିଥିଲେ ସେମାନଙ୍କ ମଧ୍ୟରେ ଅଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ପର୍ଶୁରାମ ମିଶ୍ର, ଚିନ୍ତାମଣି ଆଚାର୍ଯ୍ୟ, ସୁଧାକର ପଟ୍ଟନାୟକ , ପ୍ରାଣ ନାଥ ମହାନ୍ତି,

ବୀରକିଶୋର ରାୟ ଓ ପରମାନନ୍ଦ ଆଚାର୍ଯ୍ୟ ପ୍ରମୁଖ । ବିଶିଷ୍ଟ ଆଇନ୍‌ଜୀବୀ ମଧୁସୂଦନ ମହାନ୍ତି କଳିଙ୍ଗ ଭାରତୀ ସହ ସଂଶ୍ଳିଷ୍ଟ ଥିଲେ ।

ସେତେବେଳକୁ ଓଡିଆ ସମ୍ଭ୍ରାନ୍ତ ପରିବାରର କନ୍ୟାମାନେ ମଞ୍ଚ ଉପରେ ନୃତ୍ୟ ପରିବେଷଣ କରିବାକୁ ଆଗେଇ ଆସୁ ନଥିଲେ । ମାତ୍ର ବାପାଙ୍କ ଦୃଢ଼ ଆହ୍ୱାନରେ ପ୍ରଭାବିତ ହୋଇ ଅନେକ ପରିବାରର ଝିଅ ମାନେ ଭଞ୍ଜମଣ୍ଡପରେ ନୃତ୍ୟ ପରିବେଷଣ ପାଇଁ ଆଗେଇ ଆସିଲେ । ମୋର ସ୍ମରଣ ଥିବା ମହିଳାମାନେ୍ ହେଉଛନ୍ତି- ସଂଯୁକ୍ତା ପାଣିଗ୍ରାହୀ, ପ୍ରିୟମ୍ବଦା ମହାନ୍ତି ( ବର୍ତ୍ତମାନ ହେଜ୍ମାଦି), ମୀନାକ୍ଷୀ ନନ୍ଦ, ମିନତି ମିଶ୍ର, କୁଙ୍କୁମ ମହାନ୍ତି, କୃଷ୍ଣପ୍ରିୟା ନନ୍ଦ ପ୍ରଭୃତି । କହିବା ଅନାବଶ୍ୟକ ଏମାନେ ପରବର୍ତ୍ତୀ କାଳରେ କେବଳ ଓଡିଶାରେ ନୁହେଁ ନୃତ୍ୟ ପରିବେଷଣ କରି ବି ରେ ଉତ୍କଳୀୟ ସଂସ୍କୃତିକୁ ପ୍ରତିଷ୍ଠିତ କରି ପାରିଛନ୍ତି । ଏଥିରୁ ବାପାଙ୍କ ସଂଗଠନ କୌଶଳ ବେଶ୍ ହୃଦୟଙ୍ଗମ କରି ହୁଏ ।

୧୯୫୩ ମସିହାରେ ଆଉ ଏକ ଘଟଣା ଘଟିଲା । ସେ ବର୍ଷ 'ଲାବଣ୍ୟବତୀ' ନୃତ୍ୟନାଟିକା ପରିବେଶିତ ହେବାର ଥାଏ । ସଂଗୀନ ପରିଚାଳନା ଦାୟିତ୍ୱ ନେଇ ଥାଆନ୍ତି ସିଂହାରୀ ଶ୍ୟାମସୁନ୍ଦର କର । ସେ ହିନ୍ଦୁସ୍ଥାନୀ ଶୈଳୀରେ ସଂଗୀତ ନିର୍ଦ୍ଦେଶନା ଦେବାରୁ ରଜତଭାଇ ତାର ପ୍ରତିବାଦ କଲେ । ଲାବଣ୍ୟବତୀ କାବ୍ୟର ନାଟ୍ୟ ରୂପ ଅଂକନ କରିଥିବା ଉଦୟନାଥ ମିଶ୍ର କହିଲେ ଯେ ଏପରି ପ୍ରାଚୀନ ରୀତିରେ ସଂଗୀତ ପରିବେଷଣ କଲେ ଲୋକେ ତୁମକୁ ଯୋତା ଫିଙ୍ଗିବେ ।

କଥା ବାପାଙ୍କ କାନକୁ ଗଲା । ସେ କହିଲେ, No compromise with principle"। ଉଦୟନାଥ ବାବୁ ଭଞ୍ଜଙ୍କ ପ୍ରତି ଆକ୍ଷେପ କରିଥିବାରୁ ଦୁଃଖ ପ୍ରକାଶ କଲେ । ସିଂହାରୀ ଶ୍ୟାମ ସୁନ୍ଦର କର ବିଦାୟ ନେଲେ । ପରେ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପାରଂପରିକ ରୀତିରେ ସଂଗୀତ ଶିକ୍ଷା ଦେଲେ ।

୧୯୫୪ ମସିହା ଠାରୁ ଭଞ୍ଜ ଜୟନ୍ତୀ ସମେତ ସାରସ୍ୱତ ମହୋତ୍ସବ ପାଳନ ଅୟମାରମ୍ଭ ହେଲା । ଏହା ସରସ୍ୱତୀ ପୂଜା ଠାରୁ ଆରମ୍ଭ ହୋଇ ଥାଏ । ଏହି ସମାରୋହରେ ମଧ୍ୟ ଯୁଗୀୟ କବି ସାରଳା ଦାସଙ୍କ ଠାରୁ ଆରମ୍ଭ କରି ଦୀନକୃଷ୍ଣ ଦାସ, ବନମାଳୀ ଦାସ, କବିସୂର୍ଯ୍ୟ ବଳଦେବ , ଗୋପାଳକୃଷ୍ଣ ପଟ୍ଟନାୟକ ,ଗୌରଚରଣ ଅଧିକାରୀ ପ୍ରଭୃତିଙ୍କ ସ୍ମୃତି ପୂଜା କରା ଯାଉ ଥିଲା । ଏହି ସ୍ମୃତିଚାରଣ ବା ଗୀତ ନୃତ୍ୟ ପ୍ରଭୃତି ସାଂସ୍କୃତିକ ବିନୋଦନ କେବଳ ଲଘୁ ଆମୋଦ ପ୍ରମୋଦ ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା ମାଧ୍ୟମରେ ପାରଂପରିକ କଳାର ଉଦ୍ଦାମ ପ୍ରଚାର ଓ ପ୍ରସାର ହେଉଛି କଳିଙ୍ଗ ଭାରତୀର ଲକ୍ଷ୍ୟ । କଳା ସଂଗୀତ ମୟ ପ୍ରାଚୀନ ପରଂପରାର ଗୌରବ ପ୍ରତି ଶିକ୍ଷିତ

ପୁନର୍ଜାଗରଣରେ ବୀର ଓଡିଆ ହୁଙ୍କାର ତୋଳି ଉଠିଲା । କ୍ରମେ ଭଞ୍ଜ ଆନ୍ଦୋଳନ ଏକ ଜାତୀୟ ଉତ୍ସବର ରୂପ ନେଲା ।



## ପାରିବାରିକ ଜୀବନ :

ବାପା ଏକ ବଡ ଯୌଥ ପରିବାରୁ ଆସିଥିଲେ । ଏଣୁ ପାରିବାରିକ ଜୀବନ ତାଙ୍କୁ ଭାରି ଭଲ ଲାଗୁ ଥିଲା । ସେତେବେଳେ ତାଙ୍କର ଭାଉଜ ଥିଲେ ମାତା ସଦୃଶ । ମାତ୍ର ଏହି ମହୀୟସୀ ମହିଳାଙ୍କ ଆକସ୍ମିକ ବିୟୋଗ ତାଙ୍କୁ ମ୍ରିୟମାଣ କରିଥିଲା । ପୁଣି ପ୍ରେୟସୀର ଅନ୍ୟତ୍ର ବିବାହ ଏବଂ ଆକସ୍ମିକ ବିୟୋଗ ତାଙ୍କୁ ବିଷାଦ ଗ୍ରସ୍ତ କରିଥିଲା । ପରବର୍ତ୍ତୀ କାଳରେ ପିତୃ ମାତୃ ବିୟୋଗ ତାଙ୍କୁ ଆହୁରି ବିଷାଦ ଗ୍ରସ୍ତ କରି ଦେଲା । ବାହାର ଜୀବନରେ ସାହିତ୍ୟ ଭିତରେ ବୁଡି ରହୁଥିଲେ ମଧ୍ୟ ଏକୁଟିଆ ବେଳେ ସେ ଭାରି ନିଃସଙ୍ଗ ଅନୁଭବ କରୁଥିଲେ । କିନ୍ତୁ ତାଙ୍କ ଜୀବନକୁ ନୂତନ ମୋଡରେ ଠିଆ କରାଇଲେ ମୋର ମାଆ ।

ଓଡିଶା ସେକ୍ରେଟେରିଏଟ୍‌ର ଭୂତ ପୂର୍ବ ରେଜିଷ୍ଟ୍ରାରର, ପୁରୀ ଜଗନ୍ନାଥ ମନ୍ଦିରର ପ୍ରଶାସକ ପୁରୀ ଜିଲା ଚାରିଶ୍ରୀ ଗ୍ରାମର ଜଗତ ବଲ୍ଲଭ ଦାସଙ୍କ କନିଷ୍ଠା ଭଗ୍ନୀ ନେତ୍ରମଣୀ ଦେବୀ ସହିତ ୧୯୩୮ ମସିହାରେ ତାଙ୍କ ବିବାହ ହୁଏ । ସେ ହେଉଛନ୍ତି ମୋର ମାଆ । ମାଆ ଆବାଲ୍ୟରୁ ପିତୃମାତୃହରା ଥିଲେ । ତଥାପି ସେ ଭାଇ ଭାଉଜଙ୍କ କୋଳରେ ଅତ୍ୟନ୍ତ ଅଲ୍ୟଳରେ ପାଳିତ ହୋଇଥିଲେ । ସେ ତାଙ୍କର ସରଳତା, ନିଷ୍କପଟତା, ଅମାୟିକ ବ୍ୟବହାର ଓ ଭଗବତ୍ ଚେତନା ସହ ପତିପରାୟଣତା ଓ ସନ୍ତାନ ବାତ୍ସଲ୍ୟ ପ୍ରଭୃତି ଦୁର୍ଲଭ ଗୁଣରେ ଶତ୍ରୁକୁ ମଧ୍ୟ ବଶୀଭୂତ କରି ପାରୁଥିଲେ । ଦୁଃଖୀର ବେଦନାରେ ତାଙ୍କର ହୃଦୟ କାନ୍ଦେ । ତାର ଏହିଭଳି ଅସାଧାରଣ ଗୁଣାବଳୀ ବାପାଙ୍କ ଜୀବନକୁ ଏପରି ଆବୋରି ନେଇଥିଲା ଯେ ବାପା ତାଙ୍କୁ ତାଙ୍କ ଜୀବନ ଶ୍ମଶାନର ତୁଳସୀ ବୋଲି ଅଭିହିତ କରୁଥିଲେ ।

ବାପା କହୁ ଥାଆନ୍ତି ତାଙ୍କ ମହାଦାନୀ - ପିତୃଦେବଙ୍କ ଅନ୍ତେ ଅନ୍ୟପରିବାରରୁ ଆଉଜଣେ ମହାଦାନୀ ତାଙ୍କ ପରିବାରକୁ ଆସିଛନ୍ତି, ସେ ହେଉଛନ୍ତି ମୋର ମାଆ । ମାଆ ଏତେ ଦୂର ଅସୂର୍ଯ୍ୟଂପଶ୍ୟା ଥିଲା ଯେ ସେ କୌଣସି ସାଧାରଣ ସଭା ସମିତି ବା ଅନୁଷ୍ଠାନକୁ ପ୍ରାୟ ଯାଉ ନଥିଲା । ସେ ଥିଲା କୃଷ୍ଣ ପ୍ରେମମୟୀ ପରମ ବୈଷ୍ଣବୀ । କୃଷ୍ଣ ହିଁ ତାଙ୍କର ସର୍ବମୟ ଥିଲା । ଏଣୁ କେବଳ ସେତେବେଳେ କବିଚନ୍ଦ୍ର କାଳୀଚରଣଙ୍କ 'ରାସଲୀଳାକୁ' ସେ ସାତ ଦିନ ବ୍ୟାପି ଦେଖି ଯାଉଥିଲା । ରାସଲୀଳାର ଭାବ ସଂପଦରେ ସେ ଅଧିକାଂଶ ସମୟ ନିମଜ୍ଜିତ ରହୁଥିଲା । ରାସ ଗୀତ ପ୍ରଭୃତିରେ ତାହାର ଏହି ଆଗ୍ରହ ଦେଖି ତତ୍କାଳୀନ

ରାସ ଗାୟକ ଦୁର୍ଲଭ ସିଂ ଓ ସୁମତୀ ଦେବୀ ପ୍ରଭୃତି ଆମ ଘରକୁ ଆସି ମାଆକୁ ଗୀତ ଶୁଣାଉଥିଲେ ।

ମାଆ ଜଣେ ସୁକଣ୍ଠୀ ଗାୟିକା ଥିଲା । ତାକୁ ହାରମୋନିୟମ ଶିଖାଇବା ପାଇଁ ଯମୁନା ଆଈ ନାମରେ ଜଣେ ରାଜ ବଂଶୀୟ ନିଯୁକ୍ତ ହୋଇଥିଲେ । ମୋର ମାଆକୁ ବାପାଏତେ ଭଲ ପାଇଥିଲେ ଯେ ତା ପାଇଁ ଷୋହଳ ଖଣ୍ଡି ସଜ କରି ରଖିଥିଲେ । ମାଆକୁ ସେବା ଓ ସାହାଯ୍ୟ କରିବା ପାଇଁ ସେତେବେଳେ ଦାସୀ ପରିବାରୀ ପ୍ରଭୃତି ବହୁ ଲୋକ ନିଯୁକ୍ତ ଥିଲେ । ଜଣେ ସରକାରୀ କର୍ମଚାରୀ ଭାବେ ସେ ସେକାଳରେ ସାତଶହ ଟଙ୍କା ଦରମା ପାଉଥିଲେ । ଏଣୁ ତାଙ୍କୁ ଖର୍ଚ୍ଚ କରିବାରେ କିଛି ଆର୍ଥିକ ପ୍ରତିବନ୍ଧକ ନଥିଲା ।

କଟକ ଘରେ ବହୁ ବର୍ଷ ରହିବା ପରେ ମାଆ ଆମ ଗାଆଁକୁ ଯାଇଥିଲା । ସେତେବେଳକୁ ଆମେ ସମସ୍ତେ ବଡ ହୋଇଗଲୁଣି । ତଥାପି ମାଆ ପ୍ରଥମ ଥର ପାଇଁ ନିଜ ଶାଶୁ ଘର ଗାଆଁକୁ ଯାଇଥିବାରୁ ବଡମାମୁଁ ଓଡିଆ ପାରଂପରିକ ରୀତିରେ ଗାଆଁକୁ ଭାର ପଠାଇ ଥିଲେ । ସେ ଭାରମାନ ଏକ ହାତୀ ଉପରେ ଲଦା ହେଇ ଆସିଥିଲା । ଲୋକେ କହନ୍ତି ,ଆମ ଗାଁ ପାଖରେ ଚନ୍ଦକା ଜଙ୍ଗଲ ଥିବାରୁ ସେମାନେ ବହୁତ ହାତୀ ସିନା ଦେଖିଥିଲେ ମାତ୍ର ଗାଆଁକୁ ଭାର ନେଇ ସେ ଆସିଥିଲା ପ୍ରଥମ ହାତୀ ।

ବାପା ଓ ମାଆମାନେ ସିନା ନିଜ ସନ୍ତାନ ଭିତରେ କିଛି ବଡ ସାନ ଭେଦ ରଖନ୍ତି ନାହିଁ , ମାତ୍ର ମୋର ବାପା ମାଆ 'କଳିଙ୍ଗ ଭାରତୀର' ସକଳ ସାଧକଙ୍କୁ ସେମାନେ ନିଜ ପୁଅ ବା ତାହାଠାରୁ ଅଧିକ ବୋଲି ଭାବୁଥିଲେ । ମମତାରେ ବଢ଼ାଇଥିବା ଏହି ସନ୍ତାନମାନଙ୍କର ରାଗ, ରୋଷ, ବା କ୍ରୋଧ, ଅଭିମାନ କୁ ସେମାନେ ଶରୀରରେ ଚନ୍ଦନ ଭଳି ଲେପି ନେଉଥିଲେ । ଏଠାରେ ଗୋଟିଏ ଘଟଣା ମୋର ମନେ ପଡୁଛି ।

ଥରେ ରଜତ ଭାଇ ଘରେ ପହଞ୍ଚି ଦେଖିଲେ ମାଆ କୌଣସି କାମରେ ପଡୋଶୀ ଘରକୁ ଯାଇଛି । ରଜତ ଭାଇ ଏଥିରେ କ୍ରୋଧାନ୍ୱିତ ହେଲେ । ସେ ଆସିଲେ ପ୍ରଥମେ ଠାକୁର ଘରକୁ ଆସିବେ । ମାଆ ଉପସ୍ଥିତିରେ ଗୀତଗୋବିନ୍ଦ ଓ ଜଗନ୍ନାଥ ଜଣାଣ ଗାଇ ସାରିଲେ ମାଆ ହସ୍ତରୁ ପାଦୁକ ଓ ବିଡିଆ ପାନ ଗ୍ରହଣ କରିବେ । ଜଗତବାସୀ ତାଙ୍କ ଗୀତ ନଶୁଣିଲେ ସେଥିପ୍ରତି ତାଙ୍କ ଭ୍ରୁକ୍ଷେପ ନଥାଏ । ତାଙ୍କ ଗୀତର ଶ୍ରୋତା ଜଗନ୍ନାଥ ଓ ମାଆ । ସେ ଏହିଗୀତ ଶୁଣାଇ ଆତ୍ମତୃପ୍ତି ଲାଭ କରନ୍ତି ।

ମାତ୍ର ସେଦିନ ଏହାର ବ୍ୟତିକ୍ରମ ଘଟିଲା । ଏଣୁ ସେଦିନ ମାଆଙ୍କୁ ନଦେଖି ସେ ତତ୍କ୍ଷଣାତ୍ ପ୍ରସ୍ଥାନ ଉଦ୍ୟମ କଲେ । ବାପା ଏହା ଜାଣି ପଡୋଶୀ ଘରୁ ମାଆଙ୍କୁ ଡାକି ପଠାଇଲେ । ମାଆ ତୁରନ୍ତ ଆସି ତାଙ୍କୁ ବାପ , ଧନ କହି ଫାଟକ ପାଖରୁ ଫେରାଇ ଆଣିଥିଲା ।

ସେଦିନ ବାପା କହିଥିଲେ, ' ତୁମେ ତ ଜାଣ ରଜତକ୍ଷଣ କୋପୀ । ଏ ଘରେ ତୁମର ଅନୁପସ୍ଥିତି ସେ ସହି ପାରେ ନାହିଁ । ସେ ଆସିଲା ବେଳକୁ ତୁମର ଘରେ ରହିବା ଉଚିତ ।' କହିବା ନିଷ୍ପ୍ରୟୋଜନ ମାଆର ଜୀବଦ୍ଦଶାରେ ଏପରି ଘଟଣାର ପୁନରାବୃତ୍ତି ଘଟି ନଥିଲା ।

ସେତେବେଳେ ଶରତ ଭାଇ ଏମ୍. ଏ ପଢ଼ିବା ପାଇଁ ଆଲ୍ଲାହାବାଦ ଗଲେ । ସନ୍ଧ୍ୟାବେଳେ ଆସି ବାପା ମାଆଙ୍କ ଠାରୁ ବିଦାୟ ନେଲେ । ସଞ୍ଜ ପରେ ଠାକୁର ନୀତି ଶେଷ କରି ମାଆ ବାରଣ୍ଡାରେ ବସିଛି । ମୁଁ ଦେଖିଲି ମାଆର ଆଖିରୁ ଲୁହ ଧାର ଝରି ଚାଲିଚି । ସଦା ହର୍ଷୋତ୍‌ଫୁଲ୍ଲ ମାଆର ଏ ଅବସ୍ଥା! ଦେଖି ମୁଁ ଅବାକ୍ ହୋଇ ବାପାଙ୍କୁ ଜଣାଇଲି । ବାପା ବୋଧହୁଏ ଏହାର କାରଣ ଜାଣି ପାରିଥିଲେ । ସେ ମାଆକୁ ବୁଝେଇ କହିଲେ, ସନ୍ତାନର ବିଦେଶ ଗମନରେ ମାତୃ ହୃଦୟ ସନ୍ତାପିତ ହୁଏ । ମାତ୍ର ଆମର କାମନା ସେ କିପରି କୃତ କାର୍ଯ୍ୟ ହୋଇ ସର୍ବ କୁଶଳରେ ଫେରିଆସୁ । ବର୍ତ୍ତମାନ ଶରତ ଗାଡିରେ ବସିଥିବ । ତମେ ଏପରି କାନ୍ଦିଲେ ଶରତର ମନ ବିଚଳିତ ହେବ । ମୁଁ ହେଉଛି ଏଘଟଣାର ପତ୍ୟକ୍ଷଦର୍ଶୀ ।

ମାଆଙ୍କ ବାତ୍ସଲ୍ୟ ମମତାରେ ବନ୍ଧା ପଡିଥିବା କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀ ତାଙ୍କୁ ଅତିଶୟ ଭକ୍ତି କରନ୍ତି । ପ୍ରଫେସର ହୃଦାନନ୍ଦ ରାୟ 'ବିଚ୍ଛନ୍ଦ ଚରଣ ପଟ୍ଟନାୟକ' ପୁସ୍ତକରେ ମାଆଙ୍କ ଯେଉଁ ଗୁଣାବଳୀ ବର୍ଣ୍ଣନା କରିଛନ୍ତି, ତାହା କେବଳ ତାଙ୍କ ବ୍ୟକ୍ତିଗତ ଅନୁଭୂତି ନୁହେଁ- ଏହା କଳିଙ୍ଗ ଭାରତୀର ପ୍ରତ୍ୟେକ ସାଧକର ମନକଥା

'ବିଚ୍ଛନ୍ଦ ଚରଣଙ୍କ ସ୍ନେହମୟୀ ଧର୍ମପତ୍ନୀ ନେତ୍ରମଣି ଦେବୀଙ୍କ ଅପାଶୋରୋ ଅମାୟିକ ବାତ୍ସଲ୍ୟ ଲାଭ କରି କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀ ତାଙ୍କୁ ଗଭୀର ସମ୍ମାନବୋଧର ସହିତ ମାଉସୀ ବୋଲି ସମ୍ବୋଧନ କରୁଥିଲେ । ପିଲାଏ ଘରକୁ ଆସିବା ଡେରି କଲେ ଜନନୀ ଯେପରି ଦାଣ୍ଡ ବାଡି ହୁଏ କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀ ମାନଙ୍କ ଅନୁପସ୍ଥିତିରେ ନେତ୍ରମଣି ଦେବୀ ସେହି ଭଳି ବ୍ୟାକୁଳିତା ହେଉଥିଲେ । କଳିଙ୍ଗ ଭାରତୀ ପରିବାର ବୋଧକୁ ଗଢ଼ି ତୋଳିବା ଲାଗି ନେତ୍ରମଣି ଦେବୀଙ୍କ ଅତୁଳନୀୟ ଅବଦାନ ରହିଛି । ସେ ନିଜକୁ ପରଦା ଅନ୍ତରାଳରେ ତଥା ବୈଷ୍ଣବୀୟ ନିରଭିମାନତାରେ ସବୁବେଳେ ଘୋଡାଇ ରଖୁଥିଲେ । କିନ୍ତୁ ଭୂଗର୍ଭର ଅନ୍ତରାଳ ଅବସ୍ଥା ଭୂପୃଷ୍ଠକୁ ନିୟନ୍ତ୍ରିତ କରୁଥିଲା ।'

ବାପାଙ୍କ ବିବାହର ତିନି ବର୍ଷରେ ୧୯୪୧ ମସିହାରେ ଆମର ବଡ ଭାଇ ରାଧାଗୋବିନ୍ଦ ଜନ୍ମ ହୁଏ । ମାତ୍ର ସାଢ଼େ ତିନିମାସ ମର୍ତ୍ତ୍ୟଲୀଳା କଲା ପରେ ସେ ପରପୁରକୁ ବାହୁଡି ଯାଇଥିଲା ସିନା ଆମ ପରିବାରରେ ରଖି ଯାଇଥିଲା ଏକ ଅପୂରଣୀୟ କ୍ଷତ । ବାପା ଏହି ପ୍ରଥମ ପୁତ୍ରଲାଭ କରି ଏତେ ଆତ୍ମ ହରା ହୋଇ ଯାଇଥିଲେ ଯେ ତାର

ବିଚ୍ଛେଦରେ ସେ ସଂପୂର୍ଣ୍ଣ ଭାଙ୍ଗି ପଡିଥିଲେ । ସେ କିଛି ସମୟ ପାଇଁ ଅର୍ଦ୍ଧଚେତନ ଅବସ୍ଥାରେ ରହିଥିଲେ । ଏପରିକି ସେ ମୃତ ଶିଶୁକୁ ସଂସ୍କାର ପାଇଁ କାହାକୁ ହସ୍ତାନ୍ତର କରୁ ନଥିଲେ । ଲୋକେ କହନ୍ତି ଗୋପାଳ ଚନ୍ଦ୍ର ପ୍ରହରାଜ କଳ କୌଶଳ କରି ବାପାଙ୍କ ଠାରୁ ସେ ଶବ ଆଣି ସଂସ୍କାର କରାଇଥିଲେ । ସେହି ସନ୍ତାନର ସ୍ମୃତିକୁ ସେ ତାଙ୍କ କବିତା 'ମୋ ସୁନା ଚାନ୍ଦ'ରେ ଜୀବନ୍ତ କରି ଯାଇଛନ୍ତି ।

ମୁଖ ପଦ୍ମ ତୋ ତିଳେ ନୋହିଲା ମ୍ଲାନ
ଉଠେ ଖେଳାଇ ହସ ଗଲୁ ଶ୍ମଶାନ
ହରି ନାମ ଶୁଣିଲୁ
ପାଦୁକ ପାଣି ପିଇ ଆଖି ମୁଦିଲୁ ।୧୨।

ବାପାଙ୍କ ଅପତ୍ୟ ସ୍ନେହ ଅନାବିଳ ଥିଲା । ସେ ଏ ବିଷୟରେ ପର ଆପଣା ଜ୍ଞାନ ରଖୁ ନଥିଲେ । ବାପା ସିନା ଗୋଟିଏ ପୁତ୍ର ହରାଇଲେ ମାତ୍ର ସାରା ଓଡିଶାରେ ସେ ଶତ ଶତ ସନ୍ତାନ ଛାଡି ଯାଇଛନ୍ତି ଯେଉଁ ମାନେ ବାପାଙ୍କ କୃତିତ୍ୱକୁ ସଭା ସମିତି ପତ୍ର ପତ୍ରିକାରେ ପ୍ରକାଶ କରି ତାଙ୍କ ସ୍ମୃତି ତର୍ପଣ କରୁଛନ୍ତି । ସେମାନେ ହେଉଛନ୍ତି କଳିଙ୍ଗଭାରତୀର ସାଧକ ବର୍ଗ ।

ଏହାର ଦୁଇ ବର୍ଷ ପରେ ମୋ ଭାଇ ପୁରୁଷୋତ୍ତମ ପଟ୍ଟନାୟକଙ୍କ ଜନ୍ମ । ତା ପରେ ପରେ ମୁଁ ଓ ମୋର ସାନ ଭଉଣୀ ଜନ୍ମ ହୋଇଥିଲୁଁ । ୨୮ ବର୍ଷ ବୟସରେ ସାନ ଭଉଣୀ ଶୁଭ ଲକ୍ଷ୍ମୀ( ଅମା ) ଇହଧାମ ତ୍ୟାଗ କଲା ସିନା ତା ବହୁ ଆଗରୁ ବାପା ସେ ପୁରକୁ ବାଟ କାଟି ସାରିଥିଲେ । ନୋହିଥିଲେ ସେ ବିଚ୍ଛେଦ ତାଙ୍କୁ କିପରି ବାଧି ଥାଆନ୍ତା କଳ୍ପନା କରା ଯାଇ ନପାରେ ।

ଭାଇଙ୍କ ଜନ୍ମପରେ ନିଜର ବଂଶ ରକ୍ଷା ସହ ବାର୍ଦ୍ଧକ୍ୟରେ ସାହାରା ମିଳିଗଲା ବୋଲି ସେ ବିଶ୍ୱାସ କରିଥିଲେ । ସେତେବେଳେ ସେ ଭାଇଙ୍କୁ ତାଙ୍କର ଅନ୍ୟତମ ଆଶା ବାଡି ବୋଲି ଭାବି ନେଇଥିଲେ-

ଅଛି ମୋର ନେତ୍ର ମଣି ହେ ପୁରୁଷୋତ୍ତମ
ମାୟାଧର ହୃଦାନନ୍ଦ କି କରିବ ଚମ ?
ମାୟା ପଟଳକୁ ଫେଇ
ଆଲୋକ ଧାମକୁ ବାଟ ନେବ ହେ କଢ଼ାଇ

ଅବଶ୍ୟ ଏପଦମାନ ଭକ୍ତୀୟ ଆଦର୍ଶରେ ଦ୍ୱିଅର୍ଥବୋଧକ ହୋଇଥିଲେ ହେଁ ବାପା ପ୍ରକାରାନ୍ତରେ ଜନ୍ମିତ ସନ୍ତାନ, କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀ ଏବଂ ଅନୁଚର ସମେତ ଧର୍ମ ପତ୍ନୀଙ୍କୁ ଗୋଟିଏ ସରଳ ରେଖାରେ ଅବସ୍ଥାପିତ କରିଛନ୍ତି ।

### ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ଭାଇଙ୍କ ନାମ ପୁରୁଷୋତ୍ତମ ଦେଇଥିଲେ ହେଁ ବାପା ତାଙ୍କୁ ବାବନା ବୋଲି ଡାକୁଥିଲେ । ବାପା ଉଭୟ ପିତା ମାତା ସ୍ନେହ ଦେଇ ଦୁଇ ହାତ ପାପୁଲିରେ ବସାଇ ଥିଲେ । ଆମ ଦେହରେ ଧୂଳି ଲାଗିବ ନାହିଁ ସେଥିପାଇଁ ଯଥୋଚିତ ବ୍ୟବସ୍ଥା କରିଥିଲେକାରଣ ଆମଦେହରେ ଧୂଳି ଲାଗିଲେ ସେ କୁଳିଶ ପ୍ରହାରର କଷ୍ଟ ଅନୁଭବ କରୁଥିଲେ । ପିଲା ଦିନେ ଭାଇ ଅଝଟରେ ଖାଦ୍ୟ ଗ୍ରହଣ କରନ୍ତି ନାହିଁ । ତାଙ୍କୁ ଖୁଆଇବା ପାଇଁ ଜଣେ ସ୍ୱତନ୍ତ୍ର ଲୋକ ନିଯୁକ୍ତ ଥିଲା । ସେ ବାଡି ସାରା ବୁଲାଇ ତାଙ୍କୁ ଖୁଆଇ ଦିଏ । ଭାଇ ବଂଶୀ ସ୍ୱର ଭଲ ପାଉଥିଲେ ବୋଲି ତାଙ୍କ ପାଇଁ ଗୋଟିଏ ରୂପାର ବଂଶୀ ନିର୍ମିତ ହୋଇଥିଲା ।

ଥରେ ଭାଇ ଫୁଟବଲ ଖେଳରେ ଆହତ ହେଲେ । ଏହା ଶୁଣି ବାପା ବ୍ୟସ୍ତ ହୋଇ ପଡିଲେ । ତାଙ୍କୁ ଉପଯୁକ୍ତ ଡାକ୍ତର ଚିକିତ୍ସା ବନ୍ଦୋବସ୍ତ କଲା ପରେ ମଧ୍ୟ ବାପା ସ୍ଥିର ହୋଇ ପାରି ନଥିଲେ । ସେ ଦିନ ରାତ୍ରିରେ ତାଙ୍କ ଲେଖନୀ ନିଥର ହୋଇ ଯାଇଥିଲା ।

ମୋର ଜନ୍ମ ବିଷୟରେ ବାପା କହନ୍ତିଯେ ମୁଁ ଜନ୍ମହେବା ଦିନ ଡମପଡାର ରାଜା ଅମରେନ୍ଦ୍ର ମାନସିଂହ ଉପସ୍ଥିତ ଥିଲେ । ସେ କୁଆଡେ ମୋର ଜାତକ ଗଣନା କରି ମୋର ନାମ ଦେଇଥିଲେ ରାଜଲକ୍ଷ୍ମୀ । କିନ୍ତୁ ବାପା ମୋତେ ରାଜନା ବୋଲି ଡାକୁଥିଲେ । ବେଳେବେଳେ ଅତି ଆଦରରେ ଝଇନା, ଝଟିଆ ପ୍ରଭୃତି ଗେହ୍ଲାରେ ଡାକି ଆନନ୍ଦ ପାଉଥିଲେ । ଏବେ କେହି ସେକାଳର ପୁରୁଣା ଲୋକ ଆମକୁ ସେହି ନାମରେ ଡାକିଦେଲେ ମୋର ପୂର୍ବ ସ୍ମୃତି ଜାଗି ଉଠେ । ହୃଦୟ ଭିତର କୋରି ହୋଇ ଯାଏ । ଅମାନିଆ ଅଶ୍ରୁ ଚକ୍ଷୁରେ ଆସିଯାଏ । ଆଃ , ଅତୀତ ଟା କେତେ ମିଠା । ବାପା ମାଆଙ୍କ ସ୍ନେହ କେତେ ମଧୁର । ମାଆର ପଣତ ଆଉ ବାପାଙ୍କ ସ୍ନେହ ବୋଳା ଡାକରେ କି ମାଧୁରିମା ଅଛି ମୁଁ ତାହା ଭାଷାରେ ପ୍ରକାଶ କରି ପାରିବି ନାହିଁ ।

ବାପା ସାନ ଭଉଣୀକୁ ଅମିନା ବୋଲି ଡାକୁଥିଲେ । ସେ କୋଳ ପୋଛା ହୋଇଥିବାରୁ ତାକୁ ଭାରି ଆଦର କରୁଥିଲେ । ଗୋଟିଏ କଥା ମୋର ମନେ ପଡୁଛି - ଥରେ ବାପା ମଝିରାତିରେ ଗୋଟିଏ ରିକ୍ସା କରି ଭୁବନେଶ୍ୱରରୁ ଆସି ପହଞ୍ଚିଲେ । ସେତେବେଳେ ଆଜି ଦିନ ପରି ଭୁବନେଶ୍ୱରକୁ ଗମନା ଗମନ ଏତେ ସ୍ୱଚ୍ଛଳ ଓ ସ୍ୱାଭାବିକ ନଥିଲା । ବାପାଙ୍କ ମନ ଖରାପ ହେଲେ ଏମିତି ଅକସ୍ମାତ୍ ଆସି ପହଞ୍ଚନ୍ତି । ସେ ଦିନ ହଠାତ୍ ଏପରି ଆସିବାରୁ ଆମେ ଚକିତ ହୋଇ ଯାଇଥିଲୁଁ । ସେ ହସିକରି କହିଲେ - 'ମାୟାଧର ମୋତେ ଆମ୍ବ ଖାଇବାକୁ ଦେବାରୁ ମୋର ଅମିନା କଥା ମନେ ପଡିଲା । ସେ ଆମ୍ବ ଖାଇବାକୁ ଭାରି ଭଲ ପାଏ । ଆଉ ଖାଇବାରେ ମନ ଲାଗିଲା ନାହିଁ । ଝୁଡିଏ

ଆୟ ଧରି ପଳେଇ ଆସିଲି ।' ଅମା ଛୋଟ ପିଲା ହେଲେ ହେଁ, ଏକଥା ଶୁଣି ଗର୍ବରେ ଫାଟି ପଡିଥିଲା ।

ମୋର ବିବାହ ପରେ କଳିଙ୍ଗଭାରତୀର ଅଣ ଆନୁଷ୍ଠାନିକ ଅଫିସ୍ ସଂପାଦକ ଦାୟିତ୍ୱ ନେଇଥିଲା ଅମା । କେଉଁଠୁ ଚିଠି ଆସିଲା, କାହାକୁ କ'ଣ ଲେଖା ଯିବ ସବୁ ସେ ସମ୍ଭାଳୁ ଥିଲା । ମାର୍ଗଶୀରର ଏକ ଅମା ଅନ୍ଧାର (୧୯୮୨) ଭିତରେ ସେ ଆମକୁ ଛାଡି ଚାଲିଗଲା । ତାର ଆକସ୍ମିକ ବିୟୋଗ କେବଳ ଆମ ପରିବାରର ନୁହେଁ କଳିଙ୍ଗ ଭାରତୀର ଅପୂରଣୀୟ କ୍ଷତି କଲା । ତାର ସ୍ମୃତିରେ ପ୍ରତି ବର୍ଷ ଭଞ୍ଜ ଜୟନ୍ତୀରେଏକ ପୁରସ୍କାର ପ୍ରଦାନ କରାଯାଏ । ଅମା ଏ ପୁରସ୍କାର ଭିତରେ ଜୀଇଁ ନାହିଁ ଅନୁଷ୍ଠାନର ପ୍ରତି କର୍ମ କର୍ତ୍ତାଙ୍କ ହୃଦୟରେ ଏକ ଶୁଭ୍ର ଆସନ ପାତି ବସିଛି ।

ଏଠାରେ ଆଉ ଗୋଟିଏ ପ୍ରସଙ୍ଗ ଅବତାରଣା କରିବି । ଛୋଟବେଳେ ଥରେ ବସନ୍ତ ଟୀକା ନେଇ ପ୍ରବଳ ଜ୍ୱରରେ ପଡିଲି । ମୋ ଦେହ ଅସୁସ୍ଥ ଥିବା ଦେଖି ବାପା ଅଫିସ୍ ନଯାଇ ଛୁଟିରେ ରହିଲେ । ମୋତେ କଷ୍ଟ ଭୁଲାଇବା ପାଇଁ ନାନା ଗଳ୍ପ କହୁଥାଆନ୍ତି । କେତେ ବେଳେ ମୋତେ ଟେକି କରି କହୁ ଥାଆନ୍ତି 'ଦିନେ ମୋ ମାଆ ମୋତେ ଖୁଆଇ ଦେଉଥିଲା । ଆଜି ମାଆ ତା ପୁଅ ହାତରୁ ଖାଉଛି ।' ସେ ମାୟାଧରଙ୍କୁ ଡାକି ଏହା ଦେଖାଉ ଥାଆନ୍ତି ।ଗୋଟିଏ ଛୋଟ ପରିବାର ମଧ୍ୟରେ ଏହି ଅନାବିଳ ସ୍ନେହ ମଧ୍ୟରେ ଆମେ ଲାଳିତ ପାଳିତ ହୋଇଥିଲୁଁ । ମୁଁ ମୋର ଏକମାତ୍ର ଭାଇଙ୍କୁ ଭାଇ ବୋଲି ଜାଣି ନଥିଲି । ତାଙ୍କ ବାହାରେ ଥିବା କଳିଙ୍ଗ ଭାରତୀ ପରିବାର ଭିତରେ ମୋର କେତେ କେତେ ଭାଇ ଅଛନ୍ତି , ଯେଉଁମାନେ କେବଳ ପିଲା ଦିନେ ମୋତେ ସ୍ନେହ ମମତା ଦେଇ ନଥିଲେ ମୋର ବିବାହ ଓ ବିବାହୋତ୍ତର ଜୀବନରେ ଏବେ ବି ଭାଇ ଭାବେ ଘେରି ରହିଛନ୍ତି । ସେମାନଙ୍କୁ ଦେଖିଲେ ମୋତେ କୋଟି ନିଧି ମିଳି ଯାଏ । ଏହା କେବଳ ସମ୍ଭବ ହୋଇଥିଲା ମୋର ବାପା ଓ ମାଆଙ୍କ ସେହି ସାଧକ ମାନଙ୍କ ପ୍ରତି ଥିବା ଅନାବିଳବାତ୍ସଲ୍ୟମମତା ଯୋଗୁଁ ।

ବାପା ଏହିଭଳି ବିନ୍ଦୁରୁ ସିନ୍ଧୁ ସୃଷ୍ଟି କରି ପ୍ରମାଣ କରି ଯାଇଛନ୍ତି ଯେ ଏକ ନିଷ୍ଠ ସାଧନା ଓ ଅନାବିଳ ପ୍ରେମ ବଳରେ କେବଳ ପରିବାର ଗଢ଼ା ଯାଏ ନାହିଁ , ପରିବାର ଭଳି ଏକ ବିରାଟ ଅନୁଷ୍ଠାନ ତିଆରି କରି ହୁଏ । ବାପା ତାଙ୍କ ପରିବାର କହିଲେ କଳିଙ୍ଗ ଭାରତୀ ପରିବାରକୁ ବୁଝୁଥିଲେ । ଗୋଟିଏ ଅନୁଷ୍ଠାନକୁ ନିଜର ପରିବାର ଭାବିବା ଲୋକ ପ୍ରାୟ ଦେଖା ଯାନ୍ତି ନାହିଁ ବାପା ଥିଲେ ସେମାନଙ୍କ ମଧ୍ୟରେ ଭିନ୍ନ ମଣିଷ ।



## ପଲ୍ଲିଜୀବନର ମୋହ :

ବାପା ତାଙ୍କର ଅଧିକାଂଶ ସମୟ ସହରରେ ଅତିବାହିତ କରିଥିଲେ ମଧ୍ୟ ସେ ଦିନେ ଯେ ପଲ୍ଲୀରେ ଜନ୍ମିଥିଲେ ଏକଥା କେବେ ଭୁଲିନଥିଲେ ।ସାହିତ୍ୟ ସେବାରେ ନିଜକୁ ସଂପୂର୍ଣ ସମର୍ପି ଦେଇଥିଲେ ମଧ୍ୟ ଏହି ଜାଙ୍କାଁ ଗାଆଁ ତାଙ୍କ ବେଳେ ବେଳେ ହାତଠାରି ଡାକେ । ଭୁବନେଶ୍ୱରରେ ରହିବା ପରେ ନିଜ ପିତୃ ସଂପତ୍ତିର ଅଧିକାର ସାବ୍ୟସ୍ତ କରିବାର ସୁଯୋଗ ମିଳିଲା । ତାଙ୍କ ବଡବାପାଙ୍କ ପୁଅ ରାଜକିଶୋର ପଟ୍ଟନାୟକ ଏ ଦିଗରେ ତାଙ୍କୁ ବିଶେଷ ଉତ୍ସାହିତ କଲେ । ମାତ୍ର ମୋର ବଡବାପା ପଦ୍ମଚରଣ ପଟ୍ଟନାୟକ ଏବଂ ବିଧବା ଖୁଡୀ ମାଳ ଦେବୀ ମିଳିତ ଭାବେ ପିତୃ ସଂପତ୍ତିର ଭାଗ ଦେବାକୁ ଇଚ୍ଛା କଲେ ନାହିଁ । ଏଥିରୁ ଭ୍ରାତୃ ବିବାଦର ସୂତ୍ରପାତ ହୁଏ । ଏହା ଫଳରେ ବାପାଙ୍କୁ ବାରମ୍ବାର ଗାଁ ଯାଁଲା ଯିବାକୁ ପଡେ । ଏହି ଅବସରରେ ଭାଇ ଭଉଣୀ ମାଆସହ ଯାଇ ଆମକୁ ଗାଁରେ ବେଶ୍ କିଛି ବର୍ଷ ରହିବାର ସୁଯୋଗ ମିଳିଥିଲା । ଆମେ ଗାଆଁରେ ପହଞ୍ଚିଲାରୁ ଗାଆଁର କୁଟୁମ୍ବ ସମେତ ଅନ୍ୟମାନେ ଅଧିକ ଆନନ୍ଦିତ ହୋଇ ଥିଲେ । ଆମେ ଗାଆଁରେ ଥିଲା ବେଳେ ବାପା କଥା ପ୍ରସଙ୍ଗରେ ତାଙ୍କର ବାଲ୍ୟ ଜୀବନର ସ୍ମୃତି ଚାରଣ କରୁଥିଲେ । ଆମ ଘରେ ଗୋଟେ ବଡ ବାମ୍ପୀ ଥିଲା । ବାପା କହୁଥିଲେ ଯେ ଥରେ ସେ ପିଲା ଦିନରେ ଅସାବଧାନତା ବଶତଃ ଏଇ ବାମ୍ପୀରେ ଗଳି ପଡିଥିଲେ ।

ବାପାଙ୍କୁ ପିଲା ଦିନେ କାନ୍ଧରେ ବୋହି ସ୍କୁଲକୁ ନେବା ଆଣିବା କରୁଥିବା ଲୋକ ଉତ୍ସବ ବେହେରା ସେତେବେଳକୁ ବଞ୍ଚି ଥାଏ । ବାପା ମୋତେ ତାକୁ ଚିହ୍ନେଇ ଦେଇଥିଲେ । ସେଇ ସାଢ଼େ ଛଅ ଫୁଟ ଡେଙ୍ଗା ଲୋକଟିକୁ ଦେଖି ମୁଁ ଶଙ୍କି ଯାଇଥିଲି ସିନା ତା ପ୍ରତି ମୋର ଭକ୍ତି ନଇଁ ଆସିଥିଲା । ଏଇ ଲୋକଟି ନଥିଲେ ବାପାଙ୍କ ପାଠ ପଢ଼ା କେବେ ହୋଇ ନଥାଆନ୍ତା ।

ତାଙ୍କ କୁଟୁମ୍ବର ଦାଦା ଯୋଗେନ୍ଦ୍ର ପଟ୍ଟନାୟକ ଓ ତାଙ୍କ ପତ୍ନୀ ବାପାଙ୍କୁ ଭାରି ଭଲ ପାଉଥିଲେ । ବାପାଙ୍କ ଏହି ଖୁଡୀ ଜଣେ ସୁକଣ୍ଠୀ ଗାୟିକା ଥିଲେ । ବାପା କହନ୍ତି, କୋଇଲିର କଣ୍ଠ ପରି ତାଙ୍କ ସ୍ୱର । ତାଙ୍କ ତୁଣ୍ଡ ରେ ବହୁ ଛାନ୍ଦ ଚଉପଦୀ ମୁଖସ୍ଥ ଥାଏ । ମୋତେ ତାଙ୍କଠାରୁ ଗୀତ ଶିଖିବାକୁ କହିଥିଲେ । ସେ ମୋତେ ଦୁଇଟି ଗୀତ ଶିଖାଇ ଥିଲେ- 'କମଳ ଲୋଚନ ଚଉତିଶା' ଏବଂ ' କଳା କଳେବର କହ୍ନାଇ ଚଉତିଶା' ।

କାହା ପାଖରେ ଓଡିଆତ୍ୱର ସାମାନ୍ୟ ସନ୍ଧାନ ପାଇଲେ ବାପା ତାଙ୍କୁ ବହୁତ ସ୍ନେହ ଓ ସମ୍ମାନ ଦିଅନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ସେହି ମହୀୟସୀ ମହିଳା ଏବେ ବି ୧୧୫ ବର୍ଷରେ ଜୀବିତ ଅଛନ୍ତି।

ବାପା ପଲ୍ଲୀ ରମଣୀଙ୍କ ପାରଂପରିକ ବ୍ରତ ଉପବାସ , ଝୋଟି ମୁରୁଜ, ପିଠା ପଣା ଏପରିକି ପଲ୍ଲୀର ମଣୀର ବାତ୍ସଲ୍ୟ ପ୍ରୀତିକୁ ବେଶ୍ ପସନ୍ଦ କରୁଥିଲେ । କୌଣସି ରମଣୀଠାରେ ଏହି ଚିନ୍ତା ଚେତନା ଦେଖିଲେ ଭକ୍ତି ଓ ସମ୍ଭ୍ରମରେ ସେ ନଇଁ ପଡୁଥିଲେ । ତାଙ୍କ ବିରଚିତ ' ପଲ୍ଲୀବଧୂ' କବିତାରେ ଏହି ଭାବନା ବେଶ୍ ଜୀବନ୍ତଭାବେ ରୂପଲାଭ କରିଛି -

ନବୀନ ଉହଳେ କୋଳ ଦୋଳିରେ ଝୁଲାଇ
ପାଳିବାର ଭାର ତୁମ୍ଭ କରେ ଅଛି ରହି
ପୂଜା ବ୍ରତ-ଗତ ପ୍ରାଣା
ପରତ୍ର ଚିନ୍ତନେ ତୁମ୍ଭ କାହିଁ ଗୋ ତୁଳନା ?

ଏହି ମହିଳାମାନେ ପଲ୍ଲୀର ଅନ୍ଧକାରକୁ ଦୂର କରି ସହରର ପ୍ରାସାଦ ବିଳାସୀମାନଙ୍କ ପ୍ରତି ଅଙ୍କୁଶ ଭଳି କାର୍ଯ୍ୟ କରନ୍ତି । ଏହିମାନେ ସର୍ବଂସହା ଧରିତ୍ରୀ ଭଳି ସ୍ୱାମୀ ସୋହାଗିନୀ ହୋଇ ସେମାନଙ୍କୁ ସୁପଥରେ ପରିଚାଳିତ କରି ଥାନ୍ତି।

ଦୋଳ ଉତ୍ସବ ଆମ ପରିବାରର ଏକ ବଡ ପର୍ବ । ଆମର ଇଷ୍ଟ ଦେବ ଗୋପାଳଜୀଉ ସମେତ ଗ୍ରାମର ତଥା ପାର୍ଶ୍ୱବର୍ତ୍ତୀ ଗ୍ରାମର ଅନ୍ୟ ତେର ମୂର୍ତ୍ତି ଠାକୁରଙ୍କ ମହା ଆଡମ୍ବର ପୂର୍ଣ ମେଳନ ଉତ୍ସବପାଳନ କରାଯାଏ । ଫାଲ୍ଗୁନ ଶୁକ୍ଳ ପକ୍ଷ ତ୍ରୟୋଦଶୀ ପ୍ରଭାତରେ ସକଳ ଦୋଳ ବିମାନ ଆମ ଦାଣ୍ଡରେ ନିଜ ନିଜ ଆସ୍ଥାନରେ ବିରାଜମାନ ହୁଅନ୍ତି । ସେଠାରେ ଦୁଇଦିନ ବ୍ୟାପି ଉତ୍ସବ ଲାଗି ଥାଏ ଓ ଏଥିପାଇଁ ବିପଣୀମାନ ଖୋଲା ଯାଇଥାଏ । ବାପା ଦୁଇ ବର୍ଷ ଗ୍ରାମରେ ରହି ସେ ଉତ୍ସବ ପରିଚାଳନା କରିଥିଲେ । ତାଙ୍କର ବହୁ ଦିନର ଅଭିଳାଷ ପୂର୍ଣ ହୋଇଥିଲା ।

ସେହିବର୍ଷ ଗାଁରେ ଥିବା ସୁବଳ ପ୍ରଧାନର ଯାତ୍ରା ଦଳ ଦୋଳ ଅବକାଶରେ ଆମ ଘର ଦାଣ୍ଡରେ ଅଭିନୟ ପରିବେଷଣ କରିଥିଲେ । ଦୁଇ ଦିନ ବ୍ୟାପି ଏହି ଦଳ 'ଦାନବୀର ହରିଶ୍ଚନ୍ଦ୍ର' ଏବଂ 'ଭ୍ରମରବର' ଯାତ୍ରା ଅଭିନୟ କରିଥିଲେ ।

କେବଳ ଦୋଳ ନୁହେଁ ଗ୍ରାମର ଅନ୍ୟ ଉତ୍ସବମାନଙ୍କରେ ମଧ୍ୟ ବାପା ଉପସ୍ଥିତରହି ତାକୁ ପୂର୍ଣ ପ୍ରାଣରେ ଉପଭୋଗ କରନ୍ତି । ପାରଂପାରିକ ଏହି ଉତ୍ସବମାନ ବାପାଙ୍କର ଭାରି ପ୍ରିୟଥିଲା । ପୁଣି ନିଜ ଗାଁରେ ନିଜ କୁଟୁମ୍ବମାନଙ୍କ ସହ ପାଳିତ ହେଉଥିବା ଏ ଭଳି ଉତ୍ସବର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଥିଲା । ମାତ୍ର ଆଧୁନିକ ଚଳଣି ଏବଂ ଦୈବୀ

ଆରାଧନା ଭିତରେ ଯେଉଁ ଅନ୍ୟାୟ ଓ ଅନାଚାର କ୍ରମେ ଅନୁ ପ୍ରବେଶ କରୁଛି ବାପା ଥିଲେ ତାହାକୁ କେବେ ହେଲେ ବରଦାସ୍ତ କରି ନଥାନ୍ତେ ।

ଆମ ଗାଆଁର ତିନୋଟି ସାହି- କରଣ ସାହି, ଜାଆଁଳା ସାହି ଓ ପାଟଣା ସାହି । ମାତ୍ର ମୁଁ ଦେଖିଛି ଏହି ତିନି ସାହିର ଆବାଳ ବୃଦ୍ଧ ବନିତା ବାପାଙ୍କ ଘର ବାହୁଡ଼ାକୁ ବେଶ୍ ପସନ୍ଦ କରିଥିଲେ । ସେମାନେ ବାପାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇଥିଲେ । ଗ୍ରାମ ବାସୀ ବାପାଙ୍କୁ ବହୁତ ଭଲ ପାଉଥିଲେ । କାରଣ ସେମାନେ ଜାଣିଲେଣି ଯେ ଏହି ଖଞ୍ଜ ଲୋକଟି ଦ୍ୱାରା ତାଙ୍କ ଗାଁର ନାମ ଓଡିଶାରେ ପରିଚିତ ହୋଇ ପାରିଛି ।

ନିଜର ଗମନା ଗମନ ଅସୁବିଧା ହେତୁ ସେତେବେଳେ ବାପା ପ୍ରତିଦିନ ଆସି ନପାରି ସପ୍ତାହକୁ ଥରେ ଗାଆଁକୁ ଆସୁଥିଲେ । ସେ ଦିନ ଗାଆଁରେ ଗୋଟେ ଯେମିତି ଉତ୍ସବ ଲାଗି ଯାଉଥିଲା । ଲୋକେ ସାହିତ୍ୟ ଚର୍ଚ୍ଚା ଶୁଣିବା ପାଇଁ ଆମ ଘରେ ରୁଣ୍ଡ ହେଉଥିଲେ । ଏଠାରେ ଉଲ୍ଲେଖ ଯୋଗ୍ୟ ଗାଆଁରେ କେଇ ବର୍ଷ ରହଣି ମଧ୍ୟରେ ତାଙ୍କ ଭ୍ରାତୃ ବିବାଦର ପରି ସମାପ୍ତି ଘଟିଥିଲା । ଏହାର ଫଳରେ ହୋଇଥିଲା ଏକ ମହା ମିଳନ ।

ପୂର୍ବରୁ କହିଛି, ଆମେ ଗାଆଁରେ ଥିଲା ବେଳେ ବାପା ଭୁବନେଶ୍ୱରରେ ରହୁଥିଲେ । ସେଠାରେ କେବଳ ଚାକର ବାକର ତାଙ୍କ ପରିଚର୍ଯ୍ୟା କରୁଥିଲେ । ଏହି ସମୟରେ 'କଳିଙ୍ଗ ଭାରତୀର' ସଦସ୍ୟ ଗୋପବନ୍ଧୁ ରଥ ସପରିବାର ଆସି କିଛିଦିନ ବାପାଙ୍କ କ୍ୱାଟରରେ ଅବସ୍ଥାନ କରିଥିଲେ । ସେଇ ସୁଶୀଳା ନୂଆ ବୋଉ ସ୍ୱଳ୍ପ ରହଣୀ ମଧ୍ୟରେ ବାପାଙ୍କ ଏତେ ସେବା ଯତ୍ନ ନେଇଥିଲେ ଯେ, ବାପା ମୁଗ୍ଧ ହୋଇ ମାଆକୁ କହିଲେ ପୁଅ ବାହା ହୋଇ ବୋହୂ ଆସି ମୋର ସେବା କରିବା ଭାଗ୍ୟରେ ଅଛି କି ନାଁ ମୁଁ ଜଣେ ନାହିଁ । ମାତ୍ର ସୁଶୀଳା ପାଖରୁ ସେଇ ସେବା ପାଇସାରିଛି । ପ୍ରକୃତରେ ବାପାଙ୍କ ଭାଗ୍ୟରେ ବୋହୂ ସେବା ନଥିଲା ।



## ପ୍ରତିବେଶୀ ପ୍ରୀତି :

କଥାରେ ଅଛି ବନ୍ଧୁ ବିନା ଦିଗ ଶୂନ୍ୟ । ମଣିଷ ଏକ ସାମାଜିକ ପ୍ରାଣୀ । ସେ ତାର ଚାରିପଟେ ସମାଜର ଏକ ଦୁର୍ଭେଦ୍ୟ ଦୁର୍ଗ ସୃଷ୍ଟି କରି ରହିବାକୁ ଭଲ ପାଏ । ସେଇମାନେ ହିଁ ହେଉଛନ୍ତି ଆମ ସୁଖ ଦୁଃଖର ସାଥି ଓ ବନ୍ଧୁ । ଆମର କଟକର ଡଗଡପଡା ବାସ ଭବନ ପାଖରେ ବେଶ୍ କେତେଜଣ ପ୍ରତିବେଶୀ ଥାଆନ୍ତି । ହୁଏତ ଆର୍ଥିକ ଓ ସାମାଜିକ ସ୍ଥିତିରୁ ସେମାନେ ସମସ୍ତେ ବାପାଙ୍କ ସମାସ୍କନ୍ଧ ନଥିଲେ, ତଥାପି ସେମାନଙ୍କ ପ୍ରତି ବାପାଙ୍କର ବେଶ୍ ସୌହାର୍ଦ୍ଦ୍ୟ ରହିଥିଲା । ଅବଶ୍ୟ ଅନେକେ ସମ୍ଭ୍ରମ ବଶତଃ ବାପାଙ୍କ ଠାରୁ ଦୂରତା ରକ୍ଷା କରୁଥିଲେ । ମାତ୍ର ବାପା ସେମାନଙ୍କୁ ପ୍ରେମ ବନ୍ଧନରେ ବାନ୍ଧି ଦେଇଥିଲେ । ଏଦିଗରେ ମୁଖ୍ୟ ଭୂମିକା ଥିଲା ମୋ ମାଆର । ସେ କାଉ କୋଇଲିଙ୍କ ପେଟ ଚିହ୍ନି ପାରୁଥିଲା । ପଥଚାରୀର ଦୁଃଖ ଯେ ଦେଖି ପାରେ ନାହିଁ ତା ପାଖରେ ପଡୋଶୀ କେତେ ଆପଣାର !

ଏକ ଗ୍ରାମ୍ୟ ପରିବେଶରୁ ଆସିଥିବାରୁ ବାପାଙ୍କ ହୃଦୟରେ ଗ୍ରାମ୍ୟ ଜୀବନର ଅନାବିଳ ସ୍ନେହ ଓ ମମତା ଉଚ୍ଛୁଳୁ ହେଉଥାଏ । ସେ କହୁଥାଆନ୍ତି ସହରମାନ ହେଉଛି ଆମ ଜାତୀୟ ଜୀବନର ଶ୍ମଶାନ ଏବଂ ବିଜାତୀୟ ପ୍ରଭାବର ଦୁର୍ଗ । ମୁଷ୍ଟିମେୟ ଶିକ୍ଷିତ ସଂପ୍ରଦାୟ ଏହି ସହରମାନଙ୍କରେ ବାସ କରନ୍ତି । ସକଳ ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରନ୍ତି ଏବଂ ପଲ୍ଲି ପ୍ରତି ଓ ପଲ୍ଲିବାସୀ ପ୍ରତି ତଥା ପଲ୍ଲି ସଂସ୍କୃତି ପ୍ରତି ଅନାଦର ଭାବ ପୋଷଣ କରନ୍ତି । ଏଇ ସହରମାନଙ୍କରେ ସାଂସ୍କୃତିକ ଅପମିଶ୍ରଣ ବ୍ୟାପକ ଭାବରେ ଘଟେ । ମାତ୍ର ନିଭୃତ ପଲ୍ଲିରେ ଯୁଗ ଯୁଗଧରି ଗଡି ଆସିଥିବା ପରଂପରା ଓ ଜାତୀୟ ସଂସ୍କୃତି ଏବେ ମଧ୍ୟ ଉଜ୍ଜୀବିତ ହୋଇ ରହିଛି ।

ପଲ୍ଲି ଜୀବନରେ ପଡୋଶୀ ହେଉଛନ୍ତି ଆମର ଭାଇ ବନ୍ଧୁ କୁଟୁମ୍ବ । ମାତ୍ର ସହର ଜୀବନରେ ପ୍ରତିବେଶୀ ସେପରି ନୁହନ୍ତି । କେବଳ ଲୋକ ଦେଖାଣିଆକୁ ଆମେ କାହାକୁ କିଛିଟା ସମ୍ବୋଧନ କରିଥାଉଁ । ଆଜିର ସହରୀ ଜୀବନ ସେଦିନର ସହରୀ ଜୀବନ ମଧ୍ୟରେ ବେଶ୍ ପାର୍ଥକ୍ୟ ବାରି ହୋଇ ପଡେ । ବାପା ସହରର ପଡୋଶୀରେ ଥିବା ଆବାଳ ବୃଦ୍ଧ ବନିତାକୁ ଭାରି ଭଲ ପାଉଥିଲେ । ଛୋଟ ପିଲାଙ୍କ ପ୍ରତି ବାପାଙ୍କ କୌତୂହଳ ଥାଏ । ସେମାନେ ବାପାଙ୍କ ପାଖକୁ ଡରରେ ନ ଆସିଲେ ବି ବାପା ତାଙ୍କୁ ଦୂରରୁ ନିରୀକ୍ଷଣ

କରନ୍ତି । ସେମାନଙ୍କ ଚାଲି ଚଳନ ଭିତରେ ନିଜକୁ କଳ୍ପନାରେ ଅବସ୍ଥାପିତ କରି ଆମୋଦିତ ହୁଅନ୍ତି ।

ଆମର ଏକ ହାତଟଣା ରିକ୍ସା ଥିଲା । ମୁଁ ଆଗରୁ କହିଛି ସେ ରିକ୍ସାରେ ବସିବାକୁ ମୋତେ ଭଲ ଲାଗୁଥିଲା । ସାହିର ପିଲାମାନଙ୍କର ମଧ୍ୟ ଏହିଭଳି ଏକ ସ୍ୱପ୍ନ ଥିଲା । ବାପା ତାଙ୍କ ଭାବନାକୁ ଚିହ୍ନି ପାରିଥିଲେ । ସେତେବେଳେ ଆମର ରିକ୍ସା ବାଲା କ୍ଷୀରାକୁ ବାପା ନିର୍ଦ୍ଦେଶ ଦେଇଥିଲେ ଅବସର ବେଳେ ସାହିପିଲା ମାନଙ୍କୁ ମଝିରେ ମଝିରେ ବୁଲେଇ ଆଣିବାକୁ । ସେ ସମୟର ବାଳକମାନେ ଏବେ କେତେ ବଡ ହେଲେଣି । କେତେଜଣ ମରି ହଜି ବି ଗଲେଣି । ହେଲେ ସେମାନଙ୍କ ଅନ୍ତରରେ ବାପାଙ୍କ ସ୍ମୃତି ଏବେ ବି ବେଶ୍ ସତେଜ ରହିଛି । ଏବେ ବି କେତେକ ତାଙ୍କୁ ମନେ ପକାଇ ଅଶ୍ରୁବର୍ଷଣ କରନ୍ତି ।

ବାପାଙ୍କ ଆଦେଶ ସେମାନଙ୍କ ଶିରୋଧାର୍ଯ୍ୟ ଥିଲା । ଗୋଟିଏ ଘଟଣାରୁ ଏହାକୁ ବୁଝେଇ ହେବ । ସେତେବେଳେ ସ୍ୱାଧୀନତା ଆନ୍ଦୋଳନ କାଳରେ ମହାତ୍ମାଗାନ୍ଧୀଙ୍କ ଶେଷ ଓଡିଶା ଗସ୍ତ ଥିଲା । କାଠଯୋଡି ବାଲିରେ ଏକ ସଭା ଆୟୋଜିତ ହୋଇଥାଏ । ଇଂରେଜ ସରକାରଙ୍କ ନଜରକୁ ଏ କଥା ଆସିଲା । ବାପା ଜାଣିଲେ ସରକାର ଗାନ୍ଧିଜୀଙ୍କ ସଭା ନିଶ୍ଚେ ଭଣ୍ଡୁର କରିବେ ।

ବାପା ତ ଥିଲେ ଦେଶ ପ୍ରାଣ ଗୋପବନ୍ଧୁ, ନୀଳକଣ୍ଠଙ୍କ ଶିଷ୍ୟ । ସେ କପଟ କରି ଉକ୍ତ ଦିନ ଏକ ସମାନ୍ତରାଳ ସଭା କରିବେବୋଲି ସରକାଙ୍କ ଠାରୁ ପଠା ଲିଜରେ ନେଇ ଗଲେ । ଇଂରେଜମାନେ ଭାବିଲେ ଆଉ ଗାନ୍ଧିଜୀ ସଭା କରି ପାରିବେ ନାହିଁ । ବାପା ସଭା ଆରମ୍ଭ କଲେ । ସାଧାରଣ ଲୋକେ ଭାବୁଥିଲେ ବାପା ଗାନ୍ଧିଜୀଙ୍କ ସଭା ଭଣ୍ଡୁର କରୁଛନ୍ତି । ମାତ୍ର ବାପାଙ୍କ ଉଦ୍ଦେଶ୍ୟ ଥିଲା ଭିନ୍ନ । ଏହି ବିରାଟ ଜନତାଙ୍କୁ ମହାତ୍ମାଙ୍କ ସଭାରେ ଟେକି ଦେବା ପାଇଁ ସେ ଏପ୍ରକାର ବୁଦ୍ଧି ଖର୍ଚ୍ଚ କରିଥିଲେ । ବାପା ନିଜକୁ ନିଜେ ସଭାରେ ଗଣ୍ଡଗୋଳ କରିଦେଲେ । ପୂର୍ବରୁ ପ୍ରସ୍ତୁତ ରହିଥିବା ଯୁବକମାନେ ତାଙ୍କୁ ସଭାରୁ କାନ୍ଧରେ ଟେକି ଆଣିଲେ । ମହାତ୍ମାଗାନ୍ଧୀ ନିର୍ଦ୍ୱନ୍ଦ୍ୱରେ ସଭା କଲେ । ସଭା ହେଉ ନାହିଁ ଭାବି ଏଣେ ଇଂରେଜ ପ୍ରଶାସକ ନିଶ୍ଚିନ୍ତରେ ଘୁମଉ ଥିଲେ । ସାପ ମଲା ବାଡି ଭାଙ୍ଗିଲା ନାହିଁ ।

ଗୋପୀ ନାମରେ ଜଣେ ମୋଟର ଚାଳକ ପଡୋଶୀ ଥିଲେ । ସେ ବାପାଙ୍କୁ ବହୁଦିନରୁ ଦୂରରୁ ଦେଖୁଥିଲେ । ସେ ଦିନେ ସାହସ କରି ବାପାଙ୍କୁ କହିଲେ- ମୁଁ ଦେଖୁଛି ଆପଣଙ୍କ ଦଶା ଠିକ୍ ମୟୂର ଭଳି । ମୟୂର ନାଚେ , ଖୁବ୍ ନାଚେ, ନୂଆ ମେଘକୁ ଦେଖି ସେ ଆତ୍ମହରା ହେଇ ନାଚେ । ଅନ୍ୟମାନେ ତାର ନାଚ ଦେଖି ମୁଗ୍ଧ ହୁଅନ୍ତି । ହେଲେ ଯେତେବେଳେ ମୟୂର ତାର ଶୀର୍ଣ୍ଣ ଗୋଡ ଦିଇଟାକୁ ଚାହିଁ ଦିଏ , ସେ ଥକ୍କା ହୋଇ ବସି

ପଡେ । ଆପଣ ମଧ୍ୟ ସେମିତି ନାଚି ନାଚି ଥକ୍କା ହୋଇ ପଡିଛନ୍ତି । ଆପଣଙ୍କ ଏ ମହତ୍ କାର୍ଯ୍ୟରେ ମୁଁ ତ ନିଜକୁ ସାମିଲ କରି ପାରୁ ନାହିଁ । କେବଳ ଆପଣଙ୍କୁ ଏକ ଉପହାର ଦେଇ ଏହାର ପ୍ରମାଣ ଦେବାକୁ ଚାହେଁ । ସେ ବାପାଙ୍କୁ ଏକ ସୁନା ମୁଦି ଉପହାର ଦେଇଥିଲେ । ମୁଁ ଦେଖିଛି, ବାପା ଶେଷ ପର୍ଯ୍ୟନ୍ତ ସେ ମୁଦିଟିକୁ ଗୋଟେ ବଡ ମେଡେଲ ଭଳି ସାଇତି ରଖିଥିଲେ ତାଙ୍କ ହାତ ବାକ୍ସରେ । ବହୁ ସଭାରେ ବହୁ ପଣ୍ଡିତ ବ୍ୟକ୍ତିଙ୍କ ଠାରୁ ବାପା ଅସୁମାରୀ ବାହାବା , କରତାଳି, ପାଇଛନ୍ତି । ମାତ୍ର ଜଣେ ସାମାନ୍ୟ ମୋଟର ଚାଳକର ଏ ଉପହାର ତାଠାରୁ କେତେ ମୂଲ୍ୟବାନ୍ ନଥିଲା !

ପାଦରେ ଖଞ୍ଜ ଥିଲେ ହେଁ ବାପା ତା ପ୍ରତି ଭ୍ରୁକ୍ଷେପ କରୁ ନଥିଲେ ବା ନଥିଲା ତା ପ୍ରତି କିଛି ଅଭିଯୋଗ । ସେ ବେଳେ ବେଳେ ରହସ୍ୟ କରି କହନ୍ତି- ମୋ ନାମ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ଦେଶ ମିଶ୍ରଣ ଆନ୍ଦୋଳନର ଅନ୍ୟତମ ନେତାଙ୍କ ନାମ ବିଚ୍ଛନ୍ଦ ପଟ୍ଟନାୟକ । ଆମେ ଦୁଇଜଣ ଏକ ବ୍ୟକ୍ତି ନୋହୁଁ । ମୋ ନାମରେ ଚରଣ ଥିଲେ ହେଁ ମୁଁ ଚାଲି ପାରେ ନାହିଁ । ମାତ୍ର ତାଙ୍କ ନାମରେ ଚରଣ ନଥିଲେ ହେଁ ସେ ବେଶ୍ ଚାଲି ପାରୁଥିଲେ ।



## ମାୟାଧରର ମାୟା :

ଦୁନିଆରେ ମାଲିକ ସେବକର ସଂପର୍କ ବିଷୟରେ ଅନେକଙ୍କର ଧାରଣା ଅଛି । ମାତ୍ର ବାପାଙ୍କ କ୍ଷେତ୍ରରେ ଏହା ଥିଲା ଏକ ବ୍ୟତିକ୍ରମ । 'ପ୍ରାଚୀ ସମିତି ' ଠାରୁ ବାପାଙ୍କର ଅନ୍ତରଙ୍ଗ ସେବକ ଭାବେ ରହି ଆସିଥିଲେ ମାୟାଧର ମହାନ୍ତି , ଆମର ପ୍ରିୟ 'ମାଧୋଉ' । ଏବିଷୟରେ ପୂର୍ବରୁ ସୂଚନା ଦେଇଛି । ସେ କେବଳ ତାଙ୍କ ଭୃତ୍ୟ ନଥିଲେ- ଥିଲେ ପରମ ସହଚର, ବିପଦର ବନ୍ଧୁ, ଅସମୟର ଉପଦେଷ୍ଟା ଏପରିକି ଥିଲେ ଜଣେ ଜୀବନ୍ତ ଆଶା ବାଡି ।

ଆମେ ତାଙ୍କୁ କେବେ ହେଲେ ଭୃତ୍ୟ ଭଳି ଦେଖି ନଥିଲୁଁ । ସେ ଥିଲେ ଆମର ପରମ ହିତୈଶୀ ବନ୍ଧୁ । ପ୍ରାତଃ କାଳର ବାପାଙ୍କ ଶଯ୍ୟା ତ୍ୟାଗ ଠାରୁ ବିଳମ୍ବିତ ରାତ୍ରିରେ ବାପା ନିଦ୍ରା ଯିବା ଯାଏ ସେ ଥିଲେ ଗୋଟିଏ ଘୁରି ବୁଲୁଥିବା ଚକ- ନିରଳସ କର୍ତ୍ତବ୍ୟରତ ରକ୍ତ ମାଂସର ମେସିନ୍ । ଦୀର୍ଘଦିନ ରହିବା ପରେ ବାପାଙ୍କ ସକଳ ସୁବିଧା , ଅସୁବିଧା, ପରିବାରର ଯାବତୀୟ ହାନିଲାଭ ବିଷୟରେ ସେ ଅବଗତ ଥିଲେ । ବେଳେ ବେଳେ ମନେ ହେଉଥିଲା ମାଧୋଉ ବିନା ଏ ପରିବାରର ସକଳ କାର୍ଯ୍ୟ ମୂହୂର୍ତ୍ତକରେ ବନ୍ଦ ହେଇ ଯିବ ।

ଘରେ କ'ଣ ରୋଷେଇ ହେବାଠାରୁ ଆଜି ବାପା କେତେବେଳେ କ'ଣ ଖାଇବେ , କୋଉଠିକି କେତେବେଳେ ଯିବେ ସବୁଥାଏ ତାଙ୍କ ନଖ ଦର୍ପଣରେ । ଏଥି ପାଇଁ ସେ କୌଣସି ଏନ୍‌ଗେଜମେଣ୍ଟ ପୁସ୍ତକ ଧରି ବୁଲୁ ନଥିଲେ । ମୋଟ ଉପରେ ସେଥିଲେ ଆମର ଜଣେ ଶୁଭେଚ୍ଛୁ, ଉପଦେଷ୍ଟା ଏବଂ ପରମ ଉପକାରୀ ବନ୍ଧୁ । ସେ ୧୯୩୦ ମସିହାରୁ ୧୯୬୫ ମସିହା ପର୍ଯ୍ୟନ୍ତ ଆମ ଘରେ ରହି ଏ ଘରର ଜଣେ ସଦସ୍ୟ ପାଲଟି ଯାଇ ଥିଲେ ।

ମାଧୋଉ କୌଣସି ଅସହାୟ ବ୍ୟକ୍ତି ନଥିଲେ । ସେ ଆମ ସହାୟତା ଉପରେ ନର୍ଭର କରି ଚଳୁ ନଥିଲେ । ସେ ଜଣେ ଗୃହସ୍ଥ ଥିଲେ । ଘରେ ତାଙ୍କର ସ୍ତ୍ରୀ, ପିଲା ପିଲି ଥିଲେ । ଘରେ ତାଙ୍କର ଜମି ବାଡି, ଚାଷ ବାସ ଥିଲା । ଥରେ ଥରେ ତାଙ୍କ ପିଲା ମାନେ ଆମ ଘରକୁ ବୁଲି ଆସନ୍ତି । ଆମେ ତାଙ୍କ ସହ ଖେଳିବାକୁ ଚାହୁଁ , ମାତ୍ର ସେ ଏଥିରେ ବାଧା ଦିଅନ୍ତି । ସେ ସେମାନଙ୍କୁ ନିରାପଦ ଦୂରରେ ରଖନ୍ତି – ଯେପରି ସେମାନେ ଭୃତ୍ୟର ସନ୍ତାନ । କିନ୍ତୁ ଆଶ୍ଚର୍ଯ୍ୟ କଥା ତାଙ୍କ ପରିବାରର କୌଣସି ହାନି ଲାଭ ବିଷୟ ସେ

କେବେ ଆମ କାନକୁ ଆଣୁ ନଥିଲେ । ମନେ ହେଉଥିଲା ସେ ଜଣେ ଥିଲେ ପ୍ରକୃତ ଗୃହୀ ସନ୍ନ୍ୟାସୀ ।

ତଥାପି ତାଙ୍କୁ ସାମୟିକ ଭାବେ ଏ ଘର ଛାଡିବାକୁ ପଡିଥିଲା । ବାହାର ଲୋକଙ୍କ ମନ୍ତ୍ରଣାରେ ପଡି ବାପା ତାଙ୍କୁ ଘରୁ ତଡି ଦେଇଥିଲେ । ସେଦିନ ଖୁବ୍ ଭାରି ହୃଦୟ ନେଇ ଛଳ ଛଳ ଆଖିରେ ସେ ଅନିଚ୍ଛାର ପାଦ ପକେଇ ଏଘରୁ ବିଦାୟ ନେଇଥିଲେ । ଯିବା ବେଳେ ବାପାଙ୍କର କେଉଁ ସମୟରେ କ'ଣ କରିବାକୁ ପଡିବ ମୋତେ ବୁଝେଇ ଯାଇଥିଲେ । ମୋତେ ଗୁପ୍ତରେ କହି ଗଲେ- 'ବାପା ଅଫିସ ଘରେ ବସିଥିବା ବେଳେ ପଛ ପଟ ଝରକା ଖୋଲି ଦେଇଥିବୁ । ମୁଁ ଲୁଚି କରି ତାଙ୍କୁ ପ୍ରତି ଦିନ ଟିକେ ଦେଖି ଯିବି ।'

ମାୟାଧର ବାବୁ ବାହାର ଲୋକଙ୍କୁ ଏ ଘରେ ଅନଧିକାର ପ୍ରବେଶ ପାଇଁ ସୁଯୋଗ ଦେଉ ନଥିଲେ । ଏଣୁ ଏହି ଦୁଷ୍ଟ ପ୍ରକୃତିର ଲୋକେ ଭାବୁଥିଲେ ସେ ହେଉଛନ୍ତି ସେମାନଙ୍କ ବାଟରେ କଣ୍ଟା । ମାଆ ବାରମ୍ବାର ତାଙ୍କୁ ଫେରେଇ ଆଣିବାକୁ ଅନୁରୋଧ କଲା । ବାପା ମଧ୍ୟ ଏ ଲୋକଙ୍କ ହୀନ ଚକ୍ରାନ୍ତ ଜାଣି ପାରି ଥିଲେ । ଅବଶେଷରେ ବାପା ତାଙ୍କୁ ଡାକି ଆଣିଲେ । ମାୟାଧର ବାବୁ ପୁଣି ଏ ଘରକୁ ଫେରିଲେ ।

ସେହିଦିଠାରୁ ବୃଦ୍ଧ ହେବା ଯାଏଁ ସେ ଆମ ପରିବାରରେ ରହିଥିଲେ । ବାପାଙ୍କ ମୃତ୍ୟୁ ପରେ ମଧ୍ୟ ସେ ଆମ ଘରେ ରହିଥିଲେ । ସେତେବେଳେ ସେ ଭୁବନେଶ୍ୱରରେ ଚାକିରୀ କରୁଥିଲେ ହେଁ ପ୍ରତି ଦିନ ସଂଧ୍ୟାରେ ଆମ ଘରକୁ ଫେରି ଆସୁଥିଲେ ଏବଂ ଯାବତୀୟ ଘର କାର୍ଯ୍ୟରେ ଆମକୁ ସାହାଯ୍ୟ କରୁଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ସେ ଆମ ସହ ସଂପର୍କ ଅତୁଟ ରଖିଥିଲେ ।

ବାପାଙ୍କ ମୃତ୍ୟୁର ତିନି ବର୍ଷ ପରେ ତାଙ୍କର ମୃତ୍ୟୁ ହେଲା । ମଲା ପୂର୍ବରୁ ସେ ସବୁ ସମୟରେ କହୁଥିଲେ - ବାବୁ ମୋତେ ଡାକୁଛନ୍ତି । ମୁଁ ଶୀଘ୍ର ତାଙ୍କ ପାଖକୁ ଚାଲି ଯିବି । ତାହା ହିଁ ହେଲା । ବାପାଙ୍କୁ ଝୁରି ଝୁରି ଅଳ୍ପ ବ୍ୟବଧାନରେ ସେ ବାପାଙ୍କ ପାଖକୁ ଚାଲିଗଲେ ।

❑❑❑

## ଦୈବୀ ଶକ୍ତିବିଶ୍ୱାସ :

ବାପା ପିଲା ଦିନରୁ ଈଶ୍ୱର ବିଶ୍ୱାସୀ ଥିଲେ । ତାଙ୍କ ମାଆଙ୍କଠାରୁ ସେ ଏହି ଗୁଣ ଆୟତ୍ତ କରିଥିଲେ । ଆମ ଗାଆଁରେ ଗୋପାଳଜୀଉ ପୂଜା ପାଉଥିଲେ । ଏହି ଗୋପାଳଜୀଉଙ୍କ ପୂଜା ବିଷୟରେ ଥିବା କାହାଣୀ ପୂର୍ବରୁ କହିଛି । 'ପ୍ରାଚୀସମିତି' ରେ ଥିବା ସମୟରେ ସେ ଏକ ତ୍ରିଭଙ୍ଗିମ କୃଷ୍ଣ ଛବି ରଖି ପୂଜା କରୁଥିଲେ । କଟକର ତଗରପଡାରେ ଘର ନେଇ ରହିବାଠାରୁ ଆଜି ପର୍ଯ୍ୟନ୍ତ ସେହି କୃଷ୍ଣ ଛବି ନିୟମିତପୂଜା ପାଉଛନ୍ତି । ଏ ଘରେ ପାଦ ଦେବା ପରେ ମାଆ ପୂଜା ଦାୟିତ୍ୱ ନେଲେ । ପରେ ପରେ ଆମ ଖଟୁଲି ମଣ୍ଡନ କଲେ ଜଗନ୍ନାଥ, ରାଧାକୃଷ୍ଣଙ୍କ ପିତ୍ତଳ ମୂର୍ତ୍ତୀ, ଆଣ୍ଠୁଆ ଗୋପାଳ , ରୂପା ମୁଦ୍ରାରେ ଖୋଦିତ ରାମ ଲକ୍ଷ୍ମଣ ସୀତା ଏବଂ ଶାଳଗ୍ରାମ ବିଗ୍ରହ ।

ଏହି ବିଗ୍ରହଙ୍କୁ ବାପା ବା ମାଆ କେହି ହେଲେ କେଉଁଠୁ ଆଣି ପ୍ରତିଷ୍ଠା କରି ନାହାନ୍ତି । ବରଂ ସେମାନେ ସ୍ୱ ଇଚ୍ଛାରେ ଆସି ଏ ଘରେ ଅବସ୍ଥାନ କରୁଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଥରେ ପ୍ରାତଃକାଳରେ ଜଣେ ସ୍ଥପତି ଆସି ତାଙ୍କ ସ୍ୱପ୍ନାଦେଶ କହିବା ସହ ବାପାଙ୍କୁ ତାଙ୍କ ଦ୍ୱାରା ନିର୍ମିତ ଜଗନ୍ନାଥ ମୂର୍ତ୍ତି ଅର୍ପଣ କରିଥିଲେ । ତାଙ୍କ ଘର ଶ୍ରୀକ୍ଷେତ୍ରର ଦୋଳମଣ୍ଡପ ସାହି । ସେହି ଦିନଠାରୁ ଜଗନ୍ନାଥ ଆମ ଠାକୁର ଘର ମଣ୍ଡନ କଲେ । ସେହି ପରି ଜଣେ ଅଜଣା ବ୍ୟକ୍ତି ବାପାଙ୍କୁ ଅର୍ପଣ କରିଥିଲେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି । ତୀର୍ଥ ଯାତ୍ରୀ ତାଙ୍କର ପରିଚୟ ଗୋପନ ରଖି କହିଲେ – ' ମଥୁରାରୁ ପ୍ରତ୍ୟାବର୍ତ୍ତନ କାଳରେ ଜଣେ ସନ୍ନ୍ୟାସୀ ତାଙ୍କୁ ଡାକି ଏକ ଧଳା ପାଟକନାରେ ଗୁଡା ହୋଇଥିବା ଏକ ପୁଟୁଳି ପ୍ରଦାନ କରି କହିଲେ ପୁରୀ ଯିବା ବାଟରେ କଟକ ସହରର ପରମ ବୈଷ୍ଣବ ବିଚ୍ଛନ୍ଦ ପଟ୍ଟନାୟକଙ୍କୁ ଏହା ଅର୍ପଣ କରିବ ।' ତୀର୍ଥ ଯାତ୍ରୀ ଜଣକ ଏତେ ତର ତର ଥିଲେ ଯେ ମୁହୂର୍ତ୍ତେ ସେଠାରେ ରହି ନଥିଲେ । ଆଗ୍ରହ ସହ ବାପା ପୁଟୁଳା ଖୋଲିଲା ବେଳକୁ ତହିଁରେ ଥିଲେ, ତାଙ୍କର ପରମ ଆରାଧ୍ୟ ରାଧାକୃଷ୍ଣ ଏବଂ ଶାଳଗ୍ରାମ । ଜଗନ୍ନାଥଙ୍କ ସହ ଏକ ଖଟୁଲିରେ ଦୁଇ ଅବତାର ଏକତ୍ର ଅବସ୍ଥାନ କଲେ । ଆମ ଘର ହୋଇ ଗଲା ଦେବମୟ ।

ଆଣ୍ଠୁଆଗୋପାଳଙ୍କ ଆବିର୍ଭାବ ଥିଲା ଆଶ୍ଚର୍ଯ୍ୟ ଜନକ । ଏକ ଗୁରୁବାର ଦିନ ପ୍ରାତଃକାଳରେ ଜଣେ ସ୍ୱଚ୍ଛ ଉଚ୍ଚତା ବିଶିଷ୍ଟ ଗୈରିକ ବସନ ଧାରୀ ସାଧୁଙ୍କ ଆମ ଘରେ ଆବିର୍ଭାବ ଘଟିଲା । ସେ କହିଲେ, ବୃନ୍ଦାବନସ୍ଥ ମୁଖ୍ୟ ମନ୍ଦିରର ଶେଷ ପାବଚ୍ଛରେ ଅବହେଳିତ ଅବସ୍ଥାରେ ଥିବା ଗୋପାଳଙ୍କୁ ଉଦ୍ଧାର କରି ଉତ୍କଳର କଟକ ନଗରସ୍ଥ ତାଙ୍କ

ପରମ ଭକ୍ତ ଦଂପତିଙ୍କ ପାଖରେ ପହଞ୍ଚାଇବାକୁ ଗୋପାଳ ତାଙ୍କୁ ସ୍ୱପ୍ନରେ ନିର୍ଦ୍ଦେଶ ଦେଲେ । ସାଧୁ ଜଣକ ଏକ ଅଦୃଶ୍ୟ ଶକ୍ତିର ଇଙ୍ଗିତରେ ବାଟ ପାଇ ଆମ ଘରେ ନିର୍ବିଘ୍ନରେ ପହଞ୍ଚି ବାପାଙ୍କୁ ବିଗ୍ରହ ପ୍ରଦାନ କରିଥିଲେ । ସେ ପାରିଶ୍ରମିକ ଅଗ୍ରାହ୍ୟ କରି ଥିଲେ । କହିଲେ - ଆପଣଙ୍କୁ ଉପହାର ଦେବାର ପରିଶ୍ରମ ହିଁ ମୋର ପାରିଶ୍ରମିକ ।

ଏହିପରି ଆଶ୍ଚର୍ଯ୍ୟ ଘଟଣା ଦିନେ ଘଟିଲା । ଥରେ ଦିନ ଦଶଟା ସମୟରେ କେବଳ କୌପୁନି ପରିହିତ ନିରାଭରଣ ତାମ୍ର ବର୍ଣ୍ଣର ଶରୀରଧାରୀ ଆଜାନୁ ପ୍ରଲମ୍ବିତ ଜଟାଧାରୀ ସନ୍ନ୍ୟାସୀ ଆମ ଘରେ ଉପସ୍ଥିତ ହେଲେ । ପାରଂପରିକ ରୀତିରେ ଆମେ ତାଙ୍କୁ ପ୍ରଣାମ କଲୁଁ । ବାପା ତାଙ୍କୁ କିଛି ଭିକ୍ଷା ପ୍ରଦାନ କରି ବିଦାୟ ଦେବାକୁ ଚାହିଁବାରୁ ସେ ଭିକ୍ଷା ନେବାକୁ ଆସିନାହାଁନ୍ତି ବୋଲି କହିଲେ ।

ସେ ଅଯୋଧ୍ୟାରୁ ପ୍ରଭୁ ରାମଚନ୍ଦ୍ରଙ୍କ ଆଦେଶରେ ବାପାଙ୍କୁ କିଛି ଅର୍ପଣ କରିବାକୁ ଆସିଛନ୍ତି । ଏହା କହି ସେ ତାଙ୍କ ଝୁଲା ମୁଣିରୁ ଅଭିଷିକ୍ତ ରାମଚନ୍ଦ୍ର ଖୋଦିତ ଏକ ରୌପ୍ୟ ମୁଦ୍ରା ପ୍ରଦାନ କଲେ ।

ବାପାଙ୍କର ଅନୁଭବ ହେଲା ପ୍ରଭୁ ରାମଚନ୍ଦ୍ର ତାଙ୍କ ଦ୍ୱାରା କିଛି କାର୍ଯ୍ୟ କରାଇବାକୁ ଚାହାନ୍ତି । ସେହିଦିନ ବାପା ମହାତ୍ମା ତୁଳସୀ ଦାସ ବିରଚିତ 'ଶ୍ରୀରାମଚରିତ ମାନସ'ର ଓଡିଆ ଅନୁବାଦ ଆରମ୍ଭ କଲେ ।

'ଶ୍ରୀରାମଚରିତ ମାନସ' ର ଅନୁବାଦ ପରିସମାପ୍ତି ଦିନ ମଧ୍ୟ ଏହିଭଳି ଏକ ଅଲୌକିକ ଘଟଣା ଘଟିଥିଲା । ସେଦିନ ଅନୁବାଦ ପରିସମାପ୍ତ ପାଇଁ ବାପା ବଦ୍ଧ ପରିକର ଥିଲେ । ବାହାର ଲୋକଙ୍କ ଦ୍ୱାରା କାର୍ଯ୍ୟ ବ୍ୟାହତ ହୋଇପାରେ ଭାବି ସେ ମାୟାଧର ବାବୁଙ୍କୁ ବାହାରୁ କବାଟ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସେ ନିଜେ ଡାକି କବାଟ ଖୋଲିବା ପାଇଁ ନ କହିବା ଯାଏ ଏହା ନ ଖୋଲିବାକୁ କହିଥିଲେ । ମାୟାଧରବାବୁ ବାପାଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ପ୍ରଭାତ କାଳରେ ଘରର ଦରଜା ଖୋଲି ବାପାଙ୍କୁ ଦେଖି ମାୟାଧର ଚମକି ପଡିଥିଲେ । ସେ ଭାବିଲେ ବାବୁ ତ ଭିତରେ ଥିଲେ ଆଉ ବାହାରେ ତାଲା ପଡିଥିଲା । ଏତେ ସକାଳେ କେଉଁ ସାଧୁ ଆସି ତାଙ୍କୁ ସିନ୍ଦୂର ଦେଲା !

ତାଙ୍କ ମୁଣ୍ଡରେ ସିନ୍ଦୂର ଚିତା କଥା ଶୁଣି ବାପା ମଧ୍ୟ ଚମକି ଯାଇଥିଲେ । ଦର୍ପଣରେ ତାଙ୍କ ମୁଖ ମଣ୍ଡଳ ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ଏହା କେହି ଅଦୃଶ୍ୟ ଶକ୍ତିର କାର୍ଯ୍ୟ ବୋଲି ସେ ଜାଣି ପାରିଲେ । ସେହିଭଳି ଭାବଗଦ୍‌ଗଦ ଚିତ୍ତରେ ସେ ସ୍ନାନ ନକରି ଭୁବନେଶ୍ୱରୁ କଟକ ଚାଲି ଆସିଲେ । ଏଦୃଶ୍ୟକୁ ପ୍ରତ୍ୟକ୍ଷ କରିଥିବା ନିଜେ ବାପା ,ମୋର

ମାଆ ଏବଂ ମାୟାଧର ଆର ପୁରକୁ ଗଲେଣି । ଏକମାତ୍ର ମୁଁ ଏହି ଅଦ୍ଭୁତ ଦୃଶ୍ୟ କଥା କହି ପାରିବି ।

ମୋର ଦୃଢ଼ ବିଶ୍ୱାସ ଏହା ଭଗବାନ ରାମଚନ୍ଦ୍ରଙ୍କ କାର୍ଯ୍ୟ । ତାଙ୍କର ଲୀଳା କଥାର ପରିସମାପ୍ତିରେ ସେ ବାପାଙ୍କୁ ବିଜୟର ଟୀକା ପିନ୍ଧାଇ ଦେଇଥିଲେ । ମାତ୍ର ଦୁଃଖ ଓ କ୍ଷୋଭର ବିଷୟ ବାପାଙ୍କ ଏହି କଷ୍ଟ ଲବ୍ଧ ପାଣ୍ଡୁଲିପି ଲୋକ ଲୋଚନକୁ ଆସି ପାରିଲା ନାହିଁ । ଓଡିଶା ସାହିତ୍ୟ ଏକାଡେମୀ ଏହାକୁ ପ୍ରକାଶ ପାଇଁ ନେଇ ପରେ ହଜିଗଲା ବୋଲି ସଫେଇ ଦେଲେ । ସଂପୂର୍ଣ୍ଣ ବ୍ୟକ୍ତିଗତ ଉଦ୍ୟମରେ ରଚିତ ଏହି ଦୁର୍ଲ୍ଲଭ ପାଣ୍ଡୁଲିପି ସରକାରୀ କଳର ଅବହେଳାରୁ ଦୁନିଆର ଆଲୋକ ଦେଖି ପାରିଲା ନାହିଁ । ଓଡିଆ ଜାତି ଏକ ଅମୂଲ୍ୟ ସଂପଦ ହରାଇ ବସିଲା । ଏହା କ'ଣ ଅଯୋଧ୍ୟାପତି ରାମ ଚନ୍ଦ୍ରଙ୍କ ଅନ୍ତିମ ଇଚ୍ଛା ?

ବାପା ବହୁ ପୂର୍ବରୁ ଭଗବାନ ରାମଚନ୍ଦ୍ରଙ୍କ ଭକ୍ତ ଥିଲେ । ସମୟ ଅସମୟରେ ସେ ସୀତାରାମ ଶବ୍ଦ ଉଚ୍ଚାରଣ କରୁ ଥାଆନ୍ତି । ଏକଥା ବାପା ତାଙ୍କ ଆତ୍ମ ଚରିତରେ ବହୁ ସ୍ଥାନରେ ସୂଚନା ପ୍ରଦାନ କରିଛନ୍ତି । ସେ କହନ୍ତି- 'ରଘୁନାଥଙ୍କ ଅପାର କରୁଣାରୁ ମୁଁ ରାଜନୀତିର ଆବର୍ତ୍ତ ଅବସ୍ଥାରୁ ଓହରି ଆସି ଆଧ୍ୟାତ୍ମିକ ଆଲୋକର ସନ୍ଧାନ ଲାଭ କରିଅଛି । ଯେଉଁ କର୍ମକୁ ମୁଁ ମୋର ଜୀବନର ବ୍ରତ ବୋଲି ଗ୍ରହଣ କରିଅଛି ତାହା ମୋ ଦୃଷ୍ଟିରେ ସୀତାରାମଙ୍କ ସେବା ।'

ସୀତା ରାମଙ୍କ ସେବା କରୁଥିଲେ ହେଁ ବାପା ତାଙ୍କ ପାରିବାରିକ ପରମ୍ପରାରୁ ଆପଣାର କରିଥିବା ରାଧାକୃଷ୍ଣ ସେବାରେ ଅବହେଳା ପ୍ରଦର୍ଶନ କରି ନାହାନ୍ତି । ଏହି ଚିରନ୍ତନ ଅଲୌକିକ ପ୍ରେମୀ ଯୁଗଳଙ୍କୁ ଭକ୍ତି ନୈର୍ବେଦ୍ୟ ଅର୍ପଣ କରି ଏହା ପରେ ସେ ଆରମ୍ଭ କଲେ ଭକ୍ତ କବି ସୂର ଦାସ ବିରଚିତ 'ସୁର ବିନୟ ପତ୍ରିକା'ର ଓଡିଆ ଅନୁବାଦ । ବାପାଙ୍କ ମୁହଁରୁ ମୁଁ ଶୁଣିଛି ବାପା ତାହା ସଂପୂର୍ଣ୍ଣ କରିଥିଲେ । ଅନ୍ୟ କେହି କେହି କହନ୍ତି ଏହା ଅସଂପୂର୍ଣ୍ଣ ଥିଲା । ଯାହା ହେଉ ଉକ୍ତ ଗ୍ରନ୍ଥଟି ମଧ୍ୟ ରାମ ଚରିତ ମାନସର ସମଦଶା ଭୋଗିଲା । ସମ ଦଶା ଭୋଗିଲା ତାଙ୍କ ବିରଚିତ ' ଅମରୁ ଶତକ'ର ଓଡିଆ ଅନୁବାଦ । ଅମୂଲ୍ୟ ଗ୍ରନ୍ଥ ତିନୋଟି ଲୋକ ଲୋଚନକୁ ଆସିବା ଆଗରୁ ସମାଧି ଲଭିଲା । ଏହାହିଁ ହେଉଚି ଏଜାତିର ବୀର ପୂଜା ଓ ପୂଜକଙ୍କର ଦାୟିତ୍ୱବୋଧର ନମୁନା !

ମୋର ବାପା ଓ ମାଆ ପରମ ଭକ୍ତିବାଦୀ ହୋଇଥିବାରୁ ଆମଘରେ ଏକ ବିରାଟ କୋଠରୀକୁ ଠାକୁର ଘର କରା ଯାଇଥିଲା । ସେଠାରେ ପୂର୍ବୋକ୍ତ ଦେବ ଦେବୀ ପୂଜିତ ହେଉଥିଲେ । ଦେବଅର୍ଚ୍ଚନା ଶେଷ ନ କଲେ ମାଆ କେବେ ହେଲେ ଜଳସ୍ପର୍ଶ କରୁ ନଥିଲା । ଠାକୁରମାନଙ୍କ ନିତ୍ୟ ପୂଜା ଆରାଧନା ପାଇଁ ବାପା ସମସ୍ତ ପ୍ରକାର ସୁ ବନ୍ଦୋବସ୍ତ

କରିଥିଲେ - ବାଳଭୋଗ ଲହୁଣୀଠାରୁ କାକରା ଖେଚୁଡି ପର୍ଯ୍ୟନ୍ତ । ରାତ୍ର ଧୂପ ଶେଷ ହୁଏ ବିଡିଆ ପାନରେ । ଏଣୁ ଆମେ କଟକ ଛାଡି ଭୁବନେଶ୍ୱର ଯିବାରୁ ଠାକୁରମାନଙ୍କୁ ମାଆ ସଙ୍ଗରେ ନେଇ ଯାଇଥିଲେ । ଏହା ଫଳରେ ଆମ ଡଗରପଡା ଘର ଆଖ ପାଖରେ ନାନା ଅଘଟଣ ଘଟିଲା । ଚାରି ଆଡେ ଅସମୟରେ ବିକଟ ଗର୍ଜନ ମଝିରାତିରେ ନୁପୂରର ରୁଣ୍ଟୁଝୁଣ୍ଟୁ ଶବ୍ଦ ପ୍ରଭୃତି ଶୁଭିବାକୁ ଲାଗିଲା । ଆମ ଘର ଜଗି ରହିଥିବା ଲୋକେ ଏପରି ଅଭିଯୋଗମାନ କଲେ । ମାତ୍ର ବାପା ଏପରି ଘଟଣା କୁ ବିଶ୍ୱାସ କରି ପାରିଲେ ନାହିଁ । ସେମାନଙ୍କ ପକ୍ଷରୁ ବାରମ୍ବାର ଅଭିଯୋଗ ହେବାରୁ ବାପା ଏହାର ରହସ୍ୟ ଉନ୍ମୋଚନ ପାଇଁ କଟକ ଆସିଲେ । ସେ ଅଫିସ୍ ଘରେ କାର୍ଯ୍ୟ କରୁଥିବା ବେଳେ ପ୍ରତ୍ୟକ୍ଷ ଭାବେ ଏପରି ଶବ୍ଦ ସହ କଂସା ବାସନ ପ୍ରଭୃତିର ପଡିବା ଶବ୍ଦ ଶୁଣିଲେ । ମାତ୍ର ଦେଖିବାରେ ଏପରି କିଛି ଘଟି ନଥିଲା । ଅନୁମାନ କରାଗଲା ଯେ କେହି ଜଣେ ଏ ଘରକୁ ଅପବିତ୍ର କରି ଦେଇଛି । ଘରେ ହୋମ ଯଜ୍ଞ କଲା ପରେ ଠାକୁରଙ୍କୁ ନେଇ ମାଆ ସେ ଘରେ ପ୍ରବେଶ କଲେ । ଏହା ପରେ ଏପରି କୋକୁଆ ଭୟ ଆଉ କେବେ ହୋଇ ନଥିଲା ।

ବାପାଙ୍କ ଈଶ୍ୱର ବିଶ୍ୱାସ କ୍ରମେ ଏତେ ଦୃଢ଼ୀଭୂତ ହେଲା ଯେ ଥରେ ଥରେ ଗୁଣୀ ଗାରେଡି , ହୁକୁମ ପ୍ରଭୃତି ଉପରେ ବିଶ୍ୱାସ କରିବାକୁ ଲାଗିଲେ । ସେତେବେଳେ ଅନୁଗୋଳ ନିକଟବର୍ତ୍ତୀ ରନ୍ତଲେଇ ଠାରେ କିଛି ଅଲୌକିକ ହୁକୁମ ମିଳୁଥିଲା । ବାପା ସେଠାକୁ ଯାଇ ହୁକୁମ ଆଣିଥିଲେ । ହୁକୁମ ଅନୁସାରେ ସେ ସାତ ଦିନ ପରେ ଚାଲିବା କଥା । ସତକୁ ସତ ସେ ସପ୍ତମ ଦିନ ତାଙ୍କର ପ୍ରିୟଜନଙ୍କ ଗହଣରେ ଡଗର ପଡା ବାସଭବନରୁ ଚାନ୍ଦିନୀଚୌକସ୍ଥିତ ଅକ୍ଷଶମ୍ଭୁ ମନ୍ଦିର ପର୍ଯ୍ୟନ୍ତ ବିନା ଆଶ୍ରାରେ ଚାଲି ଯାଇଥିଲେ । ମୁଁ ମଧ୍ୟ ତାଙ୍କ ସହ ଏହି ଶୋଭା ଯାତ୍ରାରେ ଯୋଗ ଦେଇଥିଲି । ତାଙ୍କର ସେ ଦିନର ଆନନ୍ଦ କଥାରେ ପ୍ରକାଶ କରି ହେବ ନାହିଁ। ଏହା ସେ ସମୟରେ ଚହଳ ପକାଇ ଦେଇଥିଲା । ମାତ୍ର ଏହି ସଫଳ ଚାଲିବା ଥିଲା ସାମୟିକ । ଦୈବ ଆଶୀର୍ବାଦ ହେଉ ବା ବାପାଙ୍କ ଆତ୍ମ ବିଶ୍ୱାସ ହେଉ ଏହା କିଛି ଦିନ ପାଇଁ ସତ୍ୟ ହୋଇଥିଲା ।

ମଧ୍ୟେ ମଧ୍ୟେ ଶାରୀରିକ ଅସୁସ୍ଥତା ତାଙ୍କୁ ବିଚଳିତ କରୁଥାଏ । ସେ ଜାଣିଥିଲେ କବି କଳ୍ପଲୋକ ତାଙ୍କର ସ୍ୱଦେଶ ହେଲେ ହେଁ ଈଶ୍ୱରଙ୍କ ଇଚ୍ଛାରେ ସେ ନିର୍ଦ୍ଦିଷ୍ଟ କାର୍ଯ୍ୟ ସଂପାଦନ ନିମିତ୍ତ ଏହି ଇହ ଲୋକକୁ ଆସିଛନ୍ତି । କର୍ମ ଶେଷ ହେଲେ ସେ ପୁଣି ତାଙ୍କ ସ୍ୱଦେଶକୁ ବାହୁଡି ଯିବେ । ଈଶ୍ୱର ଇଚ୍ଛା ବଳବତ୍ତର ଜାଣି ଈଶ୍ୱର ପ୍ରୀତ୍ୟର୍ଥେ ସେ ଅନ୍ତରର ଅନୁପ୍ରେରଣାର ବଶବର୍ତ୍ତୀ ହୋଇ ନିର୍ଭୀକ ଭାବେ କର୍ମ କରି ଯାଉଥିଲେ । ଈଶ୍ୱର ବିଶ୍ୱାସ ଓ ପରଲୋକ ବିଶ୍ୱାସ ତାଙ୍କୁ ନିଜ କର୍ତ୍ତବ୍ୟ ସଂପାଦନରେ ମନୋବଳ ଯୋଗାଉ ଥିଲା ।

୧୯୬୦ ମସିହା ଜୁନ୍ ମାସରେ ସେ ଝଙ୍କଡର ସାରଳା ଦର୍ଶନରେ ଯାଇଥିଲେ । ଏହା ଭଞ୍ଜ ଜୟନ୍ତୀ ପାଇଁ ଆଶୀର୍ବାଦ ଭିକ୍ଷା ବା ଦେବୀ ଦର୍ଶନ ମୋର ଠିକ୍ ମନେ ପଡୁ ନାହିଁ । କିନ୍ତୁ ସାରଳା ଯିବା ପୂର୍ବ ରାତ୍ରିରେ ସେ ଏକ ଦୁଃସ୍ୱପ୍ନ ଦେଖିଥିଲେ - ଜଣେ ବୟସ୍କା ନାରୀ ଏକ ଦଶ ବାର ବର୍ଷର ବାଳିକା ସହ ସଂପୂର୍ଣ ଉଲଗ୍ନ ଅବସ୍ଥାରେ ତାଙ୍କ ଶଯ୍ୟା ଚାରି ପଟେ ବିକଟ ହାସ୍ୟରୋଳ ସହ ନୃତ୍ୟ କରୁଥିଲେ । ବାପା ତାଙ୍କୁ ଯେତେ ବିତାଡିତ କଲେ ବି ସେମାନେ ଯାଇ ନଥିଲେ । ଏଥିରେ ବାପା କ୍ରୋଧ ପ୍ରକାଶ କରିବା ସହ ଅନ୍ତରରେ ଭାରି ଡରି ଯାଇଥିଲେ । ହୁଏତ ଦେବୀ ଦର୍ଶନ ଦ୍ୱାରା ଏଭଳି ଦୁଃସ୍ୱପ୍ନକୁ ଏଡାଇ ହେବ ବୋଲି ତାଙ୍କର ବିଶ୍ୱାସ ହୋଇ ଥିବ । ଏହି ଦୁଃସ୍ୱପ୍ନ ବୃତାନ୍ତ ଶୁଣି ମାଆ ବହୁତ ଭାଙ୍ଗି ପଡିଥିଲା । ସେ ବାପାଙ୍କୁ ମାନସିକ ସାମର୍ଥ୍ୟ ଓ ଆଶ୍ୱାସନା ପ୍ରଦାନ ନିମିତ୍ତ ତାଙ୍କ ଶଯ୍ୟା ତଳେ ଠାକୁରଙ୍କ ପାଦୁକ ଏବଂ ମାନସିକ ଅର୍ଥ ରଖି ଦେଇଥିଲା । ହେଲେ ସେହି ଦୁଃସ୍ୱପ୍ନ ବାପାଙ୍କୁ ଶେଷ ସମୟ ପର୍ଯ୍ୟନ୍ତ ଆଚ୍ଛନ୍ନ କରି ରଖିଥିଲା । ବାପା ମଧ୍ୟେ ମଧ୍ୟେ ଏହି ସ୍ୱପ୍ନ ବୃତାନ୍ତ ଆମ୍ଭମାନଙ୍କୁ କହି ଥାନ୍ତି ।

ପରଲୋକ ବିଶ୍ୱାସ ତାଙ୍କର ପ୍ରବଳ ଥିଲା । ପରଲୋକର ସ୍ତର ପରଂପରା ସମ୍ବନ୍ଧରେ ସେ ନିଃସନ୍ଦେହ ଥିଲେ । ପ୍ଲାଞ୍ଚେଟ ମାଧ୍ୟମରେ ପରଲୋକ ଗତ ଆତ୍ମା ମାନଙ୍କୁ ଡାକି ରାତି ରାତି ଅନିଦ୍ରା ହୋଇ ସେମାନଙ୍କ ସହ ସେ କଥୋପ କଥନ ହେଉଥିଲେ । ମୋତେ କହୁଥିଲେ ବହୁ ମନିଷୀ ଓ ପ୍ରିୟ ଜନଙ୍କୁ ସେ ପ୍ଲାଞ୍ଚେଟ ମାଧ୍ୟମରେ ଡାକୁଥିଲେ । ଥରେ ତାଙ୍କ ବାପାଙ୍କୁ ଡାକିଥିଲେ । ତାଙ୍କ ଚିତ୍ତରେ ବିଶ୍ୱାସ ଜନ୍ମାଇବା ପାଇଁ ସେହି ଆତ୍ମା ତାଙ୍କର ପୂର୍ଣ ସ୍ୱାକ୍ଷର କରି ଯାଇଥିଲେ ।

ଏହି କାର୍ଯ୍ୟ କରି ପରଲୋକ ଗତ ଆତ୍ମାଙ୍କ ଆଶୀର୍ବାଦ ତାଙ୍କୁ ଉନ୍ନତି ପଥରେ ଆଗେଇ ନେଇଥିଲେ ହେଁ ତାଙ୍କୁ କେହି ଦୁଷ୍ଟ ଆତ୍ମା ଦୁଇଥର ଉନ୍ମାଦ ଗ୍ରସ୍ତ କରି ଦେଇଥିଲା । ଏଣୁ ଦ୍ୱିତୀୟ ଥର ସୁସ୍ଥ ହେବା ପରେ ସେ ଅନ୍ୟମାନଙ୍କ ଉପଦେଶ ମାନି ପ୍ଲାଞ୍ଚେଟ ଡକା କାର୍ଯ୍ୟ ବନ୍ଦ କରି ଦେଇଥିଲେ ।



ଭ୍ରାତୃ ବିଚ୍ଛେଦ :

ସନ୍ତାନ ସମ୍ମୁଖରେ ପିତା ମାତାଙ୍କ ବିଚ୍ଛେଦ ଏକ ଚିରାଚରିତ ଘଟଣା ହେଲେ ହେଁ ବାପା ପିତା ମାତାଙ୍କୁ ହରାଇ ଗଭୀର ମର୍ମାହତ ହୋଇଥିଲେ । ତାଙ୍କ ଅନୁଜ କାଳିଚରଣ ବହୁ ଆଗରୁ ବାଟ କାଟି ସେ ପୁରକୁ ଚାଲି ଯାଇଥିଲେ । ଏବେ ପରିଣତ ବୟସରେ ତାଙ୍କୁ ଜ୍ୟେଷ୍ଠଭ୍ରାତାଙ୍କ ବିଚ୍ଛେଦ ସହିବାକୁ ପଡିଥିଲା ।

ଉଭୟ ଭାଇଙ୍କ ମଧ୍ୟରେ ଜମି ଜମା ନେଇ ଦୀର୍ଘ ଦିନ ଧରି ଚାଲି ଆସିଥିବା ବିବାଦର ଏକ ଶାନ୍ତି ପୂର୍ଣ ସମାଧାନ ସେତେବେଳକୁ ହୋଇ ସାରି ଥାଏ । ୧୯୫୮ ମସିହାରେ ବଡବାପା ପଦ୍ମଚରଣ ପଟ୍ଟନାୟକ ପରଲୋକ ଗମନ କଲେ । ବାପା ବ୍ୟଥିତ ଚିତ୍ତରେ ସଂସ୍କାର କାର୍ଯ୍ୟ ସମାପନ କରିଥିଲେ ।

ସେ କହୁଥିଲେ ୭୫ ବର୍ଷ ବୟସରେ ପରଲୋକ ଗମନ କଲେ ସୁଦ୍ଧା ତାଙ୍କ ଠାରେ ବାର୍ଦ୍ଧକ୍ୟର ଲେଶମାତ୍ର ଚିହ୍ନ ନଥିଲା । ତାଙ୍କ ଶରୀରରେ ମୃତ୍ୟୁର କୌଣସି ଲକ୍ଷଣ ପରିଲକ୍ଷିତ ହେଉ ନଥିଲା ।

ବଡବାପା ଜଣେ ଶରୀରବିତ୍ ଥିଲେ । ଆମର ସ୍ୱାସ୍ଥ୍ୟରକ୍ଷା ବିଷୟରେ ସେ ଅନେକ ବହି ଓ ପ୍ରବନ୍ଧ ରଚନା କରି ଯାଇଛନ୍ତି । ତଥାପି ମୃତ୍ୟୁ ତାଙ୍କୁ ଛାଡି ନଥିଲା , ହୁଏତ ବିଳମ୍ବରେ ଆସିଥିଲା । ସେ ବାପାଙ୍କ ଠାରୁ ବୟସରେ ବହୁତ ବଡ ଥିଲେ । ତାଙ୍କ ବଡ ପୁଅ ପ୍ରଫୁଲ୍ଲ ଭାଇ ଆମ ବାପାଙ୍କ ଠାରୁ ମାତ୍ର ୧୪ ବର୍ଷ ସାନ ଥିଲେ । ବାପା ବହୁ କଷ୍ଟରେ ଏ ଦୁଃଖକୁ ନିଜ ଭିତରେ ଲୁଚେଇ ଦେଇଥିଲେ । ମୁଁ ତାଙ୍କ ବିଷୟରେ ବ୍ୟସ୍ତ ଥିବାରୁ ସେ ମୋତେ ବୁଝେଇ ଦେଇଥିଲେ - ବିଜ୍ଞ ଲୋକଙ୍କ ଏକ ମହତଗୁଣ ହେଉଛି ସେମାନେ ବିପଦରେ କେବେଲେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ ।

ଆମ ବଡମାଆ ତା ପରେ ବହୁ ବର୍ଷ ଜୀବିତ ଥିଲେ । ସେ ବଡବାପାଙ୍କ ଦ୍ୱିତୀୟ ପକ୍ଷ ସ୍ତ୍ରୀ ଥିବାରୁ ବୟସରେ ତାଙ୍କଠାରୁ ବେଶ୍ ସାନଥିଲେ । ବଡମାଆ ଆମ ବାପାଙ୍କୁ ଦିନେ ହେଲେ ସୁ ନଜରରେ ଦେଖି ନାହାନ୍ତି । କିମ୍ବା ବାପାଙ୍କ ମଙ୍ଗଳ ଚିନ୍ତା କରିଥିବା ଜଣା ଯାଏ ନାହିଁ । ବରଂ ବାପାଙ୍କ ଶିକ୍ଷା ଗ୍ରହଣ ଠାରୁ ବାପାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ତାଙ୍କୁ ବିରୋଧ କରି ଆସିଛନ୍ତି ।



## ଦେଶପ୍ରୀତିର ଧ୍ୱଜାଧାରୀ :

ବାପା ଜଣେ ପରମ ଜାତୀୟତାବାଦୀ ଥିଲେ । ସେ ଭାରତମାତାର ମୁକ୍ତି ସହ ଉତ୍କଳ ଜନନୀର ସ୍ୱାଭିମାନ ବିଷୟରେ ସଚେତନ ଥିଲେ । ସେ ଅଖଣ୍ଡ ଉତ୍କଳ ପ୍ରଦେଶରେ ବିଶ୍ୱାସ କରୁଥିଲେ । ମାତ୍ର ପୂର୍ବୋକ୍ତ ରାଜନେତା ମାନେ ଏପରି ଚିନ୍ତା କେବେ କରୁ ନଥିଲେ । ଏଥିପାଇଁ ବାପାଙ୍କ ସହ ସେମାନଙ୍କ ଆଦର୍ଶଗତ ମତ ଭେଦ ଉପୁଜି ଥିଲା । ବାପା ସନ୍ଦେହ କରିଥିଲେ ଯେ ଭାରତ ସ୍ୱାଧୀନ ହେଲା ପରେ ଓଡିଶାରେ ଆଞ୍ଚଳିକତା ମୁଣ୍ଡ ଟେକିବ । ଏହା ଫଳରେ ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତିରେ ଘୋର ଦୁର୍ଦ୍ଦିନ ଆସିବ ।

ତାଙ୍କ ଏ ସନ୍ଦେହ ସତ୍ୟରେ ପରିଣତ ହୋଇଥିଲା । ଏହି ତଥା କଥିତ ରାଜ ନେତା ମାନେ ନିଜର ସ୍ୱାଭିମାନ ସହ ଷଢ଼େଇକଳା , ଖରସୁଆଁକୁ ଅନ୍ୟ ହାତରେ ଟେକି ଦେଇ , ସ୍ୱାଭିମାନୀ ଉତ୍କଳବାସୀଙ୍କୁ ଗୁଳି ବନ୍ଧୁକର ଧମକ ଦେଇ ତାଙ୍କ କଣ୍ଠ ରୋଧ କରିଦେଲେ ।

ପୂର୍ବରୁ ଉତ୍କଳର ବିଛିନ୍ନାଞ୍ଚଳ ମିଶ୍ରଣ ପାଇଁ ବାପା ସତତ ଉଦ୍ୟମ କରିଥିଲେ । ଏଦିଗରେ ତାଙ୍କର ଆଦର୍ଶ ଥିଲେ ମଧୁସୂଦନ ଦାସ ଓ ଗୋପବନ୍ଧୁ ଦାସ । ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହେଲେ ହେଁ ଏଥିରୁ ମେଦିନୀପୁର ଜିଲା ବାଦ ପଡି ଯାଇଥିଲା । ମେଦିନୀପୁରକୁ ଓଡିଶା ସହ ମିଶ୍ରଣ ଦାବୀରେ ସେ ଯୁବକମାନଙ୍କୁ ପ୍ରସ୍ତୁତ କରାଇ ଉତ୍କଳ ଦେଶ ମିଶ୍ରଣ ସଂଘ ଗଠନ କରିଥିଲେ । ଓଡ୍‌ନେଲ କମିଟି ଆଗରେ ଏ ବିଷୟରେ ସାକ୍ଷ୍ୟ ଦେବା ପାଇଁ ଦଳେ ଯୁବ ବନ୍ଧୁଙ୍କୁ ତାଲିମ ଦେଇ ପ୍ରେରଣ କରିଥିଲେ । ବାପା ନିୟମିତ ଭାବେ ପ୍ରାଚୀ ପତ୍ରିକାରେ ପ୍ରବନ୍ଧ ଲେଖୁଥିଲେ । ଏହାର ଏକ ସଂଖ୍ୟାରେ ମେଦିନୀପୁର ମିଶ୍ରଣ ବିଷୟରେ ସେ " History's verdict against Bengal's unholy claim" ଶୀର୍ଷକ ଏକ ପ୍ରବନ୍ଧରେ ସେ ଲେଖିଥିଲେ-

" Personally we are ready to offer our heads to be smashed to provide cement that would weld for ever the disunion of our land. It is our considered opinion that from the blood of our martyrs will spring the tree of greater orissa "

ମାତ୍ର ତାଙ୍କ ସ୍ୱପ୍ନ ତ ସାକାର ହେଲା ନାହିଁ, ବରଂ ରାଜନେତା ମାନେ ଏହି ଖଣ୍ଡିତ ଉତ୍କଳରୁ ଷଢ଼େଇକଳା ଖରସୁଆଁ ଅଂଶ ପ୍ରତିବେଶୀ ପ୍ରଦେଶ ହାତରେ ଟେକି

ଦେବାରେ ଦ୍ୱିଧା ପ୍ରକାଶ କଲେ ନାହିଁ । ସେତେବେଳେ ସେମାନେ ନିଜର ଚେୟାର ଆଗରେ ଏହି ଦେଶ ଭକ୍ତିକୁ ବଳି ଦେଇଥିଲେ । ରାଜ ନେତାଙ୍କ ଏତାଦୃଶ ବ୍ୟବହାରରେ ସେ ବ୍ୟଥିତ ହେଲେ । ବାପାଙ୍କ ସଂଗ୍ରାମୀ ରକ୍ତ କ୍ରୋଧରେ ତାତି ଉଠିଲା । ଗ୍ରାମର ସକଳ ଯୁବକଙ୍କୁ ଡାକି ଏ ବିଷୟରେ କହିଲେ , 'ଆରେ ସିଂହ ଶାବକ ହୋଇ ଶୃଗାଳ ପ୍ରାୟ ଘରେ ବସି ରହିଛ ! ଏଇ ଖୋର୍ଦ୍ଧାର ବୀର ପୁରୁଷଙ୍କ ରକ୍ତ ପରା ତୁମ ଦେହରେ ପ୍ରବାହିତ ହେଉଚି । ଏବେ ଉଠ , ଜାଗ୍ରତ ହୁଅ । ମାତୃଭୂମିର ଅଙ୍ଗ ଛେଦକୁ ପ୍ରତିରୋଧ କର ।'

ସେତେବେଳେ ଆମ ଗାଆଁ ଘରେ ବାରମ୍ବାର ଆଲୋଚନା ସଭା ହେଲା । ବାପା ସେମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ- 'ଦେଖ ଏଇ ଖୋର୍ଦ୍ଧା ହେଉଛି ବୀର ଭୂମି । ଓଡିଆ ଇତିହାସର ଜାତୀୟ ରଣ ଶିବିର । ଭାରତର ସ୍ୱାଧୀନତା ସୂର୍ଯ୍ୟ ଅସ୍ତମିତ ନ ହେଉଣୁ ବିଦ୍ରୋହର ପ୍ରଥମ ରଣ ଶିଙ୍ଗା ବାଜିଥିଲା ଏଇ ଖୋର୍ଦ୍ଧା ଭୂମିରୁ । ବିଦ୍ରୋହର ଜ୍ୱଳନ୍ତ ଅଗ୍ନିରେ ଝାସ ଦେଇ ବୀର ଓଡିଆ ପୁଅ ଖୋର୍ଦ୍ଧାକୁ ରଣ କ୍ଷେତ୍ରରେ ପରିଣତ କରି ଗଲେ । ତମେ ସେହି ବୀରର ବଂଶ ଧର ।

'ମାତ୍ର ଏବେ ସ୍ୱାଧୀନ ଭାରତର ପଡୋଶୀ ରାଜ୍ୟ ଚକ୍ରାନ୍ତ କରି ଆମ ମାଟିରୁ ଅଂଶମାନ ଛିଣ୍ଡେଇ ନେବାକୁ ବସିଲେଣି । ଆଜି ଯାଉଛି ଷଢ଼େଇକଳା ଖରସୁଆଁ । ପରେ ପୁଣି କଅଣ ଯିବ କିଏ କହି ପାରିବ ? ଏଣୁ ଏହାକୁ ବିରୋଧ କରିବାକୁ ହେବ । ଦିନେ ଅସହଯୋଗ ଓ ଅହିଂସା ବଳରେ ଆମେ ସ୍ୱାଧୀନତା ଆଣିଥିଲୁଁ । ଆଜି ସେହି ଅହିଂସା ଓ ଅସହଯୋଗ ବଳରେ ଆମ ଦାବୀ ହାସଲ କରିବାକୁ ହେବ ।'

ସେମାନଙ୍କୁ ଖୋର୍ଦ୍ଧା ଭୁବନେଶ୍ୱର ରାସ୍ତା ଅବରୋଧ ପାଇଁ ପ୍ରବର୍ତ୍ତାଇ ସେ ରାତିରେ ଭୁବନେଶ୍ୱର ଫେରିଗଲେ । ସେତେବେଳେ ଆମେ ମାଆ ସହ ଗାଆଁରେ ରହୁଥାଉଁ । ମୁଁ ବାପାଙ୍କ ସେହି ଅଗ୍ନିବର୍ଷି ଭାଷଣ ଏବଂ ଗ୍ରାମ ଯୁବକଙ୍କଠାରେ ତାର ପ୍ରତିଧ୍ୱନି ଶୁଣିଛି । ସେହି ରାତ୍ରିରେ କାର୍ଯ୍ୟ ଆରମ୍ଭ ହେଲା । ସେମାନେ ବଡ ବଡ କାଠ ଗଣ୍ଡିମାନ ରାସ୍ତା ଉପରେ ଶୁଆଇ ସାରା ରାତ୍ରି ତାକୁ ଜଗି ରହିଲେ । ଏଭଳି ନାକାବନ୍ଦୀ ଦୀର୍ଘ ଚାରିଦିନ ଯାଏ ଲାଗି ରହିଲା ।

କାଳକ୍ରମେ ସବୁ ଯୁବକ ଗିରଫ୍ ହୋଇଗଲେ । ସାରା ଓଡିଶା ଜଳିଲା । ମାତ୍ର ଫଳ କିଛି ହେଲା ନାହିଁ । କେନ୍ଦ୍ର ସରକାରଙ୍କ ଗୋଟିଏ କଲମ ଗାରରେ ଓଡିଶାର ଦୁଇ ସମୃଦ୍ଧ ଅଞ୍ଚଳ ଚିର ଦିନ ପାଇଁ ଓଡିଶାରୁ ଚାଲିଗଲା । ନିଜ ମାଟିରେ ଓଡିଆ ହେଲା ବିଦେଶୀ । ବାପା ଦୁଃଖରେ ଭାଙ୍ଗି ପଡି କହିଲେ, ' କାହାକୁ କହିବା ? ଆପଣା ସୁନା ତ ଭେଣ୍ଡି !'

ସେ ଅନୁଭବ କଲେ କ୍ରମେ ଓଡିଆମାନେ ନିଜ ପରଂପରା ପ୍ରତି ଉଦାସୀନ ହୋଇ ପଡୁଛନ୍ତି । ନିଜ ଜାତିର ମୌଳିକତା ପ୍ରତି ତାଙ୍କର ନଜର ନାହିଁ । ଅନ୍ୟମାନେ ଓଡିଆଙ୍କୁ ଅପଦାର୍ଥ ବୋଲି ଚିତ୍ରଣ କଲେ । ହୀନ ମନ୍ୟତା ସେମାଙ୍କୁ ଗ୍ରାସ କଲା । ଏହାର ସୁଯୋଗ ନେଲେ ପଡୋଶୀ ରାଜ୍ୟମାନେ ।

ଦିନେ ତାଙ୍କ ସତ୍ୟବାଦୀ ସ୍କୁଲର ଅଧ୍ୟାପକମାନେ ଖଣ୍ଡିତ ଉତ୍କଳର ଦୈନ୍ୟ ଦେଖି କାନ୍ଦି ଉଠିଥିଲେ । କବି ଗୋଦାବରୀଶ ମିଶ୍ର 'ଦୁଃଖୀଧନ' କବିତାରେ ତାଙ୍କ ମନୋଭାବ ପ୍ରକାଶ କରିଛନ୍ତି-

ବଡ ହୀନୀମାନ ଆମଘର ଦଶା କହିଲେ ଫାଟଇ ବୁକୁ
ଚଉଖଣ୍ଡ ହୋଇ ଓଡିଶାମାଟି ଲୋ ପଡିହୁଏ ଦୁକୁ ଦୁକୁ ।

ଓଡିଶାର ଦୁର୍ଦ୍ଦିନରେ ନିଜ ଗୁରୁଦେବଙ୍କ ଭଳି ବାପା ମ୍ରିୟମାଣ ହେଉଥିଲେ ହେଁ ଆଶାବାଦର ସ୍ୱର ପ୍ରକାଶ କରିବାରେ ସେ କେବେ ଅବହେଳା କରି ନାହାନ୍ତି । ତାଙ୍କର ବିଶ୍ୱାସ ଥିଲା ଦିନେ ନା ଦିନେ ଓଡିଶା ତାର ହୃତ ଗୌରବ ଫେରି ପାଇବ । ଏହି ଆଶାରେ ସେ ଗାଇଥିଲେ-

ଶୂର ବୀର ବକ୍ଷେ ବନ୍ଧ ଆଉବାରେ
କେଶରୀ ଗହ୍ୱର ଭରୁ କେଶରୀରେ
ବିଚ୍ଛନ୍ଦ ମଉଳି ନତ କାହାଠାରେ
ନୋହୁ ମା ତ୍ରିଦଶ କାମ୍ୟାଗୋ, ଶସ୍ୟଶ୍ୟାମା ।

ବାପାଙ୍କ ଦେଶାତ୍ମବୋଧ ଓ ସ୍ୱଦେଶ ପ୍ରୀତି ଥିଲା ସଂକ୍ରାମକ । ତାଙ୍କ ସାନ୍ନିଧ୍ୟକୁ ଆସିଲେ ଯେକୌଣସି ବ୍ୟକ୍ତି ସ୍ୱଦେଶ ପ୍ରୀତିରେ ଉଦ୍‌ବୋଧିତ ହୋଇ ଯାଉଥିଲେ । ଏବିଷୟରେ ବିଶିଷ୍ଟ ବାଗ୍ମୀ ଓ ଭଞ୍ଜ ପ୍ରବକ୍ତା ଗୌରୀକୁମାର ବ୍ରହ୍ମା କହନ୍ତି - -'ସିଂହ ବିକ୍ରମଶାଳୀ ବିଚ୍ଛନ୍ଦଚରଣ ପଟ୍ଟନାୟକ ଭଞ୍ଜ ସାହିତ୍ୟର ହିମାଦ୍ରି କନ୍ଦରକୁ ଆଶ୍ରୟ କରି ଯେଉଁ ହୁଙ୍କାର ଦେଉଥିଲେ, ତାହା ଓଡିଆ ଜାତି ଓ ସଂସ୍କୃତିର ଅପକର୍ଷ ପ୍ରଖ୍ୟାପକ ଅନ୍ୟ ଭଷା ଭାଷୀ ଅଥଚ ଓଡିଶା ନିବାସୀ ବହୁ ବ୍ୟକ୍ତିଙ୍କ ପ୍ରାଣରେ ଆତଙ୍କର ପ୍ରକମ୍ପ ସୃଷ୍ଟି କରୁଥିଲା ।'

ମହାପାତ୍ର ନୀଳମଣି ସାହୁ ତାଙ୍କ ଏତାଦୃଶ ବ୍ୟକ୍ତିତ୍ୱ ବିଷୟରେ କହନ୍ତି - ବିଚ୍ଛନ୍ଦ ଚରଣ ବୀର ପୁରୁଷ ଥିଲେ । ଏତେ ଚମତ୍କାର ଜାତ୍ୟାଭିମାନୀ ଏବଂ ସଂସ୍କୃତି ସମ୍ପନ୍ନ ଉତ୍ସାହବନ୍ତ ପ୍ରାଣୋଚ୍ଛଳ ରସିକ ପୁରୁଷ ମୁଁ ଆଉ ଦ୍ୱିତୀୟ ଦେଖି ନାହିଁ। କିନ୍ତୁ , କୋଉଠୁ ପାଇଲେ ବିଚ୍ଛନ୍ଦଚରଣ ଏହି ଅଟଳ ଆତ୍ମ ବିଶ୍ୱାସ ? ଏହି ଅନମନୀୟ କାଳଜୟୀ ବ୍ୟକ୍ତିତ୍ୱ ? ତାଙ୍କ ବ୍ୟକ୍ତିତ୍ୱର ମୂଳ ଗଭୀରରେ କ'ଣ ଥିଲା ? କୋଉ ମୌଳିକ ଉପାଦାନରେ

ଏହି ଅନମନୀୟ ସଂଗ୍ରାମୀ ବ୍ୟକ୍ତିଟିର ଏହି ସାଧନା ମୟ ବ୍ୟକ୍ତିତ୍ୱଟି ତିଆରି ହୋଇଥିଲା । ତାଙ୍କର ଏତେ ଆତ୍ମବିଶ୍ୱାସ! ଏତେ ଜାତି ପ୍ରୀତି , ସଂସ୍କୃତି ଅନୁରାଗ , ଏତେ ଆତ୍ମ ମର୍ଯ୍ୟାଦା ବୋଧ ଓ ଏତେ ଆଦାର୍ଶନୁପ୍ରାଣତା ଆସିଲା କୋଉଠୁ ? ଜୀବନ ସଂଗ୍ରାମର ଏହି ନିଷ୍ଠୁର ବାସ୍ତବତା ଭିତରେ ଏହି ନିରାଶ୍ରୟ ସଂସାର ମେରୁରେ ଏହି ସ୍ୱାର୍ଥ ସଂଘର୍ଷମୟ ପ୍ରପଞ୍ଚ ମଞ୍ଚରେ ସେ କୋଉଠୁ ପାଇଲେ ଏହି ଭାବ ପ୍ରବଣତା ? ଏତେ ବାତୁଳତା, ଏତେ ଜୀବନବୋଧ, ଏତେ ସଂଗଠନ କ୍ଷମତା, ଏତେ ଜୀବନ ଭୋଗ ଧର୍ମିତା ? ? ଶେଷରେ ଏତେ ଶକ୍ତି , ଏତେ ସାମର୍ଥ୍ୟ ?'

ସାହିତ୍ୟ ସେବାରେ ନିଜକୁ ସମର୍ପି ଦେଇଥିଲେ ମଧ୍ୟ ସେ ନିଜ ଜନ୍ମ ମାଟି ବୀରଭୂମି ଜାଆଁଳାକୁ ଭୁଲି ପାରି ନଥାଆନ୍ତି । ସେ ନିଜ ପିତୃମାତୃ ଭୂମିକୁ କଦାପି ହାତଛଡା କରିବାକୁ ଚାହିଁ ନଥିଲେ ।ସେ ବିଶ୍ୱାସ କରୁଥିଲେ, ଯେପରି ଗାଁ ମାଟି ସେହିପରି ନିଜ ମାତୃଭୂମି । ଏ ଦୁଇଟି ପ୍ରତି ଐକାନ୍ତିକ ସଂପର୍କ ମଣିଷକୁ ମଣିଷ କରି ତୋଳେ



## ସାହିତ୍ୟ ସେବା ଓ ଦେଶ ସେବା :

ବାପାଙ୍କ ଆଦର୍ଶ ଓ କାର୍ଯ୍ୟଧାରା ମଧ୍ୟରେ କୌଣସି ଦ୍ୱିଧା ବୋଧ ନଥିଲା । ସେ ଯେଉଁ ଆଦର୍ଶକୁ ଉପଜୀବ୍ୟ କରିଥିଲେ ତାହାକୁ ସେ କାୟ ମନୋ ବାକ୍ୟରେ ପାଳନ କରୁଥିଲେ । ସାହିତ୍ୟ, ସଂଗୀତ, ନୃତ୍ୟ ଏବଂ ରାଜନୀତି ମଧ୍ୟରେ ସେହି ଗୋଟିଏ ଚେତନାକୁ ପୁଷ୍ଟ କରିଥିଲେ । କୌଣସି ପ୍ରକାର ଗୋଳିଆ କଥାକୁ ସେ ପସନ୍ଦ କରୁନଥିଲେ । ଦେଶର ସର୍ବାଙ୍ଗୀନ ଉନ୍ନତି ତାଙ୍କର କାମ୍ୟ ଥିଲା । ସେ କହୁଥିଲେ ଜଣେ ବ୍ୟକ୍ତି ସାହିତ୍ୟ ବା ସଙ୍ଗୀତ ବା ରାଜନୀତି ଯେ କୌଣସି ଗୋଟିକ ମାଧ୍ୟମରେ ଦେଶ ସେବା କରି ପାରିବ ଏବଂ ଦେଶର ସମୁଚିତ ଉନ୍ନତି ପାଇଁ ଚିନ୍ତା ମଧ୍ୟ କରି ପାରିବ ।

ଥରେ ଥରେ, ମୋ ବାଲ୍ୟ ଚପଳତା ସୁଲଭ ପ୍ରଶ୍ନର ଉତ୍ତର ଦେଇ ସେ ଏମିତି କେତେ ଗୂଢ଼ ତଥ୍ୟ କହିଛନ୍ତି । ସବୁ ହୁଏତ ମୁଁ ବୁଝିବା ଭଳି ନଥିଲା । ଥରେ ମୁଁ ତାଙ୍କୁ ପଚାରିଥିଲି- ମୋ ଜାଣିବାରେ ଆପଣ ଜଣେ କବି ଆଉ ସାହିତ୍ୟିକ । ହେଲେ ସାହିତ୍ୟ ମାଧ୍ୟମରେ କ'ଣ ଦେଶ ସେବା କରି ହୁଏ ? ତାର ଉତ୍ତର ଥିଲା ଭାରି ସରଳ-

' କେବଳ ରାଜନୈତିକ ସଂଘର୍ଷ ଫଳରେ ଭାରତ ସ୍ୱାଧୀନ ହୋଇ ନାହିଁ । ଏଥିରେ ନିହିତ ଥିଲା ସାଂସ୍କୃତିକ ଚେତନା । ଦେଶ ସିନା ସ୍ୱାଧୀନ ହେଲା , ମାତ୍ର ଇଂରାଜୀ ଶିକ୍ଷାର କୁଫଳ ଏ ଦେଶବାସୀ ଭୋଗୁଛନ୍ତି । ଏବେ ଇଂରାଜୀ ଶିକ୍ଷିତ ଲୋକଙ୍କୁ ଶ୍ରେଷ୍ଠ ବୋଲି ବିବେଚନା କରା ଯାଉଛି । ଏହି ଶିକ୍ଷାର ପ୍ରଭାବରେ ଭାରତର ଆଧ୍ୟାତ୍ମିକ ଦୃଷ୍ଟି ଉପରେ ପରଳ ମାଡି ଯାଇଚି । ଏ ପରଳ ଦୂର କରିବାକୁ ସାହିତ୍ୟ ହିଁ ଏକମାତ୍ର ଆୟୁଧ । ନାନା ଦୋଷରେ ଦୂଷିତ ପ୍ରଚଳିତ ଶିକ୍ଷା ନୀତି ଛାତ୍ରଙ୍କ ଆଗରେ ବିଭିନ୍ନ ଅନାଦର୍ଶ ଉପସ୍ଥାପିତ କରି ସେମାନଙ୍କୁ ଦିଗ୍‌ଭ୍ରାନ୍ତ କରୁଛି ।

'ସେମାନେ ପାଶ୍ଚାତ୍ୟ ଢ଼ଙ୍ଗ ଓ ଆଦର୍ଶରେ ପରି ଚାଳିତ । ଭାରତୀୟ ଆଦର୍ଶର ଚିରନ୍ତନ ସତ୍ୟର ଆଲୋକ ସେମାନଙ୍କ ଜୀବନ ପଥକୁ ଉଦ୍ଭାସିତ କରି ପାରୁ ନାହିଁ । ଭାରତ ସ୍ୱାଧୀନ ହେଲା ପରେ ମଧ୍ୟ ଏ ଦୁରାରୋଗ୍ୟ ବ୍ୟାଧିର ପ୍ରତିକାର ହୋଇ ପାରୁ ନାହିଁ । ଏହି ଭୟାବହ ସ୍ଥିତିର ଅବସାନ ନ ଘଟାଇଲେ ଉତ୍କଳୀୟ ଲୋକଙ୍କ ମନରୁ ସତ୍ୟ-ଶିବ-ସୁନ୍ଦରଯୁକ୍ତ ଆଦର୍ଶର ଆସ୍ଥା ତୁଟି ଯିବ । ଇଂରାଜୀ ଓ ବଙ୍ଗଳା ସାହିତ୍ୟର

ପ୍ରଭାବ ଓଡିଆ ସାହିତ୍ୟ ଉପରେ ପଡିବାରୁ ବିଜାତୀୟ ରୀତିର ଅନୁକରଣ ଦ୍ୱାରା ଏ ଦେଶର ରୁଚି କଳୁଷିତ ହୋଇ ତରୁଣଙ୍କୁ ବିପଥଗାମୀ କରୁଛି ।

' ବହୁ ବ୍ୟକ୍ତି ସାହିତ୍ୟଗତ ବିଜାତୀୟତାର ସମର୍ଥକ ହୋଇ ବାହାରିଛନ୍ତି । ଏମାନଙ୍କ ସାହିତ୍ୟ ଦେଶର ସାହିତ୍ୟ କ୍ଷେତ୍ରରେ ବିଜାତୀୟତା ପରିବ୍ୟାପ୍ତ କରୁଛି । ଏମାନଙ୍କ ଗତି ପଥକୁ ବନ୍ଦ କରିବାକୁ ହେବ । ଓଡିଆ ସାହିତ୍ୟର ଦୁର୍ଗତି ପରି ଓଡିଆ ସଙ୍ଗୀତ କ୍ଷେତ୍ରରେ ବିଭ୍ରାଟ ଘଟିଛି । ପାରମ୍ପରିକ ସଙ୍ଗୀତକୁ ଉପେକ୍ଷା କରି ସେମାନେ ବିଜାତୀୟ ସଙ୍ଗୀତ ଉପଭୋଗରେ ମାତି ଉଠିଛନ୍ତି । କଳା କ୍ଷେତ୍ରରେ ମଧ୍ୟ ଭୁବନେଶ୍ୱର, କୋଣାର୍କ ବା ଖିଚିଙ୍ଗ୍ ଆଦର୍ଶର ଆଶାନୁରୂପ ଅନୁଶୀଳନ ବା ଅନୁସରଣ ହେଉନାହିଁ ।

'ଆଧୁନିକତା ନାମରେ ଜାତୀୟତାକୁ ଜଳାଞ୍ଜଳି ଦେଇ ଉତ୍କଳୀୟତାର ବୈଶିଷ୍ଟ୍ୟ ବିସ୍ମୃତ ହେବା ପଥରେ ପଥିକ ସାଜିଛନ୍ତି ନବ୍ୟ ସଭ୍ୟ ଉତ୍କଳ ବାସୀ । ଏ ଅଧୋଗତିର ପ୍ରବାହକୁ ବାଧା ନ ଦେଲେ ଏଜାତିର ରକ୍ଷା ନାହିଁ ।'

ବାପା କହୁଥିଲେ କେବଳ ଯେ ଭାଷା ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ପାଶ୍ଚାତ୍ୟ ସଭ୍ୟତା ମାଡି ବସିଚି ଭାବିବା ଠିକ୍ ହେବ ନାହିଁ , ଘୁଣ ପୋକ ପରି ରାଜନୀତିରେ ମଧ୍ୟ ଏହା ଚରି ଯାଇଛି । ମୋହିନୀ ବେଶ ଧାରଣ କରି ରାଜନୀତି ଏ ଦେଶର ବହୁ ପଦସ୍ଥ ଲୋକଙ୍କୁ କବଳିତ କରୁଛି । ରାଜନୀତିରେ ପ୍ରାଧାନ୍ୟ ଅର୍ଜନ କେବଳ ନିଜର ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବା ପାଇଁ । ଏହି ଫମ୍ପା ଆଦର୍ଶର ଦ୍ୱାହି ଦେଇ ସେମାନେ ରାଜନୀତିକୁ ଜାବୋଡି ଧରି ଥାଆନ୍ତି । ଏ ଦେଶର ରାଜନୀତିକ ଜୀବନ ପାଶ୍ଚାତ୍ୟ ଛାଞ୍ଚରେ ଗଢ଼ା ଯାଇଛି । ରାଜନୀତିକ ଲାଭ ଛଡା ଜୀବନର ଅନ୍ୟ କୌଣସି ଲକ୍ଷ୍ୟ ଅଛି ବୋଲି ସେମାନେ ଭାବୁ ନାହାନ୍ତି ।

ବାପା କହୁଥିଲେ ଧନ ହୀନ ଓ ଖଞ୍ଜତ୍ୱ - ଏ ଦୁଇଟି ତାଙ୍କର ପ୍ରତିବନ୍ଧକ ହୋଇ ନଥିଲେ ସେ ରାଜନୀତିରେ ମିଶିବାର ପ୍ରଲୋଭନ ତ୍ୟାଗ କରି ନଥାଆନ୍ତେ । କାରଣ କଲେଜରେ ପଢ଼ିଲା ବେଳୁ ସେ ଅସହଯୋଗ ଆନ୍ଦୋଳନ ପ୍ରବାହରେ ନିଜକୁ ଭସାଇ ଦେଇଥିଲେ । କିନ୍ତୁ ମଙ୍ଗଳମୟ ପ୍ରଭୁଙ୍କ ଅପାର ଆଶର୍ବାଦ ଏଥିରୁ ତାଙ୍କୁ ରକ୍ଷା କଲା ବୋଲି ସେ ବିଶ୍ୱାସ କରୁଥିଲେ ।

ମାତୃଭୂମିର ମହତ୍ତ୍ୱ ବୁଝି ନଥିବା, ମାତୃ ଭୂମିକୁ ଚିହ୍ନି ନଥିବା ବିଦେଶୀ ଅନୁକରଣ ପ୍ରିୟତାରେ ନିଜକୁ ହଜାଇ ଦେଇଥିବା ଏ ଦେଶର ମୂଢ଼ ଜନତା ବୁଝିଲେ ନାହିଁ ମାହାତ୍ମା ଗାନ୍ଧୀଙ୍କ କଷ୍ଟଲବ୍ଧ ସ୍ୱାଧୀନତାର ପ୍ରକୃତ ମୂଲ୍ୟ କେତେ । ସେମାନେ ବୁଝି ଥିଲେ ସ୍ୱାଧୀନତାର ଅର୍ଥ - ଭୋଗ ଲାଳସା । ଏଭଳି ଲୋକଙ୍କ ହୃଦୟ ଜୟ କରିବାକୁ ହେଲେ ତାଙ୍କୁ ପ୍ରଥମେ ଜନ୍ମଭୂମିର ଭାଷା ସାହିତ୍ୟ , ସଂସ୍କୃତି ଓ ପରମ୍ପରା ଆଡକୁ ଆକର୍ଷିତ

କରିବାକୁ ହେବ । ଏହି ଚେତନା ତାଙ୍କ ହୃଦୟ ମଧ୍ୟରେ ବାରମ୍ବାର ଆନ୍ଦୋଳିତ ହେଉଥାଏ । ଫଳରେ ସେ ସ୍ଥିର ନିଶ୍ଚିତ ହେଲେ ଯେ ଏଥିପାଇଁ ତାଙ୍କୁ କଲମ ଚାଳନା କରିବାକୁ ପଡିବ । ସେ ବାରମ୍ବାର ବାକ୍‌ଦେବୀଙ୍କ ପାଖରେ ଏଥିପାଇଁ ପ୍ରାର୍ଥନା କରିଛନ୍ତି-

ଛାର ଜୀବନ ମୋର ପଙ୍କିଳ ସରୋବର
    ତହିଁ କବିତା କୋକନଦ ।
ତବ କୃପାରୁ ଦେବୀ  ଅଛି ସିନା ସମ୍ଭବି
    ସତେ ତା ବିତରିବ ମୋଦ , ହେ ବାଗୀଶ୍ୱରୀ ।



## ପ୍ରତିଭାର ସେତୁବନ୍ଧ :

ପୂର୍ବରୁ କହିଛି ବାପା ଛାତ୍ର ଅବସ୍ଥାରୁ ଜଣେ କବି ଭାବେ ପରିଚିତ ହୋଇ ସାରିଥିଲେ । ସେହି ଦିନରୁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ ଅବସର ସମୟରେ କବିତା ରଚନା କରି ଯାଇଛନ୍ତି । ମାତ୍ର ଓଡିଆ ସାହିତ୍ୟାକାଶରେ ସେ ଜଣେ ସୁସମାଲୋଚକ ଏବଂ ସଙ୍ଗଠକ ଭାବେ ବିଶେଷ ପରିଚିତ ।

'ପ୍ରାଚୀ ସାହିତ୍ୟ ସମିତି'ର ସଂପାଦକ ଥିବା ସମୟରେ ସେ ତତ୍କାଳୀନ ବହୁ ବିଶିଷ୍ଟ କବି ସମାଲୋଚକଙ୍କ ସାହଚର୍ଯ୍ୟରେ ଆସିଥିଲେ । ତାଙ୍କ ପ୍ରିୟ ଗୁରୁଦେବ ଆର୍ତ୍ତବାବୁ ତ ଥିଲେ ତାଙ୍କ ଅଭିଭାବକ,ଗୁରୁ , ଏବଂ ଦିଗ୍‌ଦର୍ଶକ । ସେତେବେଳେ ଆର୍ତ୍ତବାବୁଙ୍କୁ ଓଡିଆ ପ୍ରାଚୀନ ସାହିତ୍ୟ ସଂରକ୍ଷଣର ମୁକୁଟ ମଣି ଭାବେ ମାନ୍ୟ ପ୍ରଦାନ କରା ଯାଉଥିଲା । ତା ପରେ ଆସୁଥିଲା ବାପାଙ୍କ ନାମ । ଆର୍ତ୍ତବାବୁ ଓଡିଆ ଭାଷା ସାହିତ୍ୟର ସ୍ନାତକୋତ୍ତର ବିଭାଗର ମୁଖ୍ୟ ଥିଲେ । ବାପାଙ୍କ ଠାରେ ଏଭଳି କୌଣସି ପଦବୀ ନଥିଲା । କିନ୍ତୁ ସଂଗଠକ ଭାବେ ସେ ସର୍ବାଗ୍ରରେ ଥିଲେ । ବାପାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ନିବିଡ ସଂପର୍କ ରହିଥିଲା । ଏପରିକି ବାପାଙ୍କ ମୃତ୍ୟୁ ପରେ ଆର୍ତ୍ତବାବୁ ଆମ ଭାଇଙ୍କୁ ନେଇ ସାରଳା ମହାଭାରତରେ ଅନ୍ୟତମ ସଂପାଦକ ଭାବେ ନିଯୁକ୍ତ କରିଥିଲେ ।

ଅବସର ସମୟରେ ବାପା ଥରେ ଥରେ ଆର୍ତ୍ତବାବୁଙ୍କ ଘରକୁ ବୁଲି ଯାଆନ୍ତି । ମୁଁ ଥାଏ ତାଙ୍କ ସହଚର । ରିକ୍‌ସାରେ ବସି ବାପା କେତେ ବଡ ପାଟିରେ ପ୍ରାଚୀନ ଗୀତ ବା ଛାନ୍ଦ ବୋଲନ୍ତି । ମୋତେ ଗୀତ ଶୁଣିବାକୁ ସିନା ଭଲ ଲାଗେ ମାତ୍ର ତାଙ୍କ ଏଡେ ବଡ ପାଟିରେ ଗାଇବାଟା ଲାଜ ମାଡେ । ପ୍ରାଚୀନ ସାହିତ୍ୟ କଥା ପଡିଲେ ବାପାଙ୍କ ଠାରେ କଥା ବା ଗାନରେ କୌଣସି ଲାଜ ଲଜ୍ଜା ନଥାଏ ।

ଆର୍ତ୍ତବାବୁଙ୍କ ସହ ଆଲୋଚନାର ପ୍ରଥମେ ବିଷୟ ବସ୍ତୁ ମୁଁ । ସେଇ ରସିକ ବୃଦ୍ଧ ମୋତେ ନେଇ କେତେ ଥଟ୍ଟା କରିବେ । ମୋତେ ଥରେ ଥରେ ଓଡିଆ ବ୍ୟାକରଣ ପଚାରନ୍ତି । ଅନେକ ନୂଆ ବ୍ୟାକରଣ ନିୟମ ବତେଇ ଦିଅନ୍ତି । ସେ ମୋତେ ଏକ ବ୍ୟାକରଣ ବହି ଉପହାର ଦେଇଥିଲେ । ମୁଁ ତାକୁ ଅନେକ ଦିନ ଯାଏ ସାଇତି ରଖିଥିଲି ।

ତା ପରେ ବାପାଙ୍କ ସହ ତାଙ୍କ ସାହିତ୍ୟ ଆଲୋଚନା ଆରମ୍ଭ ହୁଏ । ମୁଁ ତାର ମୂଳ ଅଗ ବା ବିନ୍ଦୁ ବିସର୍ଗ ବୁଝି ପାରେ ନାହିଁ । ତେବେ ଗୋଟିଏ ଜିନିଷ ଦେଖିଚି ଉଭୟଙ୍କ ଭିତରେ ମତାନ୍ତର ପ୍ରାୟ ହୁଏ ନାହିଁ ।

ଏହି ଅବସରରେ ଗୋଟିଏ ସ୍ପର୍ଶକାତର କଥା ବାପାଙ୍କଠାରୁ ଶୁଣିଛି । ସେଥର ଆର୍ତ୍ତବାବୁଙ୍କ ଝିଅ ବାହାଘରକୁ ବାପା ଯାଇ ଥାଆନ୍ତି । ସେତେବେଳେ ତ କୌଣସି ଓଡିଆ ଗୀତର ରେକର୍ଡ ନଥାଏ । ଏଣୁ ତାଙ୍କ ଘରେ ହିନ୍ଦୀ ଓ ବଙ୍ଗଳା ଗୀତର ରେକର୍ଡ ବାଜୁଥାଏ । ବାପା ଏହାର ପ୍ରତିବାଦ କଲେ । ଏଭଳି ଗୀତ ବାଜିଲେ ସେ ଶୀଘ୍ର ଏଠାରୁ ବିଦାୟ ନେବେ ବୋଲି ଘୋଷଣା କଲେ । ଅବଶେଷରେ ଆର୍ତ୍ତବାବୁଙ୍କ ନିର୍ଦ୍ଦେଶରେ ସେ ଗୀତ ରେକର୍ଡ ବଜାଇବା ବନ୍ଦ ହୋଇ ଥିଲା ।

ବାପାଙ୍କ ଜୀବନର ଅନ୍ୟତମ ଆଦର୍ଶ ବ୍ୟକ୍ତିତ୍ୱ ହେଉଛନ୍ତି ସତ୍ୟବାଦୀ ଗୋଷ୍ଠୀର ସାଧକ କବି ମନିଷୀ ପଣ୍ଡିତ ନୀଳକଣ୍ଠ ଦାସ । ଦେଶଭକ୍ତି ଓ କଠୋର ବାଦୀ ଚିନ୍ତାଧାରା ବାପା ଏହି ମନିଷୀଙ୍କ ଠାରୁ ପ୍ରାପ୍ତ ହୋଇଥିଲେ। । କଟକରେ ଅବସ୍ଥାନ କାଳରେ ବାପା ସମୟ ସମୟରେ ଗୁରୁ ଦର୍ଶନ ଏବଂ ବିଚାର ବିମର୍ଶ ପାଇଁ ତାଙ୍କ ଘରକୁ ଯାଆନ୍ତି । ପ୍ରାୟ ପ୍ରତି ଥର ମୁଁ ତାଙ୍କ ସହ ଥାଏଁ । ସେହି ସୌମ୍ୟ ଦର୍ଶନ, ଘନ ଶ୍ମଶ୍ରୁ ବିଜଡିତ ଆୟତ ମୁଖମଣ୍ଡଳରେ ଦୀପ୍ତ ଦୁଇ ଚକ୍ଷୁ ଦର୍ଶନ କରି ପ୍ରଥମେ ମୁଁ ଶଙ୍କି ଯାଇଥିଲି । ମାତ୍ର ତାଙ୍କର ସ୍ନେହ ଭରା ମଧୁର ସ୍ୱାଗତ ମୋତେ ପ୍ରଭାବିତ କରିଥିଲା । ସେ ମୋତେ ଟାଣି ନେଇ କୋଳରେ ବସାନ୍ତି । କେତେ ସୁନ୍ଦର ସୁନ୍ଦର କଥା କହନ୍ତି ।

ତାପରେ ବାପାଙ୍କ ସହ ଆରମ୍ଭହୁଏ ଆଲୋଚନା । ସେ ଆଲୋଚନାରୁ କିଛି ହେଲେ ମୋ ମୁଣ୍ଡରେ ପଶେ ନାହିଁ । ମୋତେ ଲାଗେ ଖାଲି ସାହିତ୍ୟ ସାହିତ୍ୟ । ଏମାନଙ୍କର ସାହିତ୍ୟ ବ୍ୟତୀତ କି ଆଉ କିଛି ଗପିବାକୁ ନାହିଁ ? କଥା ଭିତରେ ମୋ ପ୍ରସଙ୍ଗ ଆସିପଡେ । ମୋତେ ଗୋଟେ ବଡ ପଣ୍ଡିତ ହେବାକୁ ସେ ଆଶୀର୍ବାଦ ଦିଅନ୍ତି । ମୋର ପିଠି ଆଉଁସି ଦିଅନ୍ତି । ଏତେ ବଡ ପାହାଡ ଆଗରେ ମୁଁ ନିଜକୁ ଭାରି ଛୋଟ ମନେ କରେଁ ।

ସମାଜରେ ଚାଲିଥିବା ବିଜାତୀୟ ସାହିତ୍ୟର ଧାରା ଉପରେ ଦୁହିଁଙ୍କ ଭିତରେ ଘମା ଘୋଟ ଆଲୋଚନା ହୁଏ । ସେ ଲାବଣ୍ୟବତୀର ଟୀକା ବାପାଙ୍କୁ ପଢ଼ି ଶୁଣାନ୍ତି । ଉଭୟ ବେଳେ ବେଳେ ଶବ୍ଦ କସରତ୍ କରନ୍ତି । ମୋତେ ନିଛାଟିଆ ଲାଗୁଥିଲେ ବି ମୁଁ ତାକୁ ମନ ଦେଇ ଶୁଣିବାର ବାହାନା କରେଁ। ଦୁହେଁ ମଝିରେ ମଝିରେ ମୋର ପ୍ରଶଂସା କରନ୍ତି । ଗୁରୁଶିଷ୍ୟଙ୍କ ଏ ମିଳନକୁ ମଣି କାଞ୍ଚନ ସଂଯୋଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଁ କେବଳ ଏ ମହାମିଳନର ଜଣେ ଅସହାୟ ମୁକ ସାକ୍ଷୀ ।

ଦୁହିଁଙ୍କ ଆଲୋଚନା ବେଶ୍ ସଫଳ ହୋଇଛି ବୋଲି ମୋର ମନେ ହୁଏ । କାରଣ ଫେରିଲା ବେଳକୁ ବାପା ବେଶ୍ ପ୍ରଫୁଲ୍ଲ ଦେଖା ଯାଉ ଥାଆନ୍ତି । ମୁଁ ବାପାଙ୍କୁ ଚିଡେଇ କହେଁ ପଂଡିତ ନୀଳକଂଠ । ବାପା ମୋ କଥାରେ ହସନ୍ତି । କାରଣ ସେବେଳେ ନୀଳକଣ୍ଠ ଦାସ ଯୁକ୍ତାକ୍ଷର ସ୍ଥାନରେ ଅନୁସ୍ୱାର ଯୋଗ କରିବାର ଏକ ଆନ୍ଦୋଳନ ଆରମ୍ଭ

କରିଥିଲେ । ଅନେକ ଲୋକ ତାଙ୍କର ଏହି ନୀତିକୁ ନା ପସନ୍ଦ କରୁଥିଲେ ହେଁ ପରେ ସେମାନେ ତାଙ୍କ ଅଲକ୍ଷ୍ୟରେ ଏହି ରୀତିକୁ ଆପଣାର କରି ନେଇଛନ୍ତି । ପରିଣତ ବୟସରେ ବୃଦ୍ଧ ଜଣକ ତାଙ୍କ ପ୍ରିୟ ଶିଷ୍ୟର ଅକାଳ ବିୟୋଗରେ ଗଭୀର ମର୍ମାହତ ହୋଇଥିଲେ ।

ବାପାଙ୍କ ସହ ସାକ୍ଷାତ କରିଥିଲି ଆଉ ଜଣେ ଯୋଗ ଜନ୍ମା- ପୁରୁଷ ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକଙ୍କୁ । ବାଙ୍କାର ଉର୍ବର ମୃର୍ତ୍ତିକାରୁ ଉଦ୍ଭୂତ ଏହି କବି କଳାକାର ଏବଂ ନାଟ୍ୟକାର ଭିକାରୀ ବାବୁ ତାଙ୍କ ଅଭଙ୍ଗା କଣ୍ଢେଇ ଶିଳ୍ପ ପାଇଁ ପୃଥିବୀ ବିଖ୍ୟାତ । ଏହି ଭଦ୍ର ଲୋକ ପାରମ୍ପରିକ ଓଡିଆ ସଂସ୍କୃତିର ପ୍ରବକ୍ତା ଓ ପୃଷପୋଷକ ଥିଲେ । ଏଣୁ ବାପାଙ୍କ ସହ ତାଙ୍କର ବେଶ୍ ସୌହାର୍ଦ୍ଦ୍ୟ ଥିଲା । ମୁଁ ବାପାଙ୍କ ସହ ତାଙ୍କ ଘରକୁ କେତେ ଥର ଯାଇଛି । ପ୍ରତି ଥର ସେ ମୋତେ କିଛି ନାଁ କିଛି ଅଭଙ୍ଗା କଣ୍ଢେଇ ଉପହାର ଦେଇ ଥାଆନ୍ତି । ବାପା ତାଙ୍କ ସହ ଆଲୋଚନାରତ ବେଳେ ମୁଁ ଥାଏଁ ତାଙ୍କ କଣ୍ଢେଇ ମେଳରେ ।

ତାଙ୍କ ଅଭଙ୍ଗା କଣ୍ଢେଇ ଆଜିକାଲି ଲୋକ ସ୍ମୃତିରୁ ଚାଲି ଗଲାଣି । ସେ କାରଖାନା କେବେଠୁ ଭାଙ୍ଗି ଗଲାଣି । ସେ କହୁଥିଲେ ରଦି କାଗଜ ଓ କିଛି ମଇଦା ହେଉଛି ତାଙ୍କର କଞ୍ଚାମାଲ ।

ହେଲେ ଗୋଟେ ସ୍ମୃତି ମୋର ଏବେ ବି ଜାଗ୍ରତ ରହିଛି ଯାହା ବେଳେବେଳେ ଅଲକ୍ଷ୍ୟରେ ମୋ ଓଠରେ ହସ ସୃଷ୍ଟି କରେ । ଥରେ ସେ ମୋତେ ଗୋଟିଏ କୁକୁର କଣ୍ଢେଇ ଉପହାର ଦେଇଥିଲେ । ବାପା ସେତେବେଳେ କୁକୁରକୁ ଭାରି ଘୃଣା କରୁ ଥାଆନ୍ତି । ମୁଁ ଟିକିଏ ଦୁଷ୍ଟାମୀ କରି ସେ କୁକୁର କଣ୍ଢେଇକୁ ବାପାଙ୍କ ଖଟ ପାଖରେ ତଳେ ଥୋଇ ଦେଇଥିଲି । ବାପା ଘରକୁ ପଶି ଆସି ଖଟ ପାଖରେ କୁକୁର ଦେଖି ଚିଡିଗଲେ , ଏବଂ ସେଠାରେ କିଏ କୁକୁର ବାନ୍ଧିଲା ବୋଲି ଗର୍ଜିଉଠିଲେ । ମୁଁ ଆହୁରି ଦୁଷ୍ଟାମୀ କରି କୁକୁରଟିକୁ ତାଙ୍କ ହାତରେ ଦେଇଦେଲି । ସେତେ ବେଳେ ତାଙ୍କର ଭ୍ରମ ଭାଙ୍ଗି ଯାଇଥିଲା । ମୋର ଏହି କାହାଣୀ କହିବାର ଉଦ୍ଦେଶ୍ୟ ହେଉଛି ଭିକାରୀବାବୁଙ୍କ କଣ୍ଢେଇ କେବଳ ଅଭଙ୍ଗା ନଥିଲା , ଦେଖା ଯାଉଥିଲା ଜୀବନ୍ତ । ସେ ସଂସ୍କୃତି, ସେ କାରିଗରୀ ବିଦ୍ୟା ଏ ପ୍ଲାଷ୍ଟିକ୍ ଯୁଗ ସହ ପ୍ରତିଯୋଗିତା କରି ବଞ୍ଚି ପାରିଲା ନାହିଁ ।

ଶୀର୍ଣକାୟ ଧୋତି ଚଦର ପରିହିତ ଭଦ୍ରଲୋକ ଯେ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏହା ସେ ପ୍ରଥମ ଥର ଆମଘରୁ ଗଲା ପରେ ବାପାଙ୍କ ପାଖରୁ ଜାଣିଲି । ଏହି ସଂସ୍କାର ପ୍ରେମୀ ଭଦ୍ରଲୋକ ବହୁ ବିଷୟରେ ଏମ୍ .ଏ ପାଶ୍ କରିଥିଲେ । ପ୍ରାଚୀନ ଓଡିଆ ସାହିତ୍ୟ ପ୍ରତି ତାଙ୍କର ଅସାମାନ୍ୟ ପ୍ରୀତି ଥିଲା । ସେ ଉତ୍କଳ ସାହିତ୍ୟ ସମାଜର

ସଂପାଦକ ଥିଲାବେଳେ ବାପା ଥିଲେ ତାଙ୍କ ସହକାରୀ ସଂପାଦକ । ସେହି ଦିନଠାରୁ ଉଭୟଙ୍କ ମଧ୍ୟରେ ଅଭେଦ ପ୍ରୀତି ଓ ସୌଖ୍ୟ ରହିଥିଲା । ସାହିତ୍ୟ ସଭା ମାନଙ୍କରେ ସେମାନଙ୍କ ସାକ୍ଷାତ ବ୍ୟତୀତ ତାଙ୍କର ଅଧିକାଂଶ ରଚନା ପଢ଼ି ବାପାଙ୍କୁ ଶୁଣାଉଥିଲେ । ଏଥିପାଇଁ ସେ ବହୁ ସମୟରେ ଆମ ଘରକୁ ଆସୁଥିଲେ । ଦୁହିଁଙ୍କ ଭିତରେ ବହୁ ସମୟରେ ସାହିତ୍ୟ ଚର୍ଚ୍ଚା ହେଉଥିଲା ।

କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ହେଉଛନ୍ତି ଆମର ଆତ୍ମୀୟ । ସଂପର୍କରେ ସେ ମୋର ମାଉସୀ ପୁଅ ଭାଇ - ବାପା ତାଙ୍କ ମଉସା । ବୟସରେ ସେ ବାପାଙ୍କ ସମସାମୟିକ ହେଲେ ମଧ୍ୟ ତାଙ୍କୁ 'ମଉସା' ବୋଲି ଡାକୁଥିଲେ ଓ ମାନ୍ୟ ପ୍ରଦାନ କରୁଥିଲେ । କାଳିବାବୁ ନାଟ୍ୟକାର ଓ ସଂଗୀତ ପେମୀ ଥିଲେ । ଓଡିଶୀ ସଂଗୀତ ବିଷୟରେ ତାଙ୍କର ଗଭୀର ଜ୍ଞାନ ଥିଲା । ଉଭୟେ ଓଡିଶୀ ସଂଗୀତ ଓ ନୃତ୍ୟର ପୃଷ୍ଠପୋଷକ ଥିଲେ । ତଥାପି ଗୋଟିଏ ବିଷୟରେ ଦୁହିଁଙ୍କ ଭିତରେ ମଝିରେ ମଝିରେ ତର୍କ ହେଉଥିଲା । ବାପା ଉପେନ୍ଦ୍ର ଭଞ୍ଜଙ୍କୁ 'କବି ସମ୍ରାଟ' ବୋଲି କହୁଥିଲା ବେଳେ ସେ କହୁଥିଲେ 'ସଂଗୀତ ସମ୍ରାଟ' ।

ବାପାଙ୍କ ଯୁକ୍ତି ଥିଲା ଉପେନ୍ଦ୍ର ଭଞ୍ଜ ସଂଗୀତ ରଚନା କରିଛନ୍ତି ଏବଂ ତାଙ୍କ ସଂଗୀତମାନ ଯେପରି ହୃଦୟ ସ୍ପର୍ଶୀ ସେହି ପରି ଲୋକ ପ୍ରିୟ । ମାତ୍ର ଉପେନ୍ଦ୍ର ଭଞ୍ଜ ସଂଗୀତ ଗାନ କରୁଥିଲେ ଏବଂ ଜଣେ ବିଶିଷ୍ଟ ସଂଗୀତଜ୍ଞ ଥିଲେ ଏହାର କିଛି ପ୍ରମାଣ ନାହିଁ । ଆଲୋଚନା ଅସଂପୂର୍ଣ ରହୁଥିଲା ।

କାଳୀବାବୁ କଟକ ସହର ଭିତରେ ଜଗନ୍ନାଥ ବଲ୍ଲଭରେ ରହୁଥିଲେ । ସେ କେବେ ହେଲେ ପରିବାର ନେଇ ରହୁ ନଥିଲେ । ମାତ୍ର ବହୁ କଳାକାର ମେଳରେ ସେ ସମୟ ଅତିବାହିତ କରୁଥିଲେ । ବାପା ତାଙ୍କ ଘରକୁ କେବେ ଯାଇଛନ୍ତି ମୁଁ ଜାଣେ ନାହିଁ । ମାତ୍ର ସେ ଅନେକ ସମୟରେ ଆମ ଘରକୁ ଆସୁଥିଲେ । ମାଆଙ୍କୁ ଗୀତ ଗାଇ ଶୁଣାଉ ଥିଲେ । ମାଆଙ୍କୁ ଗୀତ ଶୁଣାଇବା ପାଇଁ ଥିଏଟରେ ଦଳର ଗାୟକମାନଙ୍କୁ ମଧ୍ୟେ ମଧ୍ୟେ ପଠାଉଥିଲେ ।

ସେ ସମୟର ଅନ୍ୟତମ ଭକ୍ତ କବି ଓ ରାସଲୀଳାର ସଂଯୋଜକ ବାବାଜୀ ବୈଷ୍ଣବ ଚରଣ ଦାସ ( ତାଙ୍କର ପୂର୍ବ ନାମ ବେଣୁଧର ପଟ୍ଟନାୟକ) ଆମଘରକୁ ବହୁଥର ଆସୁଥିଲେ । ସେ ମୋ ବାପା ମାଆଙ୍କ ଦୀକ୍ଷାଗୁରୁ ଥିଲେ । ବାବାଜୀ ଥରେ ଆସିଲେ ଆମଘରେ କିଛି ଦିନ ରହୁଥିଲେ । ସେ ତାଙ୍କ ଲେଖାର ସଂଶୋଧନ ସହ ସଂପାଦନା କରୁଥିବା ବେଳେ ବାପାଙ୍କ ଉପଦେଶ ଓ ସାହାଯ୍ୟ ନେଉଥିଲେ । ସେତେବେଳେ ବୈଷ୍ଣବ ଚରଣ କଟକ ଜିଲା ଟାଙ୍ଗୀ ପାଖରେ ଗୋଟିଏ ଆଶ୍ରମ କରିଥିଲେ ଏବଂ ରାସ ନୃତ୍ୟ ଦଳ

ପରିଚାଳନା କରିଥିଲେ । ବାବାଜୀଙ୍କ ସହ ମିଶି ବାପା ପୁଣି ପ୍ରାଚୀନ ପୋଥି ସଂପାଦନାରେ ମନ ଦେଲେ । ଏଥର ସେ ପ୍ରଥମେ ଜଗନ୍ନାଥଙ୍କ ଉପରେ ରଚିତ ୧୦୮ ଗୋଟି ପ୍ରାଚୀନ ଭକ୍ତିଗୀତକୁ ନେଇ ପ୍ରକାଶ କଲେ 'ଜଗନ୍ନାଥ ଜଣାଣ ଓ ଭଜନ' । ମୋ ଜାଣିବାରେ ତାଙ୍କ ପୂର୍ବରୁ ଜଗନ୍ନାଥ ବିଷୟକ ଏତେ ଗୁଡ଼ିଏ ଗୀତକୁ ନେଇ କେହି ଏଭଳି ପ୍ରମାଣିକ ଗ୍ରନ୍ଥ ରଚନା କରି ନାହାନ୍ତି ।

ବାବାଜୀ ସଂପାଦିତ ବନମାଳୀ ପଦ୍ୟାବଳୀ, ଏବଂ ଗୋପାଳକୃଷ୍ଣ ଗୀତାବଳୀର ଆବଶ୍ୟକ ସଂଶୋଧନ ମଧ୍ୟ ବାପା କରିଥିଲେ । ତାଙ୍କ ବିରଚିତ ଗୀତସଂଗ୍ରହ ' ବେଣୁଧର ପଦାବଳୀ'ର ପାଣ୍ଡୁଲିପି ବାପାଙ୍କ ଦ୍ୱରା ସଂଶୋଧିତ ଓ ସଂପାଦିତ ହୋଇଥିଲା । ଏହି କାଳରେ ବାବାଜୀ ବହୁଦିନ ଧରି ଆମ ଘରେ ତାଙ୍କର ଆଶ୍ରମ କରୁଥିଲେ । ଆମ ଠାକୁର ଘରେ ସେ ଅବସ୍ଥାନ କରୁଥିଲେ । ସେ ବେଶ୍ ଶୁଦ୍ଧ ପୂତ ଜୀବନ ଯାପନ କରୁଥିଲେ । ବାପାଙ୍କ ମୃତ୍ୟୁର ବହୁଦିନ ପରେ ବାବାଜୀ ଇହଧାମ ତ୍ୟାଗ କରିଥିଲେ ।

କେବଳ ବୈଷ୍ଣବ ସାହିତ୍ୟ ନୁହେଁ ବାପା ଅଲେଖ ଧର୍ମର ଅନେକ ପୁସ୍ତକର ପାଣ୍ଡୁଲିପି ସଂଶୋଧନ କରିଛନ୍ତି । ଏଥିପାଇଁ ସେତେବେଳେ ଅଲେଖ ମହିମା ଧର୍ମର ମୁଖ୍ୟ ବିଶ୍ୱନାଥ ବାବାଙ୍କ ସହ ତାଙ୍କର ବେଶ୍ ସୌଖ୍ୟ ରହିଥିଲା । ସେ କଟକ ଆସିଲେ ତାଙ୍କ ଅଲେଖ ଟୁଙ୍ଗିରେ ଅବସ୍ଥାନ କରନ୍ତି । ମଧ୍ୟେ ମଧ୍ୟେ ଆମ ଘରେ ମଧ୍ୟ ରହୁଥିଲେ । ସେ ଯାଉଥିବା ହାତଟଣା ରିକ୍ସାର ଚାରିପଟେ ଗୈରିକ ବସନ ଆଚ୍ଛାଦନ କରା ଯାଇଥାଏ । ସକାଳରୁ ସେ ଭିକ୍ଷା ସକାଶେ ବହିର୍ଗମନ କରନ୍ତି । ସଂଧ୍ୟାକୁ ଫେରି ଆସନ୍ତି । ତାଙ୍କ ଟୁଙ୍ଗୀ ପାଖରେ ଧୂନି ଜଳା ଯାଏ । ସେ ସେତେବେଳେ ଅନ୍ଧ କବି ଭୀମ ଭୋଇଙ୍କ ଅନେକ ଅପ୍ରକାଶିତ ଗ୍ରନ୍ଥର ପୁନରୁଦ୍ଧାର କରି ସଂପାଦନା କରୁଥିଲେ । ଏହି କାର୍ଯ୍ୟରେ ସେ ବାପାଙ୍କ ସହାୟତା ଲୋଡୁଥିଲେ । ଗୈରିକ ବସନ ଧାରୀ ଏହି ଭକ୍ତଙ୍କୁ ଦେଖିଲେ ଭକ୍ତିରେ ମୋ ମସ୍ତକ ସ୍ୱତଃ ଅବନତ ହୋଇ ଯାଏ ।ବାପାଙ୍କ ସହ ତାଙ୍କର ସୌଖ୍ୟ ଦୀର୍ଘଦିନ ଧରି ମୋ ସ୍ମୃତିପଟରେ ଜାଗ୍ରତ ଥିଲା ।

ଥରେ ଢ଼େଙ୍କାନାଳରେ ଅବସ୍ଥାନ କାଳରେ ମୁଁ ତାଙ୍କୁ ଦର୍ଶନ ପାଇଁ ଯାଇଥିଲି । ସେତେବେଳକୁ ସେ ବହୁତ ବୁଢ଼ା ହୋଇ ଯାଇଥିଲେ । ତଥାପି ତାଙ୍କ ସ୍ମୃତି ଶକ୍ତି ପ୍ରଖର ଥିଲା । ସେ ମୋର ପରିଚୟ ପାଇ ବେଶ୍ ଆନନ୍ଦିତ ହେଲେ । ତାଙ୍କ ଶିଷ୍ୟ ଦ୍ୱାରା ଆମର ପରିଭ୍ରମଣ କରାଇ ଥିଲେ । ଏହାର କେଇମାସ ପରେ ତାଙ୍କର ମହା ପ୍ରୟାଣ ଘଟିଥିଲା ।

ସରକାରଙ୍କ ସୂଚନା ଓ ପ୍ରସାରଣ ବିଭାଗର ଅନେକ ପୁସ୍ତକ ସେତେବେଳେ ଅନସୂୟା ପ୍ରସାଦ ପାଠକଙ୍କ 'ରାଷ୍ଟ୍ରଭାଷା ପ୍ରଚାର ସମିତିରେ' ଛପା ଯାଉଥିଲା ।ଏଣୁ ବାପାଙ୍କ ସହ ଉକ୍ତ ସମିତିର ପ୍ରୋପ୍ରାଇଟର ଅନସୂୟା ବାବୁ ଏବଂ ତତ୍କାଳୀନ ମେନେଜର ଗୋପୀନାଥ ସାହୁଙ୍କ ସହ ବେଶ୍ ସୌହାର୍ଦ୍ଦ୍ୟ ଥିଲା । ଗୋପୀବାବୁ ବେଶ୍ ସରଳ ଓ ମେଳାପୀ ଭଦ୍ରଲୋକ ଥିଲେ । ତାଙ୍କ ସହ ଆମର ପାରିବାରିକ ସଂପର୍କ ରହି ଥିଲା । ଏପରିକି

ବାପାଙ୍କ ମୃତ୍ୟୁର ବହୁ ଦିନ ପର୍ଯ୍ୟନ୍ତ ସେ ଆମଘରକୁ ଯିବା ଆସିବା କରୁଥିଲେ । ସେ ଥିଲେ ଜଣେ ଅସମୟର ବନ୍ଧୁ । ତାଙ୍କ ମୃତ୍ୟୁ ପରେ ମଧ୍ୟ ଗୋପୀବାବୁଙ୍କ ପରିବାର ସହ ଆମର ପାରିବାରିକ ସଂପର୍କ ଅତୁଟ ରହିଛି ।

ଅନୁସୂୟା ବାବୁ ସଂପାଦିତ ରାଷ୍ଟ୍ରଭାଷାର ରଜତ ଜୟନ୍ତୀ ଗ୍ରନ୍ଥରେ ଉପେନ୍ଦ୍ର ଭଞ୍ଜଙ୍କ କେତୋଟି ଛାନ୍ଦ ଅନୁଦିତ ହୋଇ ପ୍ରକାଶିତ ହୋଇଥିଲା । ଏବେ ଭଞ୍ଜଙ୍କ କେତୋଟି କାବ୍ୟ ହିନ୍ଦୀ ଭାଷାରେ ଅନୁଦିତ ହେଲାଣି । ମାତ୍ର ମୋର ଯାହା ମନେ ହୁଏ ରାଷ୍ଟ୍ରଭାଷା ପ୍ରଚାର ସମିତି ଏଦିଗରେ ପ୍ରାରମ୍ଭିକ ଉଦ୍ୟମ କରିଥିଲା ।

ଉତ୍କଳ ସାହିତ୍ୟ ସମାଜରେ ପ୍ରାଚୀନ ପନ୍ଥୀଙ୍କୁ ଆକ୍ଷେପର ପ୍ରତିବାଦ କରି ବାପା ବହୁ କବି ସାହିତ୍ୟିକଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ । 'ଭାଷାକୋଷ' ପ୍ରଣେତା ଗୋପାଳ ପ୍ରହରାଜ ତାଙ୍କୁ ଭାରି ଭଲ ପାଉ ଥିଲେ - ପୁଅ ଭଳି ସ୍ନେହ କରୁଥିଲେ । ବାପା ମଧ୍ୟ ତାଙ୍କୁ 'ବାପା' ବୋଲି ସମ୍ବୋଧନ କରୁଥିଲେ ।

ବାପା ପ୍ରାଚୀନ ସାହିତ୍ୟର ଅନୁରାଗୀ ଥିଲେ ହେଁ ସେ ପ୍ରାଚୀନ ପନ୍ଥୀ ନଥିଲେ । ଏଣୁ ସକଳ ଶ୍ରେଣୀର କବି ସାହିତ୍ୟିକଙ୍କ ଆମ ଘରେ ସମାଗମ ହେଉଥିଲା । ଏହି ବିଶିଷ୍ଟ ବ୍ୟକ୍ତିଙ୍କ ସଂସର୍ଗରେ ଆସି ମୋର ସାହିତ୍ୟ ପ୍ରତି ଅନୁରାଗ ସ୍ୱତଃ ଜାଗ୍ରତ ହୋଇଥିଲା । ଯେଉଁମାନେ କହନ୍ତି ସାହିତ୍ୟିକ ସମାଜରେ ଦଳିତ , ନିଷ୍ପେଷିତ ଏବଂ ଦରିଦ୍ର, ସେମାନେ ହୀନ ମନ୍ୟତାର ଶିକାର ବୋଲି ମୋର ବିଶ୍ୱାସ । ବାପା ମଧ୍ୟ ଏହି ଧାରଣର ବଶବର୍ତ୍ତୀ ଥିଲେ । ସେ ଭାବୁଥିଲେ ସାହିତ୍ୟ ଚର୍ଚ୍ଚାଠାରୁ ଆଉ ଆନନ୍ଦ ଦାୟକ ଓ ମହତ୍ କାର୍ଯ୍ୟ ବୋଧହୁଏ ଜଗତରେ ନାହିଁ । ସେଥିପାଇଁ ସଂସ୍କୃତରେ କୁହା ଯାଇଛି 'ଅପାରେ କାବ୍ୟ ସଂସାରେ କବି ରେବ ପ୍ରଜାପତି'। ତଥାପି ପ୍ରଜାପତିଙ୍କ ଜଗତରେ ସୁଖ ଦୁଃଖ ଭଲ ଓ ମନ୍ଦ ରହିଛି । ମାତ୍ର କବିର ଜଗତରେ କିଛି ଖରାପ ବା ଅସୁନ୍ଦର ପଦାର୍ଥ ନଥାଏ ।

ନିଜ ଭାଷା ଓ ସାହିତ୍ୟ ପ୍ରତି ସେବା କରି ହୀନ ମନ୍ୟ ବ୍ୟକ୍ତି କେବେ ହେଲେ ଆନନ୍ଦ ପାଆନ୍ତି ନାହିଁ । ଏଭଳି ବ୍ୟକ୍ତି କେବଳ ଉପାଧି ପଛରେ ଗୋଡାଇ ଆନନ୍ଦିତ ହୋଇଥାଆନ୍ତି ।ମାତ୍ର ମୁଁ ଦେଖିଛି ସେ ସମୟରେ ସାହିତ୍ୟ ଚର୍ଚ୍ଚା କରୁଥିବା ବ୍ୟକ୍ତିଙ୍କ ସାହିତ୍ୟ ପ୍ରତି ଅନୁରାଗ କେତେ ଗଭୀର ଥିଲା । ଯାନ ବାହନ ହୀନ ସହରରେ ସେମାନେ ପଦଯାତ୍ରା କରି ସାହିତ୍ୟ ଚର୍ଚ୍ଚା କରୁଥିଲେ । ସାହିତ୍ୟିକ ଜଣକ ମଧ୍ୟ ଏମାନଙ୍କୁ ପାଇ ଧନ୍ୟ ହେଉଥିଲେ । ସେତେବେଳେ ପରିବାର ଚିନ୍ତା ସେମାଙ୍କ ମନକୁ ଆସେ ନାହିଁ । ବୋଧହୁଏ ଏହି କାରଣରୁ ଜଣେ ଶାରୀରିକ ଅକ୍ଷମ ବ୍ୟକ୍ତି ଥାଇ ମଧ୍ୟ ବାପା ଗୋଟିଏ ଆସନରେ ଘଣ୍ଟା ଘଣ୍ଟା ବସି ନାନା ସାହିତ୍ୟିକ, କବି ସମାଲୋଚକ ବା ସଂଗଠକଙ୍କ ସହ ନିରଳସ ସାହିତ୍ୟ ଚର୍ଚ୍ଚା କରି ପାରୁଥିଲେ ।



## କଳିଙ୍ଗ ଭାରତୀର ସାଧକ ଗୋଷ୍ଠୀ :

ଆଜୀବନ କଲମ ମୁନରେ ସଂଗ୍ରାମ କରି ୧୯୫୭ ମସିହାରେ ନିଜର ଚିର ବାଞ୍ଛିତ ଫଳ ଲାଭକରି ଆତ୍ମହରା ହୋଇଉଠିଥିଲେ ବାପା । ଏବେ ସେ ଜାଣିଲେ ତାଙ୍କର ଅସ୍ତ୍ର ନିକ୍ଷେପ ଆଉ ଲକ୍ଷ୍ୟ ଭ୍ରଷ୍ଟ ନୁହେଁ । ସେତେବେଳକୁ ଉତ୍କଳୀୟ ସାହିତ୍ୟ ସଂସ୍କୃତି ଓ କଳାର ପୁନର୍ମୂଲ୍ୟାୟନ ଭଞ୍ଜ ଜୟନ୍ତୀ ମାଧ୍ୟମରେ ଏକ ସାଂସ୍କୃତିକ ବିପ୍ଳବ ସୃଷ୍ଟି କଲାଣି । ଶତାଧିକ ଉପଯୁକ୍ତ ଦାୟାଦ ତାଙ୍କ ଅବଶିଷ୍ଟ କାର୍ଯ୍ୟକୁ ଯେ ଭବିଷ୍ୟତରେ ତ୍ୱରାନ୍ୱିତ କରି ନେବେ ଏଥି ପ୍ରତି ବାପା ପୂର୍ଣ ଆଶାୟୀ ହୋଇ ଉଠିଥିଲେ । ସେତେବେଳକୁ ତାଙ୍କ ହାତରେ ତିନିପୀଢ଼ିର ଶିଷ୍ୟ ବର୍ଗ ଆଦେଶ ପାଇଁ ସମୁପସ୍ଥିତ ।

ପ୍ରଥମ ପୀଢ଼ିର ନେତୃତ୍ୱ ନେଉଥିଲେ- ରଜତ କୁମାର କର ଓ ହୃଦାନନ୍ଦ ରାୟ । ଦ୍ୱିତୀୟ ପୀଢ଼ିର ଅଗ୍ରଗାମୀ ସୈନିକ ହେଉଛନ୍ତି- ଶରତ କୁମାର କର, ଡାକ୍ତର କବି ପ୍ରସାଦ ମିଶ୍ର , ଙ୍ଗ. ଚନ୍ଦ୍ରଶେଖର ନନ୍ଦ, ଗଗନେନ୍ଦ୍ର ଦାଶ, ସୁଦର୍ଶନ ଆଚାର୍ଯ୍ୟଏବଂ ସୋମନାଥ ନନ୍ଦ ପ୍ରଭୃତି । ତୃତୀୟ ପୀଢ଼ିରେ ଅଣ୍ଟା ଭିଡିଥିବା କିଶୋର ସେନାନୀ ଥିଲେ- ଡାକ୍ତର ଶୈଳେଶ୍ୱର ନନ୍ଦ, ଡାକ୍ତର ଅଜିତ କୁମାର କର ପ୍ରଭୃତି ।

କର୍ମ କ୍ଷେତ୍ରରେ ଏମାନଙ୍କ ସ୍ଥାନାନ୍ତର ଦ୍ୱରା ଏହି ଶିଷ୍ୟ ବର୍ଗ କେନ୍ଦ୍ରଠାରୁ ବିଛିନ୍ନ ହୋଇ ପଡିଲେ ସତ୍ୟ, ମାତ୍ର, ଏହା ଦ୍ୱାରା ଲାଭ ଅଧିକ ହେଲା । ଏମାନେ ଯିଏ ଯେଉଁ କ୍ଷେତ୍ରରେ ଥିଲେ ହେଁ ସେଠରେ ବାପାଙ୍କ ବାର୍ତ୍ତାକୁ ପହଞ୍ଚାଇ ପାରିଲେ ଏବଂ ସାହିତ୍ୟ ଓ ସାସ୍କୃତିକ ସଂଗଠନ ମାଧ୍ୟମରେ ଭଞ୍ଜ ଜୟନ୍ତୀ ପାଳନ ଆରମ୍ଭ କଲେ । ଏହା ଫଳରେ ଭଞ୍ଜ ଆଦୋଳନ ବହୁମୁଖୀ ଓ ବ୍ୟାପକ ହୋଇ ଯାଇଥିଲା । ଓଡିଶାର ପ୍ରାନ୍ତୀୟ ସ୍ଥାନ ମାନଙ୍କରେ ବିଶେଷତଃ ଶିଳ୍ପ କାରଖାନା ଓ ଖଣି ଅଞ୍ଚଳରେ ଏହା ବିଶେଷ ଲୋକ ପ୍ରିୟ ହୋଇ ଉଠିଲା । ଏହି ମନୋରଞ୍ଜନ ହୀନ ଅଞ୍ଚଳରେ ଭଞ୍ଜ ଜୟନ୍ତୀ କେବଳ ସାଂସ୍କୃତିକ ପୁନରୁଦ୍ଧାର ବାର୍ତ୍ତା ପ୍ରଚାର କରି ନଥିଲା , ସେଠାରେ ଏହା ଏକ ସାମ୍ବତ୍ସରିକ ପର୍ବରେ ପରିଣତ ହେଲା ।

ସେତେବେଳେ କଳିଙ୍ଗ ଭାରତୀ ଏକ ଦୈନିକ ଅଫିସ୍ ଚାଲୁଥିଲା । ମାତ୍ର ଭଞ୍ଜ ଜୟନ୍ତୀ ସମୟ ଆସିଲେ କଳିଙ୍ଗ ଭାରତୀ ଭବନ ସଦା ଚଳ ଚଞ୍ଚଳ ହୋଇଉଠେ । ଜୟନ୍ତୀର ବାର୍ଷିକ ଉତ୍ସବ କାଳରେ ସକଳ କର୍ମୀ, କର୍ମକର୍ତ୍ତା ଓ ଶୁଭେଚ୍ଛୁ ଯିଏ ଯେଉଁଠି ଥାଆନ୍ତୁନା କାହିଁକି ଆସି ଉପସ୍ଥିତ ହେଉଥିଲେ । ଏଥିରେ କେବେ ହେଲେ ବ୍ୟତିକ୍ରମ

ହେଉ ନଥାଏ । ଦିବା ରାତ୍ର ଆହାର ନିଦ୍ରା ଭୁଲି ସେମାନେ ପରିଶ୍ରମ କରି ଚାଲିଥିବେ । କଳିଙ୍ଗଭାରତୀ ଭବନର ତୃଣ ଗାଲିଚା ଉପରେ ଖଟ ପଡିଥିବ, ଆଲୁଅ ଜଳୁଥିବ । ବାପା ବସି ସବୁ କାର୍ଯ୍ୟର ତଦାରଖ କରୁଥିବେ । ପିଲା ମାନଙ୍କ ଏ କଠୋର ପରିଶ୍ରମରେ ମାଆର ମାତୃ ହୃଦୟ ବିଗଳିତ ହୋଇଉଠେ । ସେ ସ୍ୱତଃ ଜଳଖିଆ ଏବଂ ପାଚିଲା ଆମ୍ବ ପରଶି ଦିଏ । କେହି ହାତରେ ଖାଆନ୍ତି ନାହିଁ ମାଆ ଜଣ ଜଣ କରି ସଭିଙ୍କୁ ଖୁଆଇ ଦେବ ଓ ବାପାଙ୍କ ମୃଦୁ ଆକ୍ଷେପ କରି କହିବ, ' ଆହା ପିଲା ଗୁଡାକୁ ମୋର ଉପାସରେ କେତେ ଖଟଉଚ ?' ଉତ୍ତରରେ ବାପା କହନ୍ତି, ' ମୋର ପିଲା ମୋ ଆଦର୍ଶରେ ଗଢ଼ା । ତାଙ୍କୁ କେହି ପଥ ଚ୍ୟୁତ କରି ପାରିବେ ନାହିଁ '।

ମଇ ମାସର ଦ୍ୱିତୀୟ ସପ୍ତାହରୁ ନିମନ୍ତ୍ରଣ ପତ୍ର ବଣ୍ଟା ଯାଏ । ପ୍ରଚାର କାର୍ଯ୍ୟ ସାଧାରଣତଃ କଳିଙ୍ଗ ଭାରତୀର ସାଧକ ବର୍ଗ ନିଜେ ବହନ କରୁଥିଲେ । କାରଣ ଏହା ଦ୍ୱାରା ଲୋକ ସଂପର୍କ ସହ ଲୋକଙ୍କ ପାଖରେ ପହଞ୍ଚିବା କାର୍ଯ୍ୟ ହେଉଥିଲା । ଲୋକଙ୍କ ଅନୁକୂଳ ବା ପ୍ରତିକୂଳ ମନ୍ତବ୍ୟ ପ୍ରତ୍ୟକ୍ଷ ଭାବେ ଜାଣିବା ସମ୍ଭବ ହୁଏ । ପନ୍ଦର ତାରିଖ ଠାରୁ ଏମାନେ ହାତରେ ପ୍ରଚାର ପତ୍ର ଓ ମାଇକ୍ ଖଞ୍ଜା ରିକ୍ସା ଧରି ବିଭିନ୍ନ ଅଞ୍ଚଳକୁ ପ୍ରଚାରରେ ବାହାରି ଯାଆନ୍ତି ।

ଷୋହଳ ତାରିଖ ଦିନ ଉତ୍ସବର ଉଦ୍‌ଘାଟନ ପୂର୍ବରୁ କଟକ ଚଣ୍ଡୀଙ୍କ ଠାରେ ପୂଜା ମାର୍ଜନା କରି କଳିଙ୍ଗ ଭାରତୀ ପରିବାର ସଭାସ୍ଥଳକୁ ଆଗମନ କରନ୍ତି । ପ୍ରତିଦିନ ବିଳମ୍ବିତ ରାତ୍ରି ଯାଏ ସାହିତ୍ୟ, ସଂଗୀତ ନୃତ୍ୟ ଓ ଓଡିଶୀ ପରଂପରା ଯୁକ୍ତ ବିବିଧ କାର୍ଯ୍ୟକ୍ରମ ଭରା ଉତ୍ସବ ପ୍ରବଳ ଜନ ସମାବେଶରେ ସୁଚାରୁ ରୂପେ ପାଳିତ ହୋଇଥାଏ । ବିଭିନ୍ନ ବୟସର, ସମାଜର ନାନା ବର୍ଗ ଲୋକଙ୍କ ମନ ଛୁଆଁ ଏହି ସାଂସ୍କୃତିକ ସପ୍ତାହର କାର୍ଯକ୍ରମ ଦେଖିଲେ ଯେ କେହି ଦର୍ଶକ ଅନୁଭବ କରି ପାରିବେ ବାପାଙ୍କ ଚିନ୍ତାଧାରା କେତେ ସୁଦୂର ପ୍ରସାରୀ ଥିଲା । ଏଠାରେ ଉଲ୍ଲେଖ ଯୋଗ୍ୟ କୌଣସି ସରକାରୀ ପ୍ରୋତ୍ସାହନ ବିନା, ସକଳ ରାଜନୈତିକ ବାଧ୍ୟ ବାଧକତାରୁ ଉର୍ଦ୍ଧ୍ୱରେ ରହି ଗୋଟିଏ ବେସରକାରୀ ଅନୁଷ୍ଠାନ ଦ୍ୱାରା ପରିଚାଳିତ କେବଳ ସଂସ୍କୃତି ସଂମ୍ପନ୍ନ ଅନ୍ୟ କୌଣସି ସାହିତ୍ୟ ଉତ୍ସବ ସପ୍ତାହ ବ୍ୟାପି ଏଭଳି ସୁସଂହତ ଏବଂ ଜାକ ଜମକରେ ପାଳିତ ହୋଇଥିବାର ନଜିର ନାହିଁ । ଏତେ ଦୀର୍ଘ ବର୍ଷ ଧରି ଗୋଟିଏ ରୀତିରେ କୌଣସି ଅନୁଷ୍ଠାନ ତାହାର ଉତ୍ସବ ପାଳନ କରୁ ନାହିଁ ।

ମୋର ବାପା ମାଆ ଉଭୟ ତାଙ୍କର ଅନାବିଳ ସ୍ନେହ ବନ୍ଧନରେ ଅନୁଷ୍ଠାନର ସକଳ ପ୍ରିୟ ସନ୍ତାନଙ୍କୁ କେବଳ ବାନ୍ଧି ରଖି ନଥିଲେ, ଚିର ଦିନ ଭଗବାନଙ୍କ ଠାରେ ସେମାନଙ୍କ ସର୍ବ ମଙ୍ଗଳ କାମନା କରି ଆସୁଥିଲେ। ଏହା ଫଳରେ ପ୍ରତ୍ୟେକ ଶିଷ୍ୟ

ଅନ୍ୟଜଣକୁ ନିଜର ଭାଇ ଭଳି ଦେଖୁଥିଲେ । କନିଷ୍ଠମାନେ ଜ୍ୟେଷ୍ଠମାନଙ୍କୁ ଭାଇ ବୋଲି ସମ୍ବୋଧନ କରୁଥିଲେ । ଜ୍ୟେଷ୍ଠମାନେ ବାପାଙ୍କ ବାତ୍ସଲ୍ୟ ଆଦର୍ଶରେ ସେମାନଙ୍କୁ ସ୍ନେହ କରୁଥିଲେ । କହିବା ବାହୁଲ୍ୟ, ଏ ପରିଣତ ବୟସରେ ମଧ୍ୟ ଶିଷ୍ୟଙ୍କ ଭିତରେ ଏ ସୌହାର୍ଦ୍ଦ୍ୟ ଅତୁଟ ରହି ଆସିଛି ।

ଭାତ ହାଣ୍ଡିରୁ ଗୋଟିଏ ଚିପିଲା ପରି, ଗୋଟିଏ ଅଧେ ଘଟଣାରୁ ଏହା ଜାଣି ହେବ । ସେତେବେଳେ ଗୋପ ଭାଇ( ଗୋପବନ୍ଧୁ ରଥ), ହୃଦାନନ୍ଦ ଭାଇ ଓ ରଜତ ଭାଇ ବାପାଙ୍କ ଠାରୁ ଦୂରରେ ଥିଲେ । ଗୋପ ଭାଇ ଜର୍ମାନରେ, ଏବଂ ଅନ୍ୟ ଦୁଇଜଣ ଯୋଗକୁ ଜୟପୁରରେ ଥାଆନ୍ତି । ଦିନକରେ ତିନିଜଣଙ୍କ ଠାରୁ ଏକା ଥରେ ତିନିଟି ଚିଠି ଆସିଲା । ଗୋପ ଭାଇ ଜର୍ମାନରେ ତାଙ୍କ ଅନୁଭୂତି ବର୍ଣନା କରି ଥାଆନ୍ତି । ସେଠାର ଗୋରା ଯୁବତୀମାନେ ତାଙ୍କ ଗୌର ବର୍ଣ ଚେହେରା , କୃଷ୍ଣ ଚକ୍ଷୁ ଏବଂ କୃଷ୍ଣ କେଶ ରାଶିରେ ବିମୁଗ୍ଧ ହୋଇ ତାଙ୍କୁ ଚୁମ୍ବନ ପ୍ରଭୃତିରେ ଅସ୍ତ ବ୍ୟସ୍ତ କରୁଥିଲେ । ଚିଠି ପଢ଼ି ବାପା ଏତେ ଖୁସି ହୋଇଗଲେ ଯେ ମାଆକୁ ଡାକି କହିଲେ- ଓଡିଆ ଜାତି ତାର ଯୁବକର ଚେହେରାରେ ବିଦେଶୀ ଯୁବତୀଙ୍କ ମନ ହରଣ କରି ଗୋରା ଜାତିର ଗର୍ବ ଓ ଅହଙ୍କାରକୁ ଚୂର୍ଣ କରି ପାରିଛି । ଏହା କେବଳ କଳିଙ୍ଗ ଭାରତୀ ନୁହେଁ ସମଗ୍ର ଉତ୍କଳ ବାସୀ ପ୍ରତି ଏହା ଗର୍ବ ଓ ଗୌରବ କଥା ।

ହୃଦାନନ୍ଦଭାଇ ଓ ରଜତ ଭାଇଙ୍କ ଅକ୍ଷର ସହ ବାପାଙ୍କ ଅକ୍ଷରର ସାମଞ୍ଜସ୍ୟ ଥିବାରୁ ସେ ସନ୍ତୋଷ ପ୍ରକାଶ କଲେ । ଏମାନେ ନିଶ୍ଚୟ ପୂର୍ବ ଜନ୍ମରେ ତାଙ୍କର ପୁତ୍ର ଥିଲେ ବୋଲି ସେ ବିଶ୍ୱାସ କରୁଥିଲେ । ଶୁଣି ମାଆ ପୁଲକିତ ହେଲା । ତା କଣ୍ଠରୁ ସ୍ୱତଃ ଉଚ୍ଚାରିତ ହେଲା - ଏହା ପିଲାଙ୍କ ପ୍ରତି ଠାକୁରଙ୍କ ଅପାର କରୁଣା ' ।

କଳିଙ୍ଗପ୍ରାଣ ବିଚ୍ଛନ୍ଦ ଚରଣ ପୁସ୍ତକରେ, ରଜତ ଭାଇ କହନ୍ତି- 'ବ୍ୟକ୍ତିଗତ ଭାବେ ମୁଁ ଅନୁଭବ କରିଛି ଯେ ସାର୍( ବାପା) ଏବଂ ମାଉସୀ ତାଙ୍କର ଏକମାତ୍ର ପୁତ୍ର ଓ ମୋ ମଧ୍ୟରେ ତଫାତ୍ ଦେଖି ନାହାନ୍ତି । ନିକଟରେ ' ଚିର ସନ୍ଧାନ 'ପତ୍ରିକା (୧-୪ - ୨୦୦୧ )ରେ ସେ ପୁନରାୟ ଲେଖିଛନ୍ତି, ଥରେ ବିଶିଷ୍ଟ ବାଗ୍ମୀ ଓ ପଣ୍ଡିତ ଗୌରୀକୁମାର ବ୍ରହ୍ମା ତାଙ୍କୁ କହିଲେ ଉପେନ୍ଦ୍ରଭଞ୍ଜ ସେତୁବନ୍ଧର ଇଂଜିନିଅର ନଳକୁ ବିଚ୍ଛନ୍ଦସୁତ ବୋଲି ଅଭିହିତ କରିଛନ୍ତି । କଳିଯୁଗରେ ତୁମେ ହେଉଛ ବିଚ୍ଛନ୍ଦସୁତ ।

ବାପାଙ୍କ ଜୀବଦ୍ଦଶାରେ ତାଙ୍କର ଦୁଇଟି ପୁତ୍ର ବିଚ୍ଛେଦ ଘଟିଥିଲା । ଗୋଟିଏ ହେଉଛି ତାଙ୍କର ଜନ୍ମିତ ପ୍ରଥମ ପୁତ୍ର, ଅନ୍ୟଜଣେ ହେଉଛନ୍ତି କଳିଙ୍ଗଭାରତୀ ସଦସ୍ୟ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର । ଜନ୍ମିତ ପୁତ୍ରର ବିଚ୍ଛେଦ ସେ ଭୁଲି ଯାଇ ଥିଲେ । ମାତ୍ର ପ୍ରଫୁଲ୍ଲଭାଇଙ୍କ ବିଚ୍ଛେଦ ବିଷୟରେ ସେ ବହୁଦିନ ଯାଏ ଗୁଣୀ ହେଉଥିଲେ ।

ଉତ୍ତର ଦାୟାଦ ମାନଙ୍କ ସହ ତାଙ୍କର ଅଭିନ୍ନ ସଂପର୍କ ଥିଲା । ବାପା ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ, ' ମୋର ଚାଲିବାର ଅକ୍ଷମତା ଅକ୍ଷମତା ହୋଇ ରହି ନାହିଁ । ମୁଁ ତୁମ ମାନଙ୍କ ପାଦରେ ଚାଲୁଚି । ମୁଁ ପଦ ହୀନ ନୁହେଁ- ବହୁପଦ । ମୋ ନାସାର

ନିଃଶ୍ୱାସ ପବନ ତୁମର ନାସାରେ ନାସାରେ ପ୍ରବାହିତ । ମୋ ହୃତ୍‌ପିଣ୍ଡର ରକ୍ତ ସ୍ରୋତ ତୁମ ଧମନୀରେ ନିତ୍ୟ ସ୍ପନ୍ଦିତ । ମୋର ଚାଲିବା ତୁମ ପଦ ଚାଳନ ଦ୍ୱାରା ନିତ୍ୟ ସମାହିତ ହେଉଚି ।'

ଯାହାର ମନ ଏଭଳି ଉଦାର ଚେତନାରେ ଭାବାପନ୍ନ, ଜଣେ ଶିଷ୍ୟ ବିଛେଦରେ ତାଙ୍କ ହୃଦୟରେ ଯେ କେତେ ଆଘାତ ଲାଗୁଥିବ ତାହା କେବଳ ତାଙ୍କୁହିଁ ଜଣା ।

ସେ ପ୍ରତ୍ୟେକ ଛାତ୍ରଙ୍କୁ ସମ ଦୃଷ୍ଟିରେ ଦେଖୁଥିଲେ । ନବାଗତ ପ୍ରତି ତାଙ୍କର କୌଣସି ହେୟ ଭାବ ନଥିଲା । ବରଂ ସେ ବିଶ୍ୱାସ କରୁଥିଲେ ଏମାନେ ନିଜ ଅଧ୍ୟବସାୟ ବଳରେ ନିଜକୁ ସୁପ୍ରତିଷ୍ଠିତ କରି ପାରିବେ । ଥରେ ସୋମନାଥ ଭାଇ ଓ ଚନ୍ଦ୍ରଶେଖର ଭାଇଙ୍କ ବିଷୟରେ ବାପାଙ୍କୁ ପଚାରିଲି- ବାପା ଏମାନେ ଏତେ ସାନ ପିଲା ଅଛନ୍ତି । ଏମାନେ କ'ଣ ଏତେ ବଡ ଭାଷଣ ଦେଇ ପାରିବେ ? ବାପା ମୋ ମୁହଁକୁ ଚାହିଁ କହିଲେ- କ୍ଷୁଦ୍ର ବୀଜରୁ ବିରାଟ ବଟ ବୃକ୍ଷର କାୟା ବିସ୍ତାର ତୁ ଦେଖିଥିବୁ । ସେହିପରି ଏମାନେ ବଡ ହେଲେ ତାଙ୍କ ଓଜସ୍ୱିନୀ ଭାଷଣରେ ଗଗନ ପବନ ଚମକେଇ ଦେବେ ।

ଏତେ କୋମଳତା ଭିତରେ ମଧ୍ୟ ଲୁକ୍କାୟିତ ହୋଇ ରହିଥାଏ କଠୋର ଅନୁଶାସନ । ବାପା ଛାତ୍ରମାନଙ୍କୁ ଯେପରି ସ୍ନେହ କରୁଥିଲେ ସେମାନଙ୍କଠାରେ ସାମାନ୍ୟ ନୀତି ବିଚ୍ୟୁତି ଦେଖିଲେ ଅଗ୍ନିଶର୍ମା ହୋଇ ଯାଉଥିଲେ । କଟୁ ଭାଷାରେ ସେମାନଙ୍କୁ ଗାଳି ଦେବାରେ ସେ ପଶ୍ଚାଦ୍ ପଦ ହେଉନଥିଲେ । ବାପା ହିଁ ସେମାନଙ୍କ ଶିକ୍ଷା ଓ ଦୀକ୍ଷା ଗୁରୁ ଏବଂ କଠୋର ପରୀକ୍ଷକ । କୌଣସିଠାରେ ସେମାନେ ବିଜାତୀୟ ବା ଅଣ ଓଡିଆ ଶବ୍ଦର ଆଶ୍ରୟ ନେଲେ ସେ କ୍ରୋଧିତ ହେଉଥିଲେ । ସେହି ପରି କୌଣସି ଭୁଲ ଉଦାହରଣ ଉପସ୍ଥାନ ଅକ୍ଷମଣୀୟ ଅପରାଧ ଓ କଟୁ ମନ୍ତବ୍ୟର ଶିକାର ହେବାକୁ ପଡୁଥିଲା ।

ଏପରି ଏକ ଘଟଣା ଘଟିଥିଲା ଶରତ ଭାଇଙ୍କ ଆଲ୍ଲାହାବାଦ ପ୍ରତ୍ୟାବର୍ତ୍ତନ କାଳରେ । ସେ ଅତି ଆଦରରେ ମାଆଙ୍କ ପାଇଁ ସଦ୍ୟ ବଜାରକୁ ଆସିଥିବା ଏକ ନାଇଲନ୍ ଶାଢ଼ୀ ଉପହାର ସ୍ୱରୂପ ନେଇ ଆସିଥିଲେ । ଏପରି ଶାଢ଼ୀ ଦେଖି ବାପା ତତ୍‌କ୍ଷଣାତ୍ କ୍ରୋଧାନ୍ୱିତ ହୋଇ ଉଠିଲେ । କଳିଙ୍ଗ ଭାରତୀର ଜଣେ ଶିଷ୍ୟ ହୋଇ ତାର ନୀତି ଓ ଆଦର୍ଶରୁ ବିଚ୍ୟୁତ ହୋଇଥିବାରୁ ସେ ତାଙ୍କୁ ତିରସ୍କାର କଲେ । ଯେଉଁ ଶାଢ଼ୀରେ ଶରୀରର ଅଙ୍ଗ ଫୁଟି ଦିଶେ ତାହା ଭାରତୀୟ ପୋଷାକ ନୁହେଁ । ଯେଉଁ ଦେଶରେ ପାଟ ମଠା ଓ ଖଦଡ ଭଳି ବସ୍ତ୍ର ରହିଛି ତା ତୁଳନାରେ ଏ ବିଦେଶୀ ବସ୍ତ୍ର କେବେ ହେଲେ ତୁଳନୀୟ ନୁହେଁ ।

ସଂକ୍ଷେପରେ କହିଲେ ପରିବାର ମଧ୍ୟରେ ବାପା ଥିଲେ ଜଣେ ଆଦର୍ଶ ସ୍ୱାମୀ ଓ ପିତା । ମାତ୍ର ତାଙ୍କ ଅନୁଷ୍ଠାନ ଓ ତାହାର ବାହାରେ ଥିଲେ ଜଣେ ବିରାଟ ପୌରୁଷର ଅଧିକାରୀ ଓ ଆଦର୍ଶର ଜ୍ୱଳନ୍ତ ପ୍ରତିମୂର୍ତ୍ତୀ ।

## ମାନବ ଗଢ଼ା କେନ୍ଦ୍ରର ଶିକ୍ଷାଦାନ ଧାରା :

କଳିଙ୍ଗ ଭାରତୀର ଲକ୍ଷ୍ୟ ହେଉଛି ଯୁବ ମାନସକୁ ଆମ ପରମ୍ପରା ପ୍ରତି ଅନୁରାଗୀ କରାଇବା । ଯୁବକଙ୍କ ବ୍ୟକ୍ତିତ୍ୱ ବିକାଶର ଉପଯୁକ୍ତ ସମୟ ହେଉଛି ସ୍କୁଲ ଜୀବନ । ଏହି ସମୟରେ ସେମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ପ୍ରଦାନ କଲେ ପରବର୍ତ୍ତୀ କାଳରେ ସେମାନେ ଉପଯୁକ୍ତ ନାଗରିକ ଓ ତତ୍‌ସହ ପରମ୍ପରାର ଉତ୍ତରାଧିକାର ନେଇ ପାରିବେ । ବାପାଙ୍କ ଆଦେଶରେ କଳିଙ୍ଗ ଭାରତୀର ପ୍ରବୀଣ ସାଧକମାନେ ବିଭିନ୍ନ ସ୍କୁଲ ଯାଇ ସେଠାରେ ଛାତ୍ର ସମାଜକୁ ଓଡିଶାର ପରମ୍ପରା ଉପରେ ଭାଷଣ ଦେଇ ସେମାନଙ୍କ ଚିତ୍ତରେ ଅନୁରକ୍ତି ସୃଷ୍ଟି କରୁଥିଲେ । ଏଥିପ୍ରତି ଅନୁଗାମୀ ଛାତ୍ରଙ୍କୁ ସଂଗ୍ରହ କରି ସେମାନଙ୍କୁ ଉତ୍କଳ ଛାତ୍ର ସାହିତ୍ୟ ସମାଜର ସଦସ୍ୟଭୁକ୍ତ କରା ଯାଉଥିଲା ।

ପ୍ରତ୍ୟେକ ରବିବାର ଅପରାହ୍ନରେ କଳିଙ୍ଗ ଭାରତୀ ଭବନରେ ଅନୁଷ୍ଠିତ ହେଉଥିବା ସଭାରେ ସେମାନେ ଯୋଗ ଦେଉଥିଲେ । ଏଠାରେ ପ୍ରଥମେ ଗୋଷ୍ଠୀଗତ ଭାବେ ବାଣୀ ଆରାଧନା ( ବାପାଙ୍କ ବିରଚିତ ' ସାଜି ଅଭିନବ ମାଧବ ବିଭବ ତବ ଆଗମନ ପାଇଁ...) ଗାନ କଲା ପରେ ସଭାକାର୍ଯ୍ୟ ଆରମ୍ଭ କରା ଯାଏ । ପାରମ୍ପରିକ ରୀତିରେ ପ୍ରାରମ୍ଭିକ ଭାଷଣ, ସ୍ୱାଗତ ଭାଷଣ ଇତ୍ୟାଦି ପରେ ସଭା ଆରମ୍ଭ ହୁଏ । ଏପରି ନିୟମିତ ସଭା ଆୟୋଜନ ଦ୍ୱାରା ନବାଗତ ମାନେ ସଭା ପରିଚାଳନା ଉପରେ ପ୍ରଶିକ୍ଷଣ ଲାଭ କରନ୍ତି । କୌଣସି କାର୍ଯ୍ୟରେ ସାଲିସ ନାହିଁ । ଯାହା ଯେଉଁ ରୀତିରେ ହେବାର କଥା ସେପରି ହେବ । ' ଆଜି ଥାଉ ପରଥରକୁ କରିବୁଁ ' ଏପରି ମନୋଭାବ କେହି ପୋଷଣ କରନ୍ତି ନାହିଁ । ଏ ସପ୍ତାହ ସଭା ନକରି ପର ସପ୍ତାହକୁ କରିବା କହି ତାକୁ ମୁଲତବୀ କରନ୍ତି ନାହିଁ । ଯେ କେହି ସଦସ୍ୟ ଯେପରି ଅବସ୍ଥାରେ ଥିଲେ ମଧ୍ୟ ଉକ୍ତ ସଭାରୁ କେବେ ଅନୁପସ୍ଥିତ ହୁଅନ୍ତି ନାହିଁ । ବାପା ଏତେ ଅସୁସ୍ଥ ଥିଲାବେଳେ ମଧ୍ୟ ପ୍ରତି ଶନିବାର ଦିନ ଭୁବନେଶ୍ୱରୁ କଟକ ଆସୁଥିଲେ ରବିବାସରୀୟ ସଭାରେ ଯୋଗ ଦେବା ପାଇଁ ।

ବାପା କଟକରେ ଉପସ୍ଥିତ ଥିଲେ ପ୍ରତି ଦିନ ସଭାରେ ସଭାପତିତ୍ୱ କରନ୍ତି । ତାଙ୍କ ଅନୁପସ୍ଥିତରେ ବା ତାଙ୍କ ଅନୁମତି ନେଇ ବରିଷ୍ଠ ସାଧକମାନେ ଏଥିରେ ସଭାପତିତ୍ୱ କରନ୍ତି । ଏହା ଫଳରେ ସେମାନେ ସଭାପତି ହେବାର କଳା ଶିକ୍ଷା କରନ୍ତି ।

ସେ ଦିନ ସଭାରେ ଆଲୋଚନାର ବିଷୟ ପୂର୍ବ ସଭାରୁ ସ୍ଥିର ହୋଇ ଯାଇଥାଏ । କେଉଁମାନେ ବକ୍ତୃତା ଦେବେ ତାହା ମଧ୍ୟ ସ୍ଥିର କରା ଯାଇଥାଏ । ଏହିଠାରେ ଆରମ୍ଭ ହୁଏ ମୁଖ୍ୟ ପ୍ରଶିକ୍ଷଣ । ବାପା ଆଗରେ ବସିଥିବେ ତାଙ୍କ ହାତ ବାଡି ଧରି । ପ୍ରତ୍ୟେକ ବକ୍ତା ଭାଷଣ ଦେଲା ବେଳେ କେଉଁଠି ତଥ୍ୟଗତ ହେଉ ବା ଉପସ୍ଥାନା ଗତ ତ୍ରୁଟି ଥିଲେ ତାଙ୍କୁ ସେଇଠି ଦେଖାଇ ଦିଆ ଯାଏ । ପୁଣି ବକ୍ତା ତାଙ୍କ ଭାଷଣ ଆରମ୍ଭ କରନ୍ତି ।

ଏହାକୁ ଏକପ୍ରକାର ବକ୍ତା ସୃଷ୍ଟି କାରଖାନା ବୋଲା ଯାଉ ପାରେ । ବକ୍ତାର ଭୂମିକା, ମନୋଭାବ କିପରି ହେବ , ବକ୍ତୃତାର ଶୈଳୀ କିପରି ହେବ ଚିକିନିଖି କରି ସେମାନଙ୍କୁ ବୁଝେଇ ଦିଆ ଯାଏ । ସମସ୍ତ କଥା ମଧ୍ୟରେ ଥାଏ ଭୟ କରିବ ନାହିଁ । ବକ୍ତୃତା ବେଳେ ଭାବିବ ନାହିଁ ମୋ ଠାରୁ ବିଜ୍ଞ ଲୋକ ଅଛନ୍ତି, କାଳେ ମୋର ଭୁଲ ହୋଇଯିବ ଏପରି ମନୋଭାବ ନଆଣିବାକୁ । ଏପରି ହେଲେ ବକ୍ତା ମଝିରେ ମଝିରେ ଝୁଣ୍ଟି ପଡିବ ନିଶ୍ଚୟ । ବକ୍ତାଙ୍କ ସ୍ୱର କେମିତି ହେବ । କେତେବେଳେ ଏହା ଦରଦ ଭରା ହେବ ପୁଣି କେତେବେଳେ ଏହା ଉଦାତ୍ତ ତଥା ଓଜସ୍ୱିନୀ ହେବ , ବକ୍ତା କେତେବେଳେ ତାଙ୍କ ବକ୍ତବ୍ୟ ପୁନରାବୃତ୍ତି କରିବେ କେତେବେଳେ ଭାଷଣ ନଦେଇ ପରସ୍ଥିତିକୁ କେମିତି ସମ୍ଭାଳି ନେବେ - ଏସମସ୍ତ ଚିକିନିଖି ଭାବେ ଉଦାହରଣ ଦ୍ୱାରା ବୁଝାଇ ଦିଆ ଯାଏ ।

ବାପା ବୋଧହୁଏ ବିଶ୍ୱାସ କରୁଥିଲେ ଲେଖି ଛପାଇ ଦେଲେ ଭାଷା ବା ସାହିତ୍ୟର ପ୍ରଚାର ବା ପ୍ରସାର ହୋଇ ପାରିବ ନାହିଁ । କାରଣ ଏଦେଶର ଲୋକମାନେ ଏତେ ଆଳସ୍ୟ ପରାୟଣ ଏବଂ ପୁସ୍ତକ ପାଠ ପାଇଁ ଏତେ ଶ୍ରମ କାତର ଯେ ଛପା ସାହିତ୍ୟ ଉକ୍ତ ପୁସ୍ତକରେ ଏବଂ ପାଠାଗାରର କଳେବର ମଣ୍ଡନ କରିବ ସିନା ଏହା ସଂପ୍ରସାରିତ ହେବ ନାହିଁ । ଏଣୁ ପ୍ରକାଶନ, ଗବେଷଣା ସହ ଭାଷଣ ଆବଶ୍ୟକ । ଭାଷଣ ଯେ ଏକ ଆଦର୍ଶ ଗଣ ମାଧ୍ୟମ ଏହା ସେତେବେଳେ ଲୋକେ ହୃଦୟଙ୍ଗମ କରି ନଥିଲେ ।

କହିବା ନିଷ୍ପ୍ରୟୋଜନ କଳିଙ୍ଗଭାରତୀର ସାଧକ ଗୋଷ୍ଠୀ ଏହି ଭାଷଣ ମାଧ୍ୟମରେ ଉପେନ୍ଦ୍ର ଭଞ୍ଜ ଓ ପ୍ରାଚୀନ କବିଙ୍କୁ ଯେତେ ଲୋକ ଲୋଚନକୁ ଆଣିଛନ୍ତି ଛପା ସାହିତ୍ୟ ଏବଂ ଗବେଷଣା ତାହାର କାଣିଚାଏ କରି ପାରି ନାହିଁ । ଏବେ ବି ଉପେନ୍ଦ୍ର ଭଞ୍ଜ ସ୍କୁଲ କଲେଜ ଭିତରେ ଅସ୍ପୃଶ୍ୟ ଭଳି ବିବେଚିତ ହେଉଛନ୍ତି । ୨୫ ବର୍ଷ ତଳେଛପା ଯାଇଥିବା ଭଞ୍ଜ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣ ଆବଶ୍ୟକ ହୋଇ ନାହିଁ । ଏଣୁ ବାପା ଗଢ଼ି ଥିଲେ ବିଶିଷ୍ଟ ଭଞ୍ଜ ପ୍ରବକ୍ତା । ଯେଉଁମାନେ ଅନର୍ଗଳ ଭାଷଣ ମାଧ୍ୟମରେ ପ୍ରଥମେ ପାଠକୁ ଚମତ୍କୃତ କରି ତାଙ୍କ ଆଡକୁ ଟାଣି ଆଣି ପାରନ୍ତି । ଏହା ପରେ ଆରମ୍ଭ ହୁଏ

ଅସଲ ଆଲୋଚନା । ଆଧୁନିକ ପାଠକର ' ଆତଙ୍କ' ସୃଷ୍ଟିକାରୀ ଉପେନ୍ଦ୍ର ପାଲଟି ଯାଆନ୍ତି ଅତିଥି ।

ଏବେ ମଧ୍ୟ ସାରା ଓଡିଶାରେ ବିଶିଷ୍ଟ ବକ୍ତା ଭାବେ ବାପାଙ୍କ ନିଜ ହାତ ଗଢ଼ା କଳିଙ୍ଗ ଭାରତୀର ସଦସ୍ୟଙ୍କୁ କେହି ବଳି ପାରି ନାହାନ୍ତି । ସେମାନେ ତାଙ୍କ ଅଧ୍ୟବସାୟ ବଳରେ କେବଳ ଭଞ୍ଜ ଦୀନକୃଷ୍ଣ ନୁହନ୍ତି , ଯେକୌଣସି ସାହିତ୍ୟ ସଂସ୍କୃତି ବା ଧର୍ମ ସଭାରେ ଅନର୍ଗଳ କହି ଓ ଗାନ କରି ଶ୍ରୋତାଙ୍କୁ ମନ୍ତ୍ର ମୁଗ୍ଧ କରି ପାରୁଛନ୍ତି ।

ସଦସ୍ୟମାନେ ନିଜକୁ ମା କଳିଙ୍ଗ ଭାରତୀର ସନ୍ତାନ ବୋଲି ମନେ କରନ୍ତି । ଏଣୁ ପ୍ରତ୍ୟେକ୍ ସଦସ୍ୟ ଅନ୍ୟ ଜଣକୁ ଭାଇ ବୋଲି ଜାଣେ । କନିଷ୍ଠ ଜଣକ ବରିଷ୍ଠଙ୍କୁ ଭାଇ ସମ୍ବୋଧନ କରୁଥିଲା ବେଳେ ବରିଷ୍ଠ ଜଣକ କନିଷ୍ଠକୁ ନାମ ଧରି ଡାକନ୍ତି ମାତ୍ର ସାକ୍ଷାତ ହେଉ ବା ପତ୍ରାଳାପ କିମ୍ବା ଦୂରଭାଷ ହେଉ ପ୍ରତ୍ୟେକେ ଅନ୍ୟକୁ ' ଜୟ ମା କଳିଙ୍ଗଭାରତୀ' କହି ମାନ୍ୟ ପ୍ରଦାନ କରି ଥାଆନ୍ତି ।

ସଭା ସମିତି ବେଳେ ଏମାନେ ଉତ୍କଳୀୟ ପାରମ୍ପରିକ ପୋଷାକ ଧୋତି, ପଞ୍ଜାବୀ ପରିଧାନ କରନ୍ତି । ସେମାନଙ୍କ ପରିବାରର ଆବାଳ ବୃଦ୍ଧ ବନିତା ସମସ୍ତେ ଭଞ୍ଜ ଜୟନ୍ତୀରେ ସ୍ୱତଃସ୍ଫୂର୍ତ୍ତଭାବେ ଯୋଗ ଦିଅନ୍ତି । ନିଜ ପିଲା ମାନଙ୍କଠାରେ ପ୍ରାଚୀନ ରାଗ ରାଗିଣୀ ଏବଂ ସଙ୍ଗୀତ ପ୍ରତି ଅନୁରକ୍ତି ସୃଷ୍ଟି କରିଛନ୍ତି ।

ପୂର୍ବରୁ କହିଛି, ବାପା ଥିଲେ ସେମାନଙ୍କ ଶିକ୍ଷାଗୁରୁ, ଦୀକ୍ଷାଗୁରୁ ଓ ପରୀକ୍ଷକ । ଭାଷଣ ପ୍ରଦାନ କରିବା , ପ୍ରବନ୍ଧ ଓ କବିତା ରଚନା କରିବା, ସଙ୍ଗୀତ ସାଧନା କରିବା , ଚିତ୍ରାଙ୍କନ ଶିଖିବା ଏବଂ ଓଡିଶାର ସାହିତ୍ୟ ଓ ସଂସ୍କୃତି ବିଷୟରେ ଗଭୀର ଅଧ୍ୟୟନ କରିବା- ଏ ସକଳ ବିଷୟରେ ବାପା ସେମାନଙ୍କୁ ଶିକ୍ଷା ଦେଉଥିଲେ । ତାଙ୍କ ଶିଷ୍ୟଙ୍କୁ କଠୋର ନିୟମ ଓ ଶୃଙ୍ଖଳାରେ ପରି ଚାଳିତ କରୁଥିଲେ । ସଭାରେ ଭାଷଣ ଦେଉଥିଲା ବେଳେ ଗୋଟିଏ ହେଲେ ଇଂରାଜୀ ଶବ୍ଦ ବା କୌଣସି ଅଣ ଓଡିଆ ଶବ୍ଦର ଆଶ୍ରୟ ନେଲେ ବାପା ସେମାନଙ୍କଉପରେ ଅଗ୍ନିଶର୍ମା ହୋଇ ଉଠୁଥିଲେ । ଆଦର୍ଶ ନିଷ୍ଠାପର ହୋଇ ବିରୋଧୀ ଶକ୍ତିର ମୁକାବିଲା କରିବା ମାର୍ଗ କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀ ଶିକ୍ଷା କରୁଥିଲେ ।

ଶିକ୍ଷା ଦାନ ବା ପ୍ରଶିକ୍ଷଣ କାର୍ଯ୍ୟ ବେଳେ ବାପା ଭାରି କଠୋର ଥିଲେ । କୌଣସି ବେ ନିୟମ କାର୍ଯ୍ୟକୁ ସେ ତିଳେ ହେଲେ ସହ୍ୟ କରୁ ନଥିଲେ । ସମୟାନୁବର୍ତ୍ତିତା ଉପରେ ସେ ଭାରି ଜୋର ଦେଉଥିଲେ । ଏଥିରେ ସାମାନ୍ୟ ବ୍ୟତିକ୍ରମ ହେଲେ ସେ କ୍ଷୁବ୍ଧ ହୋଇ ଉଠୁଥିଲେ । ଏତଦ୍ ସତ୍ତ୍ୱେ ସେ କଳିଙ୍ଗ ଭାରତୀର ସାଧକଙ୍କ ପ୍ରତି ବେଶ୍ ସ୍ନେହୀ ଥିଲେ । ସେମାନଙ୍କ ପରିବାର ସହ ପାରିବାରିକ ସଂପର୍କ ରକ୍ଷା କରିବାରେ

କେବେହେଲେ କାର୍ପଣ୍ୟ ପ୍ରଦର୍ଶନ କରି ନଥିଲେ । ସେମାନଙ୍କ ପରିବାର ବର୍ଗ ମଧ୍ୟ ବାପାଙ୍କୁ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ସେମାନେ ହୃଦୟଙ୍ଗମ କରିଥିଲେ ବାପାଙ୍କ ଦ୍ୱାରା ସେମାନଙ୍କ ସନ୍ତାନଙ୍କ ଭବିଷ୍ୟତ ଗଢ଼ି ହୋଇ ଯାଉଛି । ସେ ଗୋପ ଭାଇ, ହୃଦାନ୍ଦ ଭାଇ ଏବଂ ରଜତ ଭାଇଙ୍କ ବିବାହ ଉତ୍ସବରେ ଯୋଗ ଦେଇଥିଲେ । ଅନ୍ୟାନ୍ୟ ସଭ୍ୟଙ୍କ ନାନା ପାରିବାରିକ ମଙ୍ଗଳ ଅନୁଷ୍ଠାନରେ ମଧ୍ୟ ସାମିଲ ହେଉଥିଲେ । ନିଜର ଶାରୀରିକ ଅକ୍ଷମତା ଭିତରେ ମଧ୍ୟ ସେ କଟକରୁ ରାଜ ସୁନାଖଳା ଯାଏ ଯାଇ ହୃଦାନନ୍ଦ ଭାଇଙ୍କ ବିବାହ ଉତ୍ସବରେ ଯୋଗ ଦେଇଥିଲେ ।

ରଜତ ଭାଇଙ୍କ ବିବାହରେ ଗୋଟିଏ ପକ୍ଷେ ବର ବିଦା ସହ ଅନ୍ୟପକ୍ଷେ କନ୍ୟାଘରେ ବର ପାଛୋଟି ନେବା କାର୍ଯ୍ୟ ନିର୍ବାହ କରିଛନ୍ତି । ସୋମନାଥ ଭାଇଙ୍କ ବିବାହରେ ଯୋଗ ଦେବାକୁ ତାଙ୍କର ବହୁତ ଇଚ୍ଛା ଥିଲେ ବି ତାଙ୍କ ନିପଟ ମଫସଲ ଗାଁକୁ ତାଙ୍କ ପକ୍ଷେ ଯିବା ଅସମ୍ଭବ ଥିବାରୁ ସେ ଏଥିରୁ ବିରତ ହୋଇ ଦୁଃଖ ପ୍ରକାଶ କରିଥିଲେ । ବାପାଙ୍କ ଏହି ନିରଳସ କାର୍ଯ୍ୟାବଳୀ ଦେଖିଲେ କେହି କେବେ ବାହାରୁ ଅନୁଭବ କରି ପାରିବ ନାହି ଯେ ସେ ପାଦରେ ଖଞ୍ଜ ଥିଲେ । ମନେହୁଏ କବି ଉପେନ୍ଦ୍ର ଭଞ୍ଜ ତାଙ୍କ ଖଞ୍ଜତ୍ୱ ଅପସାରଣ କରିଥିଲେ । ପ୍ରବଳ ଇଚ୍ଛା ଶକ୍ତି ଓ ଦୃଢ଼ ମନୋବଳ ତାଙ୍କ ଶାରୀରିକ ଅକ୍ଷମତାକୁ ଘୋଡାଇ ଦେଇଥିଲା ।



## ସୃଷ୍ଟିର ଦିଗ୍‌ବଳୟ :

ବାପାଙ୍କ ରଚନାତ୍ମକ ଚେତନା ବାଲ୍ୟକାଳରୁ ଆରମ୍ଭ ହୋଇଥିଲା । ସେ ପିଲା ଦିନେ ପ୍ରାଚୀନ ଛାନ୍ଦ ଚଉତିଶା ପ୍ରଭୃତିର ଛାୟାରେ ମନକୁ ମନ ଗୀତ ରଚନା କରି ଗାଇପାରୁଥିଲେ । ଛାତ୍ରାବସ୍ଥାରୁ ଗୀତ ରଚନା ଓ ଅନୁବାଦ କରି କିପରି ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ , ତାହା ଆଗରୁ କହିଛି ।

ଏହାର କାରଣ ହେଉଚି, ତାଙ୍କ ଦୃଷ୍ଟିରେ-'ଦେଶ ଥିଲା ଦେଶମାତୃକା, ସାହିତ୍ୟଥିଲା ସାରସ୍ୱତ ସାଧନା । ଦେଶ ହେଉଛି ତାଙ୍କ ପାଇଁ ଜୀବନ୍ତ ଜନନୀ ଏଣୁ ଦେଶ ସେବା ହେଉଛି ମାତୃ ସେବା ଓ ମାତୃ ଆରାଧନା ।' ସେ ବିଶ୍ୱାସ କରୁଥିଲେ ଜନନୀ ଓ ଜନ୍ମଭୂମି ଦୁହେଁ ମହିମାମୟ ଓ ମହନୀୟ । ଜନନୀ ହେଉଛନ୍ତି ରକ୍ତ ମାଂସ ଧାରୀ ମର୍ତ୍ତ୍ୟର ମଣିଷଟିଏ । ତାଙ୍କୁ ଏ ମର ସଂସାର ଦିନେ ଛାଡିବାକୁ ପଡିବ । ମାତ୍ର ଜନ୍ମଭୂମି ଅଜର ଓ ଅମର । ସେ ସେମିତି ପଡି ରହିଥାଏ ସନ୍ତାନ ତାକୁ ଛାଡି ଯାଏ । ଏଣୁ ବାପାଙ୍କ ଆଗରେ ପ୍ରଥମେ ଥିଲା ତାଙ୍କ ଦେଶମାତୃକା ଏବଂ ଦେଶୀୟ ସାହିତ୍ୟ । ଏହି ସାହିତ୍ୟର ସାଧନା ବିନା ଦେଶର ଉନ୍ନତି ସମ୍ଭବ ନୁହେଁ । ସେ ବିଶ୍ୱାସ କରୁଥିଲେ ଅର୍ଥନୈତିକ ଉନ୍ନତି ଗୋଟିଏ ଦେଶର ସବୁକିଛି ନୁହେଁ । ଏହାର ସାଂସ୍କୃତିକ ବିକାଶରେ ସନ୍ତାନମାନଙ୍କର ମାନସିକ ଉନ୍ନତି ସଂଘଟିତ ହୋଇଥାଏ ।

ବାପାଙ୍କର ଏହି ଚେତନା ପ୍ରଫେସର ହୃଦାନନ୍ଦ ରାୟ ତାଙ୍କ ପୁସ୍ତକ ' ବିଚ୍ଛନ୍ଦ ଚରଣ'ରେ ପ୍ରକାଶ କରିଛନ୍ତି । ଯେତେବେଳେ ତାଙ୍କୁ ପଚରା ଗଲା-ଓଡିଶାର ସଂସ୍କୃତି ଓ ସାହିତ୍ୟ ଆପଣଙ୍କର ଏତେ ପ୍ରିୟ କାହିଁକି ? ଏହି ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ - ଓଡିଶା ଚିରକାଳ ସତ୍ୟ ଶିବ ସୁନ୍ଦରର ଉପାସନା କରି ଆସିଛି । ଓଡିଶାର ଜାତୀୟ ସାହିତ୍ୟ ନିତ୍ୟ ବସ୍ତୁର ସନ୍ଧାନ ନେଉଥିଲା । ଓଡିଶୀ କଳାର ମଧ୍ୟ ଲକ୍ଷ୍ୟ ଥିଲା ଏହି ସନ୍ଧାନ । ଓଡିଶାର ଅମୂଲ୍ୟ ଛାନ୍ଦ ଓ ରାଗ ରାଗିଣୀର ସମ୍ଭାରରେ ଏହି ସନ୍ଧାନ ପ୍ରକୃଷ୍ଟ ରୂପ ଲାଭ କରିଛି । ଓଡିଆ ଶିଳ୍ପୀଙ୍କ ଗୁନିତି ଓ ବଟାଳୀ ଚିରକାଳ ଏହି ସନ୍ଧାନର ବ୍ରତୀ ହୋଇ ଅତୁଳ୍ୟ ସାଫଲ୍ୟ ଲାଭ କରିଛି । ମୁଁ ନିଜେ ସତ୍ୟ ଶିବ ସୁନ୍ଦରର ଉପାସକ ଓ ଅମୃତ ସନ୍ଧାନୀ । ଜନ୍ମଭୂମି ଉତ୍କଳ ମୋହର ପ୍ରିୟତମ ହେବା ଏକାନ୍ତ ସ୍ୱାଭାବିକ ।

ବାପା ସାରାଜୀବନ ପ୍ରତିଭାର ସନ୍ଧାନୀ ଓ ପୂଜାରୀ ଥିଲେ । ସେ ତାଙ୍କର ପ୍ରତିଭାକୁ ନିଜ ପାଇଁ ବ୍ୟବହାର ନକରି ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ତାଙ୍କ ପ୍ରାଣ ସଦାବେଳେ ଦେଶ ଓ ଦଶ ପାଇଁ ବ୍ୟାକୁଳ ଥିଲା । ମାତୃ ଗର୍ଭରୁ ମାତୃଭୂମିର

କବଚ ଧାଣ କରି ସେ ଜଣେ ଯଶସ୍ୱୀ ବୀର ପୁରୁଷ ଭାବେ ଧରାରେ ଭୂମିଷ୍ଠ ହୋଇଥିଲେ । ଜଣେ ସାଧାରଣ ମଣିଷ ଭଳି ତାଙ୍କର ବହୁ ଶତ୍ରୁ ଥିଲେ । ପ୍ରଥମ ଶତ୍ରୁ ହେଉଛି ଶାରୀରିକ ଅକ୍ଷମତା, ଫଳରେ ଆର୍ଥିକ ଅସ୍ଥିରତା ତାଙ୍କ ଜୀବନର ସ୍ୱଚ୍ଛନ୍ଦ ଅଗ୍ରଗତିର ଅନ୍ୟତମ ପ୍ରତି ବନ୍ଧକ ହୋଇଥିଲା । ପୁଣି ଦେଶ ଓ ପରଂପରା ପ୍ରତି ତାଙ୍କର ଭାବପ୍ରବଣତା ବହୁ ମଣିଷ ଶତ୍ରୁ ସୃଷ୍ଟି କରିଥିଲା । ଏଭଳି ଭିତର ବାହାର ଉଭୟ ଆତ୍ମ ଶତ୍ରୁର ବ୍ୟୁହ ଭିତରେ ମଧ୍ୟ ସେ ଥିଲେ ଦୁର୍ଦ୍ଦମନୀୟ ଏବଂ ଅନମନୀୟ । ଏହା କେବଳ ତାଙ୍କୁ ଗଭୀର ଆତ୍ମ ସଚେତନତା ଦ୍ୱରା ସମ୍ଭବ ହୋଇଥିଲା ।

ଅନୁବାଦକ, ବ୍ୟାଖ୍ୟାକାର , ପତ୍ରିକା ସଂପାଦକ ଭାବେ ତାଙ୍କର ମହତ୍ତ୍ୱ ସୁପ୍ରତିଷ୍ଠିତ ହୋଇଥିଲେ ହେଁ ସେ ଥିଲେ ସ୍ୱଭାବତଃ ଜଣେ କବି । କବିତା ପ୍ରତି ତାଙ୍କର ଥିଲା ଅନନ୍ୟ ଅନୁରକ୍ତି । ନିସର୍ଗ ସାରସ୍ୱତ ସମ୍ପଦର ଅଧିକାରୀ ହୋଇ ଧନ ହୀନ କବିମାନେ ପାର୍ଥିବ ରାଜ ସଂପଦକୁ ସୁଦ୍ଧା ଗଣନା କରନ୍ତି ନାହିଁ । କେବଳ ଲେଖା ପ୍ରସ୍ତୁତ ନୁହେଁ । ବାପା କେବଳ ଏହି ଶ୍ରେଣୀୟ ଜଣେ ଆଦର୍ଶ ଲେଖକ ନଥିଲେ ଲେଖକ ପ୍ରସ୍ତୁତ କରିବା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ ।

ସେ ଯଦି କେବଳ କବିତା ଲେଖାରେ ମନ ପ୍ରାଣ ଢ଼ାଳି ଦେଇ ଥାଆନ୍ତେ ତାହାହେଲେ ଦେଶର ଜଣେ ମହାନ କବିର ଆଖ୍ୟା ପାଇ କାହିଁ କେତେ ଉପଢ଼ୌକନ, ମାନ ସମ୍ମାନ, ଓ ପଦ ପଦବୀ ଲାଭକରି ବିରାଟ ସମ୍ମାନର ଅଧିକାରୀ ହୋଇ ଥାଆନ୍ତେ । ମାତ୍ର ଏ ସମସ୍ତ ତାଙ୍କ ନିକଟରେ ତୁଚ୍ଛ ପ୍ରାୟ ଥିଲା । ଓଡିଆ ଜାତିର ସ୍ୱାଭିମାନ ରକ୍ଷା ଓ ପ୍ରାଚୀନ ଓଡିଆ ଭାଷା , ସାହିତ୍ୟ ସଂସ୍କୃତି ଓ ପରଂପରାର ପୁନଃ ପ୍ରତିଷ୍ଠା ପାଇଁ ସେ ଦୃଢ଼ ସଂକଳ୍ପ ଥିଲେ । ଏଣୁ ଅନ୍ୟମାନଙ୍କ ପରି କେବଳ ନିଜକୁ ପ୍ରତିଷ୍ଠିତ ନକରି ନିଜର ମାତୃଭୂମି ଉତ୍କଳକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରିବାକୁ ଜୀବିତ ଥିବା ଯାଏ ତାଙ୍କ ସଂଗ୍ରାମ ଜାରି ରହିଥିଲା ।

ବାପା ମୂଳତଃ କବି ଥିଲେ ଏବଂ ପ୍ରେମିକ ଥିଲେ । ସାହିତ୍ୟ ସେବା ମଧ୍ୟରେ ପାରଂପରିକ ରୀତିରେ ତାଙ୍କର କବିତା ରଚନା ମଧ୍ୟ ଚାଲିଥାଏ । ଅନମନୀୟ ଜାତୀୟ ପ୍ରୀତି ସହିତ ତାଙ୍କ କବିତା ଅଙ୍ଗୀଭୂତ ହୋଇ ଯାଇ ଥାଏ । ଭାବ ଆସିଲା ବେଳେ ଯେକୌଣସି କାଗଜ ପାଇଲେ ସେ ଲେଖି ପକାଉଥିଲେ । ଏତଦ୍ ବ୍ୟତୀତ ସେ ଡାଏରୀମାନଙ୍କରେ ପ୍ରବନ୍ଧ ଓ କବିତା ଲେଖୁଥିଲେ । ସେତେବେଳେ ତାଙ୍କୁ ସରକାରୀ ଡାଏରୀ ଗୁଡିକୁ ସେ ଏଥିପାଇଁ ବ୍ୟବହାର କରୁଥିଲେ । ମୋର ମନେ ଅଛି ଗାନ୍ଧି ମୁଣ୍ଡ ଥିବା ଏକ ଡ଼ବଲ ଡାଏରୀ ବାପାଙ୍କର ଥିଲା । ସେଥିରେ ବାପାଙ୍କ ମୁକ୍ତାନିନ୍ଦି ଅକ୍ଷରରେ ଅଜସ୍ର କବିତା ଲିପିବଦ୍ଧ ହୋଇଥିଲା । ମୁଁ ନବୁଝି ପାରିଲେ ମଧ୍ୟ କୌତୁହଳ ବଶତଃ

ସେ ଗୁଡିକୁ ବେଳେବେଳେ ଲେଉଟାଉଥିଲି । ବାପାଙ୍କ ଶାରୀରିକ ଅସୁସ୍ଥତା କାଳରେ ଆମ୍ଭମାନଙ୍କ ଅସାବଧାନତା ଓ ବ୍ୟସ୍ତତା ଭିତରେ ସେ ଡାଏରୀମାନ ନଷ୍ଟ ଭ୍ରଷ୍ଟ ଓ ବିକ୍ଷିପ୍ତ ହୋଇଗଲା । ଏତଦ୍ ବ୍ୟତୀତ ତାଙ୍କର ବହୁ କବିତା ଓ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ମାତ୍ର ତାହା ଏ ଯାଏଁ ସଂଗୃହୀତ ହୋଇ ପାରି ନାହିଁ। ଏପରିକି ପ୍ରାଚୀ ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ, ଅନୁବାଦ ଏବଂ ସଂପାଦକୀୟ, 'ନୀଳାଚଳ ମାଧୁରୀ' ତଥା 'ଉତ୍କଳ ପ୍ରସଙ୍ଗ' ଏବଂ 'ଓଡିଶା ରିଭ୍ୟୁ'ରେ ପ୍ରକାଶିତ ରଚନା ମାନ ଏପର୍ଯ୍ୟନ୍ତ ବିକ୍ଷିପ୍ତ ହୋଇ ରହିଅଛି । ଏହା ଅଦ୍ୟାବଧି ସଂଗୃହୀତ ହୋଇପାରି ନାହିଁ ।

ତାଙ୍କ ସଂପାଦିତ ଗ୍ରନ୍ଥମାନଙ୍କ ମଧ୍ୟରେ 'ଚଉତିଶା ମଧୁଚକ୍ର' ଏକ ଅନବଦ୍ୟ ସୃଷ୍ଟି । ପ୍ରାଚୀ ସମିତି ଦ୍ୱରା ପ୍ରକାଶିତ ପାଞ୍ଚ ଖଣ୍ଡରେ ବିଭକ୍ତ ଏହି ଗ୍ରନ୍ଥରେ ସେ ପ୍ରାଚୀନ ଚଉତିଶା ମାନ ସଂଗ୍ରହ କରି ଯାଇଛନ୍ତି । ଗ୍ରନ୍ଥର ମୁଖ ବନ୍ଧରେ ଆଧୁନିକତା ପ୍ରେମୀ ଓଡିଶା ବାସୀଙ୍କ ପ୍ରାଚୀନ ରାଗ ରାଗିଣୀ ପ୍ରତି ବିମୁଖତା ପ୍ରତି ସେ କ୍ଷୋଭ ପ୍ରକାଶ କରି କହିଛନ୍ତି-

'ଉତ୍କଳର ଆଧୁନିକ ଯୁଗର କବିମାନେ ମଧ୍ୟ ସନେଟ ଅଥବା ବଙ୍ଗଳା ଅନୁକରଣରେ ସଂଗୀତ ହୀନ-ଛନ୍ଦ ବିଶିଷ୍ଟ କବିତା ଲେଖିବାକୁ ଶ୍ଳାଘାର ବିଷୟ ମନେ କରୁଛନ୍ତି । କିନ୍ତୁ, ହାୟରେ ଦେଶ ଜାତ ଚଉତିଶା ! ସେମାନଙ୍କ ନାସିକା କୁଞ୍ଚନ କେବଳ ତୋ ପାଇଁ ସଞ୍ଚିତ ଥାଏ ।'

ଉତ୍କଳର ପାରଂପରିକ ସାହିତ୍ୟ କେବଳ ନୁହେଁ ଉତ୍କଳବାସୀ ପଦ ପଦକେ ଛନ୍ଦରେ ହିଁ କଥା କହନ୍ତି । ' ଏପରିକି ସ୍ୱାମୀ ଗୃହ ଗମନୋଦ୍ୟତା ଉତ୍କଳ କୁମାରୀର କ୍ରନ୍ଦନ ମଧ୍ୟ ଛନ୍ଦୋବଦ୍ଧ ।' ଏଣୁ ବାପା ଯାହା କିଛି କବିତା ଲେଖିଛନ୍ତି ସମସ୍ତ ହେଉଛି ଓଡିଶୀ ରାଗ ରାଗିଣୀ ଅଥବା ଛନ୍ଦ ଯୁକ୍ତ ।

ତାଙ୍କର ଏହି ଶ୍ରେଣୀୟ ୧୦୧ ଗୋଟି ଗୀତକୁ ନେଇ ପ୍ରକାଶ ପାଇଛି କବିତା ଗ୍ରନ୍ଥ 'କବିତା କୁମୁଦ' (୧୯୪୬ ସାଲ )ଏହା ହେଉଛି ତାଙ୍କର ପ୍ରଥମ ପ୍ରକାଶିତ କବିତା ଗ୍ରନ୍ଥ । ଡକ୍ଟର ସୁଧୀର ଚନ୍ଦ୍ର ମହାନ୍ତି ଏବଂ ପ୍ରଫେସର ହୃଦାନନ୍ଦ ରାୟ ଏହି ଗୀତମାନଙ୍କର ଶ୍ରେଣୀବିଭାଗ କରି ପୁଙ୍ଖାନୁ ପୁଙ୍ଖ ଆଲୋଚନା କରିଛନ୍ତି । ଏଠାରେ ଲକ୍ଷ୍ୟ କରିବାର କଥା ବାପା ଯେ ପ୍ରକୃତରେ ଜଣେ ଦରଦୀ କବିଥିଲେ ତାହା ମୁଖ୍ୟତଃ ଏହି କବିତାମାନଙ୍କରେ ଉନ୍ମୋଚିତ ହୋଇଛି ।

ଇଂରାଜୀ କବି ଶେଲୀଙ୍କ କବିତା 'ଲଭସ୍ ଫିଲୋସଫି' କବିତାର ଛାୟାନୁବାଦ ହେଉଛି ' କେହି ତ ଦରଦୀ ଜନ ଏକାକୀ ନାହିଁ '। ରାଗ ଚୋଖିରେ ମୂଳ ଭାବନାକୁ ଅତୁଟ ରଖି ସେ କହନ୍ତି-

ଝରଣା ସରିତ କୋଳେ      ଢ଼ଳଇ ପୀରତି ଭୋଳେ
 ସରିତ ସାଗରେ ମିଳେ ନିବିଡ଼େ ଯାଇ ।
ପବନେ ଲୋଡ଼ି ପବନ      ପ୍ରେମେ ଦିଏ ଆଲିଙ୍ଗନ
 କେହିତ ଦରଦୀ ଜନ ଏକାକୀ ନାହିଁ
 ଏକ ସାଥେ ମିଳେ ଅପର
ତୋହ ମୋହ ମେଳ ନୁହେଁ କି ଦୋଷ ମୋର ?

ସେହି ପରି ଇଂରାଜୀ କବି ଏଚ୍, ଏଫ୍ ଲିଟ୍‌ଙ୍କ 'ଏ ଲଷ୍ଟ ଲଭ୍' କବିତାର ଛାୟାନୁବାଦ ' ପ୍ରିୟା ବିଚ୍ଛେଦ' କବିତାରେ ପ୍ରୀତିର ଚିରନ୍ତନୀ ବାଣୀ ଶୁଣାଇ ଯାଇଛନ୍ତି-

 ଝାଉଁଳା ମୋ ହୃଦ ବଲ୍ଲରୀ
ତୋ ସ୍ମୃତି କି ରଞ୍ଜା କରି      ଅଛଇ ନିୟତ ଘେରି
ଭେଟ ଯାଏ ସାଥେ ତୋରି ଥିବ ସେପରି ।

କେବଳ ଯୌବନର ଉଦାମ ପ୍ରେମ ନିର୍ଝର ନୁହେଁ ସଖି ସଖା ମଧ୍ୟରେ ଥିବା ଅକପଟ ପ୍ରେମକୁ ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ଶକୁନ୍ତଳା ପତି ଗୃହ ଯାତ୍ରା କାଳରେ ସଖୀମାନଙ୍କ ପ୍ରତି ତାଙ୍କର ସମ୍ଭାଷଣରେ ଏହା ପ୍ରକାଶ ପାଇଛି-

ସଖିଏ ଏହିକି ମୋର ଶେଷ ଆଲିଙ୍ଗନ
ଏହିକି ଲୋ ଏ ଆଶ୍ରମେ ଶେଷ ସମ୍ଭାଷଣ ?
ପ୍ରିୟମ୍ବଦେ ଅନସୂୟେ କହ ସତ କରି
ଦୁଃଖିନୀର ସ୍ମୃତି ହୃଦେ ଥିବ ଟିକି ଧରି ?

ଶକୁନ୍ତଳା ଚିତ୍ତରେ ଉଠିଥିବା ଏହି ଦ୍ୱନ୍ଦ୍ୱ ତାଙ୍କ ପ୍ରିୟ ସୁହୃଦ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ବିୟୋଗରେ ଯେପରି ସମାହିତ ହୋଇ ଯାଇଛି । ଏପୁରରେ ମିଳନ ସମ୍ଭବ ନ ହେଲେ ହେଁ ଅନ୍ୟ ପୁରରେ ଏହା ନିଶ୍ଚୟ ମିଳିବ ବୋଲି ସେ ଆଶା କରିଛନ୍ତି-

 ଆସି ସସ୍ନେହେ ତହିଁରେ ବସ
 ପରିଚିତ ସ୍ମିତେ ତୁମ୍ଭ ହସ
ସେଧାମରେ ଭେଟ      ହେବାଯାଏଁ ଭଲା
 ଶୋକ ତାମସ ଏ ହୃଦୁଁ ନାଶ, ହେ ସୁହୃଦ ।

ବାପା ପାଶ୍ଚାତ୍ୟ ଧାରାର ସାହିତ୍ୟକୁ ସମାଲୋଚନା କରୁଥିଲେ। ସେତେବେଳେ ବିଶ୍ୱନାଥ କର ଏହି ଆଧୁନିକ ପନ୍ଥୀଙ୍କ ଥିଲେ ପୃଷ୍ଠପୋଷକ । ଏତଦ୍ ସତ୍ତ୍ୱେ ତାଙ୍କ ପ୍ରତି ବାପାଙ୍କ ଅସୀମ ଶ୍ରଦ୍ଧା ଓ ଭକ୍ତି ଥିଲା। ଏହି ମନିଷୀଙ୍କ ଉଦ୍ଦେଶ୍ୟରେ ସେ ଶୋକ ଗୀତିକା ରଚନା କରି ନିଜର ସହୃଦୟତା ପ୍ରଦର୍ଶନ କରି ଯାଇଛନ୍ତି-

ସାହିତ୍ୟ ପୁରୋଧା ଆହେ ବିଶ୍ୱନାଥ
ଆଉ କି ଉତ୍କଳେ ଆଉ କାହା ହାତ
ସାହିତ୍ୟ ଲତାକୁ ରଞ୍ଜା ଯୋଗାଇ
ସମାଜରେ ଆହା ଦେବ ମତାଇ ।

ବାପା ବିଜାତୀୟ ସଂସ୍କୃତିର ଅନୁପ୍ରବେଶକୁ ବିରୋଧ କରୁଥିଲେ । ମାତ୍ର ସେ କୌଣସି ବିଦେଶୀ ବା ପଡୋଶୀ ରାଜ୍ୟର କବିଙ୍କ ପ୍ରତି ଅସୂୟା ପ୍ରକାଶ କରି ନାହାନ୍ତି । ବରଂ ଉନ୍ନତ ଭାବନା ପାଇଁ ଆମର ଗବାକ୍ଷ ଉନ୍ମୁକ୍ତ ରଖିବା ସେ ପସନ୍ଦ କରିଛନ୍ତି। ଏବିଷୟରେ ସେ ସ୍ପଷ୍ଟ ଭାବେ କହନ୍ତି -' ନୂତନ ସୌନ୍ଦର୍ଯ୍ୟ ଗ୍ରହଣରେ ମୁଁ ଅପକ୍ଷବାଦୀ ନୁହେଁ; କିନ୍ତୁ ସେଥି ନିମନ୍ତେ ମୋ ଜାତିର କମନୀୟ ପରମ୍ପରା ତ୍ୟାଗ କରିବାକୁ ମୁଁ ଅକ୍ଷମ।' ସେ ବହୁ ବିଦେଶୀ କବିଙ୍କ କବିତାକୁ ଅନୁବାଦ କରିବ ଯାଇଛନ୍ତି ।

ରବୀନ୍ଦ୍ରନାଥଙ୍କ ଉଦ୍ଦେଶ୍ୟରେ ଦୁଇଟି କବିତା ରଚନା କରିଛନ୍ତି । ଏଥିରେ ସେ ରବୀନ୍ଦ୍ରଙ୍କୁ 'ପ୍ରାଚୀ-ଭାଲ ଟୀକା ତାରୁଣ୍ୟପୁରୋଧା', 'ଭାରତ-ହ୍ରଦ- କୁମୁଦ-ପ୍ରକାଶକ', ' ପୁରୋଧା ନବୀନର' ପ୍ରଭୃତି ଶବ୍ଦରେ ସମ୍ବୋଧିତ କରିଛନ୍ତି । ରାଧାନାଥ ରାୟଙ୍କ ପାଇଁ ରଚନା କରି ଥିବା ଦୁଇଟି କବିତା ରେ ତାଙ୍କୁ ' ନବୀନ କବି କୁଳ ମହତ୍ତମଣି' ବୋଲି ସମ୍ବୋଧନ କରିଛନ୍ତି । ଯେକି ତାଙ୍କ କଲମ ତୁଳିକାରେ ଉତ୍କଳ ପ୍ରକୃତିର କମ୍ର ମାଧୁରୀକୁ ଚିତ୍ରିତ କରି ଯାଇଛନ୍ତି। ଅନ୍ୟତ୍ର କହନ୍ତି-' ତବ ସମାନ କବି ନାହିଁ' । ମୋ ଦେଶ କବିତାରେ ତାଙ୍କ ଉଦ୍ଦେଶ୍ୟରେ କହନ୍ତି-

ରାଧାନାଥ କବି ଲେଖନୀ ମୁନ
ଯାହା ଆଙ୍କି ଦେଲା ଭାରତେ ଧନ୍ୟ ।

କିନ୍ତୁ ତାଙ୍କର ଲକ୍ଷ୍ୟଥିଲା ଏମାନଙ୍କ ପ୍ରଭାବରୁ ଆମ ସାହିତ୍ୟକୁ ମୁକ୍ତ ରଖିବା। କବିତା କୁମୁଦରେ ସେଏବିଷୟରେ କହନ୍ତି-

'ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, କବିସୂର୍ଯ୍ୟ, ଗୋପାଳ କୃଷ୍ଣ ଓ ବନମାଳୀଙ୍କ ଶୈଳୀକୁ ଉତ୍କଳରେ ପୁନଃପ୍ରତିଷ୍ଠିତ କରି ରାଧାନାଥ ଓ ରବିଠାକୁରଙ୍କ ପ୍ରଭାବକୁ ପୂରା ପୂରି ହଟାଇ ଦେବାକୁ ହେବ ।'

ପ୍ରେମ ଓ ପ୍ରଣୟ ପତ୍ରର ସମାହାର ହେଉଚି ' ଭାବିନୀ ଭାବନା' । ନାୟକ ନାୟିକା ମଧ୍ୟରେ ଅନେକ ଅକୁହା କଥା କେବଳ ଚିଠି ମଧ୍ୟମରେ ପ୍ରକାଶ କରା ଯାଇ ପାରେ । କିଛି କଥା ଶର୍ମ ବଶତଃ ଆଗରେ କହି ହୁଏ ନାହିଁ । ଏହା ପ୍ରକାଶ ପାଏ ଚିଠିରେ । ନାୟକ ନାୟିକାଙ୍କ ଏହି ଭାବନାକୁ ନେଇ ବାପା ଶହେଟି କବିତା ରଚନା କରିବାର ସଂକଳ୍ପ କରିଥିଲେ । ଏହାର ନାମ ରଖିଥିଲେ ' ଶତପତ୍ର' । ମାତ୍ର କେବଳ ପଚିଶଟି ଲେଖି ସାରିଥିଲେ । ଯାହା ' ଭାବିନୀ ଭାବନା ' ନାମରେ ୧୯୫୯ରେ ପ୍ରକାଶିତ ହୋଇଛି ।

ପ୍ରାଚୀ ସମିତିରେ କାର୍ଯ୍ୟ କଲାଠାରୁ ବାପା ପ୍ରାମାଣିକତା ହୀନ କୌଣସି ତଥ୍ୟ ପ୍ରକାଶ କରିଥିବା ଜଣା ଯାଏ ନାହିଁ । ଏଣୁ ଏବିଷୟରେ ଅଧିକ ବାଦାନୁ ବାଦ ହେବା ବାଞ୍ଛନୀୟ ନୁହେଁ ।



## ସାମ୍ବାଦିକ ଓ ସ୍ତମ୍ଭକାର :

ପ୍ରାଚୀ ପତ୍ରିକାର ସଂପାଦନା ତାଙ୍କୁ ଓଡିଶାର ସାହିତ୍ୟିକ ମହଲରେ କେବଳ ପରିଚିତ କରାଇ ନଥିଲା ଏଥିରୁ ତାଙ୍କ ଅସାଧାରଣ ସଂଗଠନ ଶକ୍ତିର ପରିଚୟ ମିଳି ଯାଇଥିଲା ।

ପରବର୍ତ୍ତୀ କାଳରେ ସେ ' ଓଡିଆ ଏକାଡେମି ଜର୍ଣ୍ଣାଲ' ଏବଂ 'ବୈତରଣୀ' ପତ୍ରିକାର ସହ ସଂପାଦକ ଥିଲେ । ମାତ୍ର ଏହି ପତ୍ରିକାମାନ ଦୀର୍ଘ ଦିନ ସ୍ଥାୟୀ ହୋଇ ନଥିଲା । ସେ ଦୀର୍ଘ ଦିନ ଧରି ପୁରୀରୁ ପ୍ରକାଶ ପାଉଥିବା 'ନୀଳାଚଳ ମାଧୁରୀ' ରେ ଲେଖୁଥିଲେ । ଏଥିରେ ସେ ରାମ ଓ କୃଷ୍ଣ ଚେତନା ଉପରେ ଆଲୋଚନା କରୁଥିଲେ ।

୧୯୩୮ ମସିହାରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା 'ଦୈନିକ ଆଶା'ର ସଂପାଦକ ଶଶିଭୂଷଣ ରଥଙ୍କ ଅନୁରୋଧରେ ସେ ଏହାର ସହ ସଂପାଦକ ଦାୟିତ୍ୱ ଗ୍ରହଣ କରି ଥିଲେ । ମାତ୍ର ସେଠାକାର ଜଳବାୟୁ ଓ ବାତାବରଣ ତାଙ୍କ ଉପଯୋଗୀ ନ ହେବାରୁ ସେ ମାତ୍ର କେଇମାସ ପରେ ଉକ୍ତ ପଦବୀ ତ୍ୟାଗ କରିଥିଲେ । ଏବନ୍ଦ୍ ସିଦ୍ଧେ ୦ଏ କଟକରେ ଥାଇ ପ୍ରାୟ ବର୍ଷେ କାଳ ଏହାର ଦୈନିକ ସଂପାଦକୀୟ ଲେଖୁଥିଲେ ।

୧୯୬୦ ମସିହାରେ ତତ୍କାଳୀନ ଓଡିଶାର ମୁଖ୍ୟ ମନ୍ତ୍ରୀ ବିଜୁ ପଟ୍ଟନାୟକ ପ୍ରକାଶ କଲେ ଦୈନିକ ପତ୍ରିକା ' କଳିଙ୍ଗ' । ଏଥିରେ ମେନେଜର ଦାୟିତ୍ୱ ତାଙ୍କୁ ଯଚା ଯାଇଥିଲା । ମାତ୍ର ନିଜର ଶାରୀରିକ ଅସୁସ୍ଥତା ଦର୍ଶାଇ ସେ ଏଥିରୁ ନିବୃତ୍ତ ରହିଥିଲେ । କଥା ଥିଲା ସେ ଭଲ ହେଲେ ଏ ଦାୟିତ୍ୱ ଗ୍ରହଣ କରିବେ । ହେଲେ ମହାକାଳ ତାଙ୍କୁ ଏହା କରାଇ ଦେଲା ନାହିଁ ।

ଓଡିଶାରେ ଆକାଶବାଣୀ ପ୍ରତିଷ୍ଠା ଠାରୁ ବାପାଙ୍କ ଆଶାର ଆଲୋକ ଆହୁରି ଉଜ୍ଜଳ ହୋଇ ଉଠିଲା । ଏହି ବେତାର ମାଧ୍ୟମରେ ଓଡିଶାର ଶିକ୍ଷା ସଂସ୍କୃତି , ଭାଷା ଓ ପରଂପରାର ପ୍ରସାର ହୋଇ ପାରିବ । ବିଜାତୀୟ ଚିନ୍ତାଧାରୀ ଲୋକ ଏଥର ପରାସ୍ତ ହେବେ । ସେମାନେ , ଦେଶରେ ଅପସଂସ୍କୃତିକୁ ଆଉ ପ୍ରଚାର କରି ପାରିବେ ନାହିଁ ଭାବି ବାପା ବେଶ୍ ସନ୍ତୁଷ୍ଟ ହୋଇଥିଲେ । କାରଣ ସେତେବେଳେ ଆକାଶ ବାଣୀର ଲକ୍ଷ୍ୟଥିଲା ପରଂପରାର ପୂଜା କରିବା । ଦିନେ ଓଡିଆ ଶିଳ୍ପୀଙ୍କୁ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ପାଇଁ କଲିକତା ଯିବାକୁ ପଡୁଥିଲା । ପୁଣି କଲିକତା ବେତାର କେନ୍ଦ୍ରରେ ଓଡିଶା ପାଇଁ ଖୁବ୍ କମ୍ ସମୟ ଦିଆ ଯାଉଥିଲା ।

୧୯୪୮ ମସିହା ଜାନୁୟାରୀ ୨୮ ତାରିଖରେ କଟକ ଆକାଶ ବାଣୀ ପ୍ରତିଷ୍ଠା ହେଲା ଓଡିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ପୌରୋହିତ୍ୟରେ ଏହାକୁ ଉଦ୍ଘାଟନ କରିଥିଲେ ରାଜ୍ୟପାଳ ମାନ୍ୟବର କୈଳାଶ ନାଥ କାଟ୍ଜୁ । ସେଦିନ ବାପା ଓ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଏକ ଆଲୋଚନାତ୍ମକ ଭାଷଣ ଆକାଶ ବାଣୀରୁ ପ୍ରସାର କରା ଯାଇଥିଲା । ତାଙ୍କ ବିରଚିତ ସଂଗୀତ ରୂପକ 'ଦଶଭୁଜା' ଦୁର୍ଗାପୂଜା ଅବସରରେ ସପ୍ତମୀ ଦିନ ପ୍ରାତଃରୁ କେତେ ବର୍ଷ ଧରି ପ୍ରସାର କରା ଯାଇଥିଲା । ପୂର୍ବରୁ ଓଡିଆ ଲୋକେ ଆକାଶବାଣୀ କଲିକତାରୁ ମହାଳୟା ଦିନ ପ୍ରାତଃରେ ପ୍ରସାରିତ ହେଉଥିବା ଏହି ଶ୍ରେଣୀୟ ଧାରାବାହିକ ଶୁଣୁଥିଲେ ।

ଦିନ ନାହିଁ ରାତି ନାହିଁ ବାପାଙ୍କ କର୍ମମୟ ଜୀବନ ସର୍ବଦା କର୍ମ ତତ୍ପର ଥିଲା । ଶରୀରର ଅସୁସ୍ଥତା ପ୍ରତି ପଦକ୍ଷେପରେ ତାଙ୍କ ପଥ ରୋଧ କରୁଥିଲେ ମଧ୍ୟ ତା ପ୍ରତି ତାଙ୍କର ଭ୍ରୁକ୍ଷେପ ନଥାଏ । ମୋର ସାନ ଭଉଣୀର ଜନ୍ମ ବର୍ଷ ତାଙ୍କୁ ମଧୁମେହ ରୋଗ ଆକ୍ରମଣ କଲା । ଏଣୁ ତାଙ୍କୁ କେତେ ଦିନ ଡାକ୍ତରଖାନାରେ ରହିବାକୁ ପଡିଥିଲା । ହେଲେ ଏହି ସମୟରେ ତାଙ୍କର ସାହିତ୍ୟ ଚର୍ଚ୍ଚା ଏବଂ କଳିଙ୍ଗ ଭାରତୀର ସଂଗଠନ କାର୍ଯ୍ୟରେ କିଛି ଅସୁବିଧା ହେଉ ନଥିଲା କାରଣ ତାଙ୍କର ପରମ ବିଶ୍ୱାସୀ ଏବଂ ଅନୁଷ୍ଠାନ ପ୍ରତି ଗଭୀର ଅନୁରକ୍ତ ଶିଷ୍ୟ ବର୍ଗ ଏ କାର୍ଯ୍ୟକୁ ସୁଚାରୁ ରୂପେ ଚଳେଇ ନେଉଥିଲେ ।



## ଦୀର୍ଘପଥର ଶେଷ ମାଇଲ:

ବାପା ଭୀଷଣ ଜାତକ ବିଶ୍ୱାସୀ ଥିଲେ । ବୟସ ବଢ଼ିବା ସହ ସେ ବାରମ୍ବାର ଜାତକ ସୁଝାଉଥିଲେ । ମନେହୁଏ ତାଙ୍କର ପରମାୟୁ ଅଧିକ ନାହିଁ ବୋଲି ସେ ପୂର୍ବାନୁମାନ କରି ସାରିଥିଲେ ।

ବାପା ଏତେ ଆଶାବାଦୀ ହେଲେ ମଧ୍ୟ ଅନେକ ସମୟରେ ମୃତ୍ୟୁର ଆଶଙ୍କାରେ ଚିନ୍ତିତ ଥିଲେ । ଏପରିକି ତାଙ୍କର ୪୪ ବର୍ଷ ବୟସରେ ସେ ମୃତ୍ୟୁ ଭାବନାରେ ଭାବିତ ହୋଇଥିଲେ । ବୋଧହୁଏ ସମବୟସ୍କଙ୍କ ଅକାଳ ମୃତ୍ୟୁ ତାଙ୍କୁ ଏଭଳି ଧାରଣାର ବଶବର୍ତ୍ତୀ କରାଇଥିଲା । 'ଗମିବି ରାହା କାହାକୁ କରି ଆଶାବାଡି' କବିତାରେ ଏହି ବିଷନ୍ନ ଚେତନା ପ୍ରକାଶ ପାଇଛି । ଏହାକୁ ଏକ ରୋମାଣ୍ଟିକ୍ ଭାବାବେଶ କହି ଏଡାଇ ଦେଇ ହେବ ନାହିଁ । ଏଥିରେ ସେ ଲେଖିଛନ୍ତି-

'ପରିଚିତ ପୁରାତନ ଅନେକ ବଦନ
ମମ ଏ ନୟନ ଏବେ ନ କରେ ଲୋକନ,
ନିଭିଲାର ଦୀପ ପରି
ଅପସାରିଲାଣି କାଳ ଗୋଟି ଗୋଟି କରି ।'

ଜୀବନର ଶେଷ ଦୁଇବର୍ଷରେ ତାଙ୍କ ମୁଖ ମଣ୍ଡରେ ଏକ ପ୍ରକାର ଅସ୍ୱାଭାବିକ ବିଷର୍ଣ୍ଣତା ଫୁଟି ଉଠିଥିଲା । ଏଣିକି ନିଜ ପରିବାରଠାରୁ ଦୂରରେ ରହିବାକୁ ସେ ଇଚ୍ଛା କରୁନଥିଲେ । ସେତେବେଳେ ବାପା ଓଡିଶା ସାହିତ୍ୟ ଏକାଡେମୀରେ ଗବେଷଣା ସହକାରୀ ଭାବେ କାର୍ଯ୍ୟ କରୁଥିଲେ । ଏଣୁ କର୍ତ୍ତବ୍ୟର ଅନୁରୋଧରେ ତାଙ୍କୁ ଭୁବନେଶ୍ୱରରେ ରହିବାକୁ ପଡିଥିଲା । ଏହି ବିଦେଶ ରହଣି ବେଳେ ସେ ନିଶ୍ଚୟ ଏକାକୀ ଅନୁଭବ କରୁଥିଲେ ଓ ଅଜଣା ଭୟ ତାଙ୍କ ଚିତ୍ତରେ ଜାତ ହେଉଥିଲା । କାରଣ , ଏହି ସମୟରେ ସେ ଅନେକ ଥର ମୋତେ ସଙ୍ଗରେ ନେଇ ଯାଉ ଥିଲେ । ଏକାକୀ ଥିଲା ବେଳେ ବିବ୍ରତ ହୋଇ କେତେଥର ମଝି ରାତିରେ ଭୁବନେଶ୍ୱରରୁ ପଳେଇ ଆସୁଥିଲେ ।

ମାନବ ଶରୀରଟିଏ ପାଇ ସଂସାର ଗଢ଼ିଥିଲେ ପରିବାର ପାଇଁ କିଛି କର୍ତ୍ତବ୍ୟର ବାଧ୍ୟବଧକତା ଅଛି କହିଲେ ଭୁଲ ହେବ ନାହିଁ । ମମତାର ବନ୍ଧନରେ ଏହା ଆକସ୍ମିକ ଭାବେ ଘଟିଥାଏ । ଏଥିପାଇଁ ମଣିଷକୁ କାହାଠାରୁ କିଛି ପୂର୍ବ ଉପଦେଶର ପ୍ରୟୋଜନ ହୁଏ ନାହିଁ । ଆଉ ସ୍ନେହମୟୀ ସରଳୀ ପତ୍ନୀ ସହ ତିନୋଟି ଅପୋଗଣ୍ଡ ସନ୍ତାନର ଭବିଷ୍ୟତ

ପାଇଁ ଚିନ୍ତା କରିବା ବାପାଙ୍କ କିଛି ଅସ୍ୱାଭାବିକତା ନଥିଲା । ମାତ୍ର ସେ ନିରୁପାୟ ଥିଲେ । ପୂର୍ବରୁ ଦେଶ ସେବା ଓ 'କଳିଙ୍ଗ ଭାରତୀ' ସେବା ପାଇଁ ସେ ସର୍ବସ୍ୱ ଅର୍ପଣ କରି ସାରିଥିଲେ ।

ଉତ୍ତର ଦାୟାଦଙ୍କ ଭରଣ ପୋଷଣ ପାଇଁ ଚିନ୍ତା କରି ସେ ସମୟ ସମୟରେ ବ୍ୟାକୁଳିତ ହୋଇ ଉଠୁଥିଲେ । ଏପରି ସମୟରେ ତାଙ୍କ ସହକର୍ମୀ ପରମାନନ୍ଦ ମହାନ୍ତି ଥିଲେ ତାଙ୍କର ବନ୍ଧୁ ଓ ଉପଦେଷ୍ଟା । ବାପା ନାନା ବୈଷୟିକ ବିଷୟରେ ତାଙ୍କ ସହ ଆଲୋଚନା କରନ୍ତି ଓ ପରାମର୍ଶ ନିଅନ୍ତି । ଏପରିକି କେଉଁଠି ଜାଗା କିଣିବେ, କେଉଁଠି କିପରି ଘର ନିର୍ମାଣ କରିବେ କିମ୍ବା ପୁଅ ଝିଅଙ୍କୁ କେଉଁଠି କେଉଁ ବିଷୟରେ ପାଠ ପଢ଼ାଇଲେ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଗଠିତ ହୋଇ ପାରିବ କଥା ମଧ୍ୟ ପରମାନନ୍ଦ ବାବୁଙ୍କ ସହ ଆଲୋଚନା କରନ୍ତି ।

ଥରେ ବାପାଙ୍କ ଆଣ୍ଠୁରେ ଭୀଷଣ ଯନ୍ତ୍ରଣା ହେଲା । କବି ଭାଇ (ଡଃ କବି ପ୍ରସାଦ ମିଶ୍ର) ତାଙ୍କୁ ଯାଇ ଭୁବନେଶ୍ୱରରୁ ନେଇ ଆସିଲେ । ତାଙ୍କ ଆଣ୍ଠୁରେ ଅସ୍ତ୍ରୋପଚାର ଫଳରେ ସେ ସୁସ୍ଥ ହୋଇ ଉଠିଲେ । ମାତ୍ର ଏହା ଯେପରି ସାମୟିକ ଥିଲା । ଆମେ ଜାଣି ନଥିଲୁଁ ଏହାଠାରୁ ଆହୁରି ବଡ ବିପଦର ଛାୟା ଆମ ଆଡକୁ ମାଡି ମାଡି ଆସୁଥାଏ ।

ଏ ଧରା ପୃଷ୍ଠରେ ଜନ୍ମ ଗ୍ରହଣ କରିଥିବା ପ୍ରତ୍ୟେକ ଯୁଗଜନ୍ମା ବ୍ୟକ୍ତି ଐଶ୍ୱରିକ ଶକ୍ତି ସମ୍ପନ୍ନ । ସେମାନେ ନିଃସ୍ୱାର୍ଥପର ଭାବେ ମାନବଜାତି ଓ ଦେଶ ସେବାରେ ନିଜକୁ ଉତ୍ସର୍ଗ କରି ଥାଆନ୍ତି । ନିଜ କଥା ବା ପରିବାର କଥା କେବେହେଲେ ଚିନ୍ତା କରିବାକୁ ସମୟ ପାଇ ନଥାଆନ୍ତି । ବାପା ସେମାନଙ୍କ ଭିତରେ ଜଣେ । ସେ ଅଳ୍ପ ପରମାୟୁ ନେଇ ଏ ଧରାକୁ ଆସିଥିଲେ । ଦେଶ ଦଶ ପାଇଁ ଚନ୍ତା କରି ସେ ପରିବାର ବିଷୟରେ ଭାବିବାକୁ ସମୟ ଦେଇ ପାରୁ ନଥିଲେ । ଆର୍ଥିକ ଅଭାବ ବୋଧ ତାଙ୍କ ପାଖେ ପାଖେ ଲାଗି ରହିଥିଲେ ହେଁ ଏହା କେବେ ତାଙ୍କୁ ବିଚଳିତ କରୁ ନଥିଲା । ସେ ସଦାବେଳେ କହୁଥିଲେ, 'ହେଲେ ହେଁ ଦରିଦ୍ର ମୁଁ ଅତି / ମନୋରଥେ ମୁଁ ମହୀପତି ' ।

ପୂର୍ବରୁ କହିଛି ବାପା ତାଙ୍କ ଶେଷ ଜୀବନରେ ଅତି ମାତ୍ରାରେ ଈଶ୍ୱର ବିଶ୍ୱାସୀ ହୋଇ ଉଠିଥିଲେ । ସେ ବୋଧହୁଏ ତାଙ୍କର ଅନ୍ତିମ ସମୟ ଆସି ଯାଉଚି ବୋଲି ଜାଣି ପାରିଥିଲେ। ଏଣୁ ପଛରେ ରହିଥିବା ସ୍ତ୍ରୀ ସନ୍ତାନଙ୍କ ଭବିଷ୍ୟତ ପ୍ରତି ଯତ୍ନଶୀଳ ହୋଇ ଉଠିଥିଲେ । ପରିବାରର ପ୍ରତି ତାଙ୍କର ବ୍ୟାକୁଳତା ବେଳକୁ ବେଳ ବଢ଼ିଲା ।ସାମାନ୍ୟ ପାରିବାରିକ ଅସୁବିଧାରେ ସେ ବ୍ୟସ୍ତ ହୋଇ ପଡୁ ଥାଆନ୍ତି । ଥରେ ଭାଇ କଲେଜରୁ ଫେରିବାରେ ଅହେତୁକ ବିଳମ୍ବ ଦେଖି ସେ କୌଣସି ଅଘଟଣ ଚିନ୍ତା କରି ଅଚେତ ହୋଇ

ପଡିଥିଲେ । ମନେ ହେଉଥିଲା ସନ୍ତାନମାନଙ୍କ ସାମାନ୍ୟ ବିଚ୍ଛେଦ ସେ ସହ୍ୟ କରି ପାରୁ ନଥିଲେ ।

ନିଜ ଶରୀର ବିଷୟରେ ଚିନ୍ତିତ ହେଉଥିଲେ ମଧ୍ୟ କାହା ଆଗରେ ଏହା ପ୍ରକାଶ କରନ୍ତି ନାହିଁ । ୧୯୬୦ ମସିହାରେ ସାରଳାଙ୍କଠାରୁ ଫେରିବା ପରେ ବାପାଙ୍କୁ ଜ୍ୱର ଲାଗି ରହିଲା । ଏପରିକି ଅକ୍ଟୋବର ମାସରୁ ମୋଟେ ଜ୍ୱର ଓହ୍ଲାଇଲା ନାହିଁ । ସିଂହ ଗର୍ଜନ ଏବଂ କ୍ଷିପ୍ର ଲେଖନୀ ଚାଳନା ଦ୍ୱରା ସାରା ଓଡିଶାରେ ଭଞ୍ଜ ସାହିତ୍ୟର ବିପ୍ଳବ, ପ୍ରାଚୀନ ଓଡିଆ ଭାଷା , ଜାତି ଓ ସଂସ୍କୃତିର ରକ୍ଷକ ଭାବେ ଯିଏ ଦିବା ରାତ୍ର ନିଜକୁ ନିୟୋଗ କରି ସାଗରର ଢ଼େଉ ପରି ଆଗକୁ ମାଡି ଚାଲିଥିଲେ ତାହା ଯେ ଭଙ୍ଗା ପଡିବାର ପୂର୍ବ ଲକ୍ଷଣ ଦେଖା ଦେଲାଣି ତାହାର ପ୍ରାକ୍ ସୂଚନା କେହି ପାଇଲେ ନାହିଁ । କିନ୍ତୁ ସେ ଜାଣିଥିଲେ ତାଙ୍କ ମୃତ୍ୟୁ ପରେ ଓଡିଆର ଜଗନ୍ନାଥ, କୋଣାର୍କ ଓ ସାହିତ୍ୟ ରକ୍ଷଣାବେକ୍ଷଣ ପାଇଁ ଯେଉଁ ଦୁର୍ଭେଦ୍ୟ ଦୁର୍ଗ ଗଢ଼ି କମାଣ ଧାରୀ ପ୍ରହରୀ ନିୟୋଗ କରିଛନ୍ତି ସେମାନଙ୍କ ଲକ୍ଷ୍ୟଭେଦୀ ଅସ୍ତ୍ର ସେ ଦୁର୍ଗର ରକ୍ଷା କବଚ ହେବ - ଏହି ଆଶ୍ୱସ୍ତି ତାଙ୍କ ଦିବଂଗତିର ସହାୟକ ହୋଇଛି ।

ପୂର୍ବକାଳରେ ଗୁରୁଶିଷ୍ୟ ପରଂପରା ଅତି ଉଚ୍ଚକୋଟିର ଥିଲା । ଗୁରୁକୁଳ ଆଶ୍ରମର ଦୀକ୍ଷା ପ୍ରାପ୍ତ ଶିଷ୍ୟମାନଙ୍କ ଆଦର୍ଶର ପଟାନ୍ତର ନାହିଁ । ଶ୍ରବଣ କୁମାର ଆଦି ତାହାର ଜ୍ୱଳନ୍ତ ପ୍ରମାଣ । ବର୍ତ୍ତମାନ ଯୁଗରେ ଗୁରୁ ଶିଷ୍ୟର ସଂପର୍କ ଅହି-ନକୁଳ । ଆଧୁନିକ ଯୁଗର ଛାତ୍ରମାନେ ଗୁରୁଭକ୍ତି ଛାଡି ଗୁରୁ ଦ୍ରୋହୀ ହୋଇ ଯାଉଛନ୍ତି । ଶିକ୍ଷା ଭାଲ ପାଇଁ ଆସିଥିବା ଶିକ୍ଷାୟତନକୁ ଅପବିତ୍ର ଓ କଳୁଷିତ କରୁଛନ୍ତି । ଦେଶ , ରାଜ୍ୟ, ବଂଶ ଓ ପରିବାର ପ୍ରତି କର୍ତ୍ତବ୍ୟ ଭୁଲି ତାହାକୁ ରସାତଳଗାମୀ କରୁଛନ୍ତି । ସେମାନଙ୍କୁ ଦୋଷ ଦେଇଲାଭ ନାହିଁ । ବର୍ତ୍ତମାନ ଯୁଗର ଶିକ୍ଷା ପଦ୍ଧତି ଏବଂ ପିତାମାତା ଏଥିପାଇଁ ଦାୟୀ । କିନ୍ତୁ ଏହାର ବ୍ୟତିକ୍ରମ ଥିଲା ମୋ ବାପାଙ୍କ ଆଶ୍ରମ । ସେ ଆଶ୍ରମ ବା ଅନୁଷ୍ଠାନରେ ଗଢା ଯୁବ ସମାଜ ତାଙ୍କ ଗୁରୁଙ୍କ ଆଦର୍ଶରୁ ବର୍ତ୍ତମାନ ପର୍ଯ୍ୟନ୍ତ ବିଚ୍ୟୁତହୋଇ ନାହାନ୍ତି । କଳିଙ୍ଗ ଭାରତୀ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ପ୍ରଭୃତି ଜାତୀୟ କବିଙ୍କୁ ଯେ ଆକ୍ଷେପ କରେ ସେ କଳିଙ୍ଗ ଭାରତୀର ସଭ୍ୟମାନଙ୍କ ପାଖରୁ ନିସ୍ତାର ପାଏ ନାହିଁ । ସେମାନେ ତାଙ୍କର ଗୁରୁ ଓ ତାଙ୍କ ପରିବାର ପ୍ରତି କରିଥିବା କର୍ତ୍ତବ୍ୟକୁ ମୁଁ ଭାବେ ଗୁରୁ ଦକ୍ଷିଣା (ଶିକ୍ଷା ସମାପନ ପରେ ଗୁରୁ ଆଶ୍ରମ ପରିତ୍ୟାଗ ପୂର୍ବରୁ ଗୁରୁଙ୍କୁ ଦକ୍ଷିଣା ପ୍ରଦାନ ପୂର୍ବ କାଳରେ ଏକ ବିଧି ଥିଲା ।) ।ବାପାଙ୍କ ମୃତ୍ୟୁ ବେଳକୁ ଆମେ ଭାଇ ଭଉଣୀ ନାବାଳକ ଥିଲୁଁ । ଆମର ପାଠ ପଢା ଠାରୁ ବିବାହ ପର୍ଯ୍ୟନ୍ତ ଗୁରୁ ଦାୟିତ୍ୱ ତୁଲାଇ ଏହି କଳିଙ୍ଗ ଭାରତୀ ସାଧକବର୍ଗ ଜଗତ ବାସୀଙ୍କ ଆଗରେ ଥୋଇଛନ୍ତି ବିରାଟ ଆଦର୍ଶ ।

ସେହି ବର୍ଷ ନଭେମ୍ବର ବେଳକୁ ଭୁବନେଶ୍ୱରରେ ରୋଗ ଶଯ୍ୟାରେ ପଡି ରହି ତାଙ୍କୁ ବହୁତ କଷ୍ଟ ହେଉଥାଏ । ମାୟାଧର ପରି ସେବକର ସେବାରେ ଥାଇ ମଧ୍ୟ ସେ ଅସହାୟ ବୋଧ କରୁଥିଲେ । ମୋତେ କଟକରୁ ଡାକି ପଠେଇଲେ । ମାଆ ବିଚଳିତ ହୋଇ ନିଜେ ଗଲା । କିନ୍ତୁ ରୋଗ କମିଲା ନାହିଁ, ବରଂ ବଢ଼ି ବଢ଼ି ଚାଲିଲା । କବି ଭାଇ ପ୍ରଭୃତି ପହଞ୍ଚି ତାଙ୍କୁ କଟକ ଡାକ୍ତରଖାନାକୁ ସ୍ଥାନାନ୍ତର କଲେ ।

ଡାକ୍ତରଖାନାରେ ଦେଖି ଲୋତକାପ୍ଳୁତ ଚକ୍ଷୁରେ ମୋତେ କହିଲେ-ତୋତେ ଡାକିଥିଲି ଭୁବନେଶ୍ୱରରେ ଏକାନ୍ତରେ ମୋର ଆତ୍ମ ଜୀବନୀ ଡାକିବି, ଆଉ ତୁ ବସି ଲେଖିବୁ । ମାତ୍ର ଡାକ୍ତରଖାନାର ଏ ପରିବେଶରେ ସେ କାର୍ଯ୍ୟ ହୋଇ ପାରିବ ନାହିଁ ।' ତାଙ୍କ କାର୍ଯ୍ୟ ଅପୂର୍ଣ ରହିଗଲା ବୋଲି ସେ ଭାବି ସାରି ଥିଲେ । ଏଥି ପାଇଁ ଅବଶୋଷ କଲେ । ମୁଁ କିନ୍ତୁ ତାଙ୍କୁ କଥା ଦେଇଥିଲି ମୋର ଷାଣ୍ମାସିକ ପରୀକ୍ଷା ପରେ ମୁଁ ଲେଖି ବସିବି ।

ସେତେବେଳେ ସମସ୍ତେ କହୁଥାଆନ୍ତି ଏଇ ସଂକ୍ରାନ୍ତି କଟି ଗଲେ ବାପାଙ୍କ ସମସ୍ତ ରିଷ୍ଟ କଟି ଯିବ । ସେ ବର୍ଷ ମକର ସଂକ୍ରାନ୍ତି ଜାନୁୟାରୀ ୧୩ ତାରିଖରେ ପଡିଥାଏ । ମୁଁ ମଧ୍ୟ ଏଇ ଆଶାରେ ଅଫିସ ଘର ସଜାଡିବା ଓ କ୍ୟାଲେଣ୍ଡର ତାରିଖ ଗଣିବାରେ ଲାଗିଥାଏଁ । ମାତ୍ର ୧୨ ତାରିଖ ଦିନ ମୁଁ ଯାହା ଦେଖିଲି ମୋର ସବୁ ଆଶା ମଉଳି ଗଲା । ବାପା ମଧ୍ୟ ସେହିପରି ନିରାଶାମୟ କଥା କହିଲେ । କବିଭାଇଙ୍କ ସେବାରେ ସେ ଏତେ ପ୍ରୀତ ହୋଇଥିଲେ ଯେ ମୋତେ କହୁଥିଲେ ତାର ବୋଧ ହୁଏ ପୂର୍ବ ଜନ୍ମରେ ପିତୃଋଣ ବାକି ଥିଲା । ମୋର ସେବା କରି ସବୁ ସୁଝି ଦେଲା । ମାୟାଧର ବି ଥକି ପଡିଲାଣି । ହେଲେ ମୋତେ କେହି ଟାଣି ଧରି ପାରିବ ନାହିଁ ।



ଅଶ୍ରୁଳ ଉଚ୍ଛ୍ୱାସ :

ଏହି ମହାନ ଜନ ନାୟକ ଥିଲେ ମୋର ବାପା । ସମସ୍ତଙ୍କ ପାଇଁ ତାଙ୍କର ଉପଦେଶ ଥିଲା ଉଚ୍ଚକୋଟିର । ଅଗାଧ ପାଣ୍ଡିତ୍ୟର ସେଥିଲେ ସାଗର । ଯେ ସେଥିରୁ ଟିପେ ନେଇଛି ସେ ପୂର୍ଣହୋଇ ଯାଆନ୍ତି । ଆଉ ଯିଏ ସେ ଅଗାଧ ସାଗରରେ ଅବଗାହନ କରିଛି ସେ ଧନ୍ୟ ହୋଇ ଯାଇଛି । ମୁଁ ଅବୋଧ ଅବସ୍ଥାରେ ତାଙ୍କୁ ହରାଇଲି । ଏଣୁ ତାଙ୍କ ଜ୍ଞାନରୁ କାଣିଚାଏ ଗ୍ରହଣ କରି ପାରିଲି ନାହିଁ । ଖାଲି ତାଙ୍କର ସ୍ମୃତି ଟିକକ ଆଶ୍ରା କରି ଆଗେଇ ଚାଲିଛି ।

ସେ ଦିନ ବାପାଙ୍କ ସହ ମୋର ଥିଲା ଡାକ୍ତର ଖାନାରେ ଶେଷ ସାକ୍ଷାତ । କାହିଁକି କେଜାଣି ତାଙ୍କୁ ଛାଡି ଆସିବାକୁ ଇଚ୍ଛା ହେଉନ ଥାଏ । ଶରୀର କ୍ଷୀଣ- ପାଚିଲା ଆମ୍ବ ରଙ୍ଗ ପରି ବର୍ତ୍ତୁଳ ଆକାରର ସେ ବିରାଟ ଉଦର ତାର ଆକାର ହରେଇ ବସିଛି । ଦିନେ ଏଇ ଉଦର ଉପରେ ଗୋଡ ବାଡେଇ କେତେ ଗେହ୍ଲା ହେଉଥିଲି । ଏବେ କଣ୍ଠସ୍ୱର କ୍ଷୀଣ- ଯେଉଁ କଣ୍ଠର ଭୀମ ଗର୍ଜନରେ ସାରା ଓଡିଶାରେ ସାହିତ୍ୟ ଆକାଶ ପ୍ରକମ୍ପିତ ହେଉଥିଲା ସେ ସ୍ୱର ଆଜି କ୍ଷୀଣରୁ କ୍ଷୀଣତର । ଯାହାର ଲେଖନୀମୁନ ସାରା ବିଶ୍ୱ ଦରବାରରେ ଉତ୍କଳୀୟତାର ପରାକାଷ୍ଠା ପହଞ୍ଚାଇବାରେ ସଦା ତତ୍ପର ଥିଲା ସେ ଲେଖନୀ ଆଜି ନିଥର ।

ସର୍ବ କ୍ଷମାମୟ ବାପାଙ୍କୁ ରୋଗ ଶଯ୍ୟାରେ ଅସହାୟ ଭାବେ ପଡିଥିବା ଦେଖି ମୋ ହୃଦୟରେ ଅସହ୍ୟ ଯନ୍ତ୍ରଣା ହେଲା । ଗାଢ଼ ରେଖାଙ୍କିତ ହସ୍ତମଧ୍ୟରେ ମୋର ହାତଟି ଥାଏ । ହାତ କାଢ଼ି ଆଣି ଘରକୁ ଫେରିଯିବାକୁ ତିଳେ ଇଚ୍ଛା ହେଉ ନଥାଏ । ମାଧୋଉ କହିଲେ, ବାବୁ ଝିଅ ଘରକୁ ଯାଉ , ରାତି ହେଲାଣି । କ'ଣ ଭାବୁଥିଲେ କେ ଜାଣି ସମ୍ବିତ ପାଇଲା ପରି ଚମ୍‌କି ଉଠିଲେ ବାପା । ମୋ ମସ୍ତକକୁ ଟାଣି ନେଇ ନିଜ ଛାତି ଉପରେ ଥୋଇ ଡାହାଣ ହାତରେ ଆଉଁସି ଦେଲେ । କହିଲେ, 'ଅନ୍ଧାର ହେଲାଣି ,ଘରକୁ ଫେରି ଯାଆ ' । ମୋ ଆଖିର ଲୁହ ବାପାଙ୍କ ଛାତିକୁ ସେଦିନ ଭିଜାଇ ଦେଇଥିଲା ସିନା କିନ୍ତୁ ତାର କିଛି ମୂଲ୍ୟ ରହିଲା ନାହିଁ । ହୃଦୟର କୋହ , ଆଖିର ଲୁହ ଆଉ ବାପାଙ୍କ ପରଶକୁ ବହନ କରି ସେ ଦିନ ଅନିଚ୍ଛା ସତ୍ୱେ ଘରକୁ ଫେରିଲି ସିନା କିନ୍ତୁ ମୋ ନିଜ ଚାରି ପଟେ ତାଙ୍କୁ ଅନୁଭବ କରୁଥିଲି । ସେଇ 'ଘରକୁ ଫେରି ଯା' ଶବ୍ଦଟି ମୋ ପାଇଁ ଥିଲା ବାପାଙ୍କ ଶେଷ କଥା ।

ଓଡିଶାର ତତ୍କାଳୀନ ମୁଖ୍ୟ ମନ୍ତ୍ରୀ ବିଜୁ ପଟ୍ଟନାୟକ ତାଙ୍କୁ ଡାକ୍ତରଖାନାରେ ଦେଖି ଚିକିତ୍ସାର ସମସ୍ତ ସୁବନ୍ଦୋବସ୍ତ କରିଥିଲେ । ସୁସ୍ଥ ହେଲା ପରେ ବାପାଙ୍କୁ ତାଙ୍କ କଳିଙ୍ଗ ପ୍ରେସ୍‌ର ମେନେଜର ଭାବେ ନିଯୁକ୍ତି ଦେବାର ପ୍ରତିଶ୍ରୁତି ମଧ୍ୟ ଦେଇ ଯାଇଥିଲେ । ନିଜର ଆଶୁ ଆରୋଗ୍ୟ ଏବଂ ଚାକିରି କଥା ଶୁଣି ବାପା ବେଶ୍ ଆସ୍ଥାବାନ୍ ହୋଇ ଉଠିଥିଲେ ।

ମୁଁ ଆଶା କରିଥିଲି ବାପାଙ୍କ କିଛି ସେବା କରି ମୋର ମନର ଅବଶୋଷ ମେଣ୍ଟାଇ ନେବି । ବାପା ବି ସେହି ପରି ଆଶା କରୁଥିଲେ । ସେ ମୋତେ ତାଙ୍କ ମାଆ ଭଳି ଭାବୁଥିଲେ । ମାଆ ଶେଷ ବେଳକୁ ତାର ପୁଅକୁ କେମିତି ବା ସେବା କରି ଥାଆନ୍ତା ?

ସେତେବେଳେ ମୃତ୍ୟୁ ବା ଜୀବନ କ'ଣ - ଏହି ଗୂଢ଼ ତଥ୍ୟର ଭେଦ ମୁଁ ଠିକ୍ ଭାବେ ଜାଣି ନଥିଲି । କେବଳ ଏତିକି ଜାଣି ଥିଲି ଯିଏ ମୃତ୍ୟୁଲାଭ କରେ ତାର ଆଉ ଦର୍ଶନ ମିଳି ନଥାଏ । ବାପାଙ୍କ ଦର୍ଶନ ବିନା ଦୀର୍ଘ ଜୀବନ ମୋତେ କଟେଇବାକୁ ପଡିବ ଏଭଳି କଳ୍ପନା ମୋତେ ଛୁଇଁ ନଥାଏ । କେବଳ ମାଆର ଅସ୍ଥିରତା ଆଉ ବାପାଙ୍କ ଯନ୍ତ୍ରଣା ମୋତେ ବାରମ୍ବାର ଆହତ କରୁଥାଏ ।

୧୯୬୧ ମସିହା ଜାନୁୟାରୀ ୧୪ ତାରିଖ ଶନିବାର ଦିନ ସାଢ଼େ ତିନିଟାରେ ଆମଠାରୁ ସବୁ ସଂପର୍କ ଛିନ୍ନ କରି ବାପା ସେହି ଅପ୍ରତ୍ୟାବର୍ତ୍ତନୀୟ ଅନାମୟ ଧାମକୁ ପ୍ରୟାଣ କଲେ । ଘରେ କ୍ରନ୍ଦନର ରୋଳ ବଢ଼ି ଗଲା । ସାରା ଓଡିଶାରେ ଚହଳ ପଡିଗଲା । ସେତେବେଳେ ଆହା ବୁ ବୁ ଓ ଲୁହର ବନ୍ୟା ଭିତରେ ତାଙ୍କ ପ୍ରତିଷ୍ଠିତ ସାହିତ୍ୟ ମନ୍ଦିର ପ୍ରାଙ୍ଗଣରେ ତୃଣର ଶଯ୍ୟାରେ କେଇଂଖଣ୍ଡ ବାଉଁଶ ଉପରେ ବିରାଟ ବପୁ ଧାରୀ କଳିଙ୍ଗର ବର ପୁତ୍ର ଶାନ୍ତିରେ ଚିର ନିଦ୍ରାରେ ଶୟନ କରିଥାଆନ୍ତି । ଜଣ ଜଣ କରି ଶ୍ରଦ୍ଧାଞ୍ଜଳିର ପର୍ବ ଚାଲି ଥାଏ । କେତେ ବେଳକେ ମୋର ପାଳି ପଡିଲା । ପୂର୍ବର ଦିବ୍ୟ କାନ୍ତି ମୁଖ ମଣ୍ଡଳର ପ୍ରଶସ୍ତ ଲଲାଟରେ ଝଟକୁ ଥାଏ ମହନୀୟତାର ଆଭା । ନିଜକୁ ସଂଜତ କରି ନପାରି ତାଙ୍କ ମୁଣ୍ଡଟିକୁ ଦୁଇ ହାତରେ କୁଣ୍ଢେଇ ଧରି ଆଉ ଛାଡି ନଥିଲି , ଯେମିତି ମୋ ପାଖରୁ ମୋ ବାପାଙ୍କୁ କେହି ନେଇ ନପାରନ୍ତି ।

କବି ଭାଇ ଆସି ବାପାଙ୍କଠାରୁ ମୋତେ ବିଚ୍ଛିନ୍ନ କଲେ । ଅନ୍ୟମାନେ ତାଙ୍କ ପାର୍ଥିବ ଶରୀରକୁ ଶ୍ମଶାନ ଘାଟକୁ ନେଇ ଗଲେ । କେତେ ଲୋକ ଭିତରେ କବି ଭାଇ ବି ମୋତେ ବୋଧ ଦେଇଥିଲେ । ହେଲେ ସବୁ ମୋର କାନରେ ପଶି ବାହାରି ଯାଉଥାଏ । ମୋର ମନେ ପଡିଲା ବାପାଙ୍କ କଥା - 'ଅସହାୟର ସହାୟ ଚକ୍ରଧାରୀ '। ସେ ନିଜକୁ ରାମ ସୀତାଙ୍କ ଚରଣ ତଳେ ସମର୍ପି ଦେଇଥିଲେ । ସେ ବେଶ୍ ପରି ପକ୍ୱ ବୟସ ଯାଏ ମାତା ପିତା ବିଚ୍ଛେଦ କ'ଣ ଜାଣି ନଥିଲେ । ହେଲେ ମୁଁ ? ମୁଁ ହେଲି ଆବାଲ୍ୟରୁ ପିତୃ ହରା ।

## ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ବାପା ତାଙ୍କ ପିତା ମାତାଙ୍କ ଠାରୁ ଭକ୍ତିଭାବ ଓ ବିଦ୍ୟାର୍ଜ୍ଜନ ଲାଭ କରିଥିଲେ । ବାଲ୍ୟକାଳରୁ ସେମାନଙ୍କ କୋଳରେ ଶୋଇ ପୁରାଣ କାହାଣୀ ଶୁଣି ତାହା ପ୍ରତି ତାଙ୍କ ଆକର୍ଷଣ ଜାତ ହୋଇଥିଲା । ସେମାନଙ୍କଠାରୁ ଆଧ୍ୟାତ୍ମିକ ଚେତନା ଲାଭ କରିଥିଲେ । ହେଲେ ମୁଁ ବାପାଙ୍କ ଠାରୁ ଶିକ୍ଷା ଦୀକ୍ଷା ଲାଭରୁ ଚିରଦିନ ପାଇଁ ବଞ୍ଚିତ ହେଲି । ଯେଉଁ ସ୍ୱଳ୍ପ ସମୟ ତାଙ୍କ ସହ ମିଶିଛି ଏବଂ ଯେଉଁ ସ୍ୱଳ୍ପ କଥା ତାଙ୍କ ଠାରୁ ଶୁଣିଛି ସେଥିରେ ମୁଁ ଅନୁଭବ କରିଛି ଯେ ତାଙ୍କର ବିଚାର ଧାରା କେତେ ସମୁନ୍ନତ ଥିଲା । କେବଳ ତାଙ୍କ ଆଦର୍ଶ ଅନୁକରଣକାରୀ ହିଁ ତାଙ୍କୁ ଠିକ୍ ଭାବେ ବୁଝି ପାରିବ ।

ବାପା ଚାକିରୀରୁ ଅବସର ନେବା ଦିନ କଥା ମୋର ଆଜି ମନେ ପଡୁଛି । ସବୁଥର ପରି ସେ କଟକରେ ସନ୍ଧ୍ୟା ସମୟରେ ପହଞ୍ଚିଲେ ଏବଂ ରିକ୍ସାରେ ବସି ମୋତେ ଡାକ ଛାଡିଲେ । ତାଙ୍କୁ ରିକ୍ସାରୁ ଓହ୍ଲାଇବାରେ ସାହାଯ୍ୟ କଲି । ସେ ମୋ ହାତକୁ ବଢ଼ାଇ ଦେଲେ ବଡ ବଡ ଗୋଲାପଫୁଲର ଏକ ମସ୍ତ ବଡମାଳା । କହିଲେ, ଆଜି ମୋର ଚାକିରୀ ସରିଲା । ଅଫିସର ବନ୍ଧୁମାନେ ମୋତେ ବିଦାୟ କାଳୀନ ଏଇ ଉପହାର ଦେଇଛନ୍ତି । ମୁଁ ଦେଖିଲି ଏତେ ବଡ ମାଳା ସହ ଏକ ଶିଙ୍ଗର ବାଡି ମଧ୍ୟ ସେମାନେ ଉପହାର ଦେଇଛନ୍ତି । ମୁଁ ଭାବିଲି ବାପା ଯୁବକ କାଳରେ ତ ବାଡି ଧରୁଥିଲେ ଆଉ ଏବେ ସେଇ ବାଡି ଧରିବେ । ତେବେ ବାପା ବୁଢ଼ା ହେଲେ କେବେ ଯେ ଯେ ଚାକିରିରୁ ଅବସର ନେଲେ ।ତାଙ୍କ ସଦା ହସ ହସ ଉଜ୍ଜ୍ୱଳ ମୁଖ ମଣ୍ଡଳରେ ଅବସର କାଳୀନ ବିଷାଦର ଲେସମାତ୍ର ଚିହ୍ନ ନଥିଲା । କିଛି କାର୍ଯ୍ୟରେ ତାଙ୍କ ମନରେ ସ୍ୱଳ୍ପକାଳ ପାଇଁ ଦୁଃଖ ଜାତ ହେଉଥିଲେ ମଧ୍ୟ ଭାଙ୍ଗି ପଡିବା ତାଙ୍କ ଜାତକରେ ନଥିଲା ।

ମୁଁ ଶୁଣିଛି ଚାକିରୀରୁ ଅବସର ପରେ ବହୁଲୋକ ବିରକ୍ତ ବୋଧ କରନ୍ତି - ଚିଡ ଚିଡା ହୋଇ ଯାନ୍ତି । କିନ୍ତୁ ବାପାଙ୍କ ପାଖରେ ସେ ଦୁର୍ଗୁଣର ଚିହ୍ନ ତିଳେ ହେଲେ ନଥିଲା । ସେ ତ ଥିଲେ ଭିନ୍ନ ଜଗତର ବ୍ୟକ୍ତି । ସାଂସାରିକ ଦୁଃଖ ଦୁର୍ଦ୍ଦଶା ତାଙ୍କୁ ବା କାହିଁକି କଷ୍ଟ ଦେବ ? ନିଜର ଓ ପରିବାରର ସ୍ୱାର୍ଥରେ ଯେଉଁ ବ୍ୟକ୍ତି ସଦା ବ୍ୟାପୃତ ତାଙ୍କୁ ବିଷୟା ବିଷ ଘାରିଥାଏ । ମାତ୍ର ବାପାଥିଲେ, ଜଣେ ନିଃସ୍ୱାର୍ଥପର ଦେଶ ସେବକ ଓ କର୍ତ୍ତବ୍ୟନିଷ୍ଠ ଅନୁଷ୍ଠାନ । ଉତ୍କଳର ଏହି ବରପୁତ୍ରଙ୍କୁ ଧନ ଦୌଲତର ନିଶା ଘାରି ନଥିଲା । ମୃତ୍ୟୁର ଦ୍ୱାର ଦେଶରେ ପହଞ୍ଚି ସୁଦ୍ଧା ସେ ତାଙ୍କ ହାତଗଢ଼ା ଅନୁଷ୍ଠାନ ଓ ଶିଷ୍ୟଙ୍କ ପାଇଁ ବ୍ୟସ୍ତ ଥିଲେ । ସେମାନଙ୍କ ବିଷୟରେ ଜାଣିବା ପାଇଁ ସଦା ଉଦ୍‌ଗ୍ରୀବ ହୋଇ ରହିଥିଲେ । ଏପରିକି ମୃତ୍ୟୁର ପୂର୍ବ ଦିନ ମଧ୍ୟ ମୋତେ ପଚାରିଥିଲେ, କଳିଙ୍ଗ ଭାରତୀର ରବିବାରୀୟ ସଭା ଠିକ୍ ଭାବେ ହେଉଛି କି ନାଁ ।

ଡାକ୍ତରଖାନାରୁ ବାପା ଫେରି ଆସି ରହିବା ପାଇଁ ଅଫିସ ଘର ସଜାଡିଥିଲି । ମାତ୍ର ସେଦିନ ତାଙ୍କର ଦୁର୍ବଳ ଶରୀର ଓ ଅନ୍ୟମନସ୍କତା ଦେଖି ମନକୁ ପାପ ଛୁଇଁଲା । ମନରେ ନାନା ପ୍ରକାର ଦୁର୍ଭାବନା ଜାତ ହେଲା । ନିଜକୁ ଯେତେ ଭୁଲେଇବାକୁ ଓ ଦୃଢ଼ କରିବାକୁ ଚେଷ୍ଟା କଲେ ବି ବିକ୍ଷିପ୍ତ ଭାବନାମାନ ମନକୁ ଛୁଇଁ ଯାଉଥାଏ । ସାମ୍ଭାବ୍ୟ ସତ୍ୟକୁ କେବେ ସହଜରେ ଗ୍ରହଣ କରି ପାରୁ ନଥାଏ ।

ଏଇ ମୋର ପୁଣ୍ୟବାନ୍ ବାପା ଅନ୍ୟମାନଙ୍କ ପାଖରେ କେତେ ବିରାଟ । ମାତ୍ର ମୋ ପାଖରେ ଗୋଟିଏ ଅବୋଧ ଶିଶୁ ଠାରୁ ଆରମ୍ଭ କରି ମାହାନ୍ ଆଦର୍ଶର ସେ ପିତୃ ଦେବ । ସେ ଯେତେ କାର୍ଯ୍ୟବ୍ୟସ୍ତ ଥିଲେ ବି ମୋର ଉପସ୍ଥିତି ତାଙ୍କ ପାଖରେ ଆବଶ୍ୟକ ଥିଲା । ମୋର ସକଳ ଦୁଷ୍ଟାମୀକୁ ସେ ସହ୍ୟ କରୁଥିଲେ । କାର୍ଯ୍ୟବ୍ୟସ୍ତ ଭିତରେ ମୋର ମନକୁ ଖୁସି କରିବାପାଇଁ ମୋ ହାତରେଥିବା ଅଧା ଚଟା ଆମ୍ବୁଲ ଟିକକ ବି ସେ କେତେ ଆଗ୍ରହରେ ନିର୍ବିକାର ଚିତ୍ତରେ ଟିକେ ଚାଟି ଦେଉଥିଲେ । ମାଆର ମୃଦୁ ଭତ୍ସନା ପ୍ରତି ସେତେବେଳେ ଭ୍ରୂକ୍ଷେପ ନଥାଏ ।

ଗାଧୋଇଲା ବେଳେ ପ୍ରଥମ ପାଣି ତାଙ୍କ ଦେହରେ ପଡିବା ଭାରି କଷ୍ଟକର । 'ଝିଅ ଢ଼ାଳ ଢ଼ାଳ ବାପ ଢ଼ାଳ ଢ଼ାଳ' କହିଲେ ସେ ଦେହରେ ପାଣି ଢ଼ାଳି ହେବେ । ମୋର ହେତୁ ହେଲା ଦିନୁ ବାପାଙ୍କ ପ୍ରାୟ ସବୁ ସେବା ମୁଁ କରୁଥିଲି । ଥରେ ଭୁବନେଶ୍ୱରରେ ଚୌକିରେ ବସିବା ବେଳେ ତଳେ ପଡି ଯାଇଥିଲେ । ମାଆକୁ ହସ ଲାଗିଲା । ମୁଁ ତାଙ୍କୁ ତଳୁ ଉଠେଇ ମାଆ ଉପରେ ବିରକ୍ତ ହେଲି । କିନ୍ତୁ ବାପା ବାରଣ କରି କହିଲେ - ମାଆ ଉପରେ କେବେ ବିରକ୍ତ ହେବ ନାହିଁ ।

ମୋର ବାପା ବିଚ୍ଛନ୍ଦଚରଣ ଜଣେ କେବଳ ବ୍ୟକ୍ତି ନଥିଲେ ସେ ଥିଲେ ଏକ ସଚଳ ଅନୁଷ୍ଠାନ । ଯାହାର ହୃଦ୍ ପିଣ୍ଡର ଦୁକ୍ ଦୁକ୍ ଟିକକ ବି ଶେଷ ବେଳେ ମାତୃ ଭୂମି ଉତ୍କଳ ଓ ନିଜ ଅନୁଷ୍ଠାନର କଥା ଭାବୁଥିଲା ସେ ଭଳି ମାହନ୍ ବ୍ୟକ୍ତିର ଜୀବନ ଚରିତ ଲେଖିବା କେତେ ଦୁରୁହ ବ୍ୟାପାର ! ତାଙ୍କର ମର ଦେହ ସେ ପୁରକୁ ଚାଲି ଯାଇଛି । ସେ ଭଳି ଅନୁଷ୍ଠାନର ମୃତ୍ୟୁ କେବେ ନାହିଁ । ବାପା ସେ ପୁରରେ ଥାଇ ଯେପରି ମୋତେ ନିର୍ଦ୍ଦେଶ ଦେଉଛନ୍ତି , ଆଉ ମୁଁ ଲେଖି ଚାଲିଛି । ଏଭଳି ବ୍ୟକ୍ତି ଜୀବନ ଚରିତ ଲେଖି କେବେ ଶେଷ କରି ହୁଏ ନାଁ ।

ଏହାର ପରିସମାପ୍ତି ଟାଣିବା ମୋ ପକ୍ଷେ କଷ୍ଟକର ବ୍ୟାପାର । କେବଳ ଲୁହର ତର୍ପଣ କରି ତାଙ୍କୁ ସମ୍ମାନିତ କରିହୁଏ । ଏହା ଲେଖିଲା ବେଳେ ଅମାନିଆ ଲୁହ ଝରିଆସି ମୋର ଲେଖନୀ ରୁଦ୍ଧ କରୁଛି । ସେ ଭଳି ମହାନ୍ ବ୍ୟକ୍ତିର କନ୍ୟା ହୋଇ ମୁଁ

ଧନ୍ୟ ହୋଇ ଯାଇଛି । ବାପା ଜନ୍ମ ହୋଇଥିଲେ ଓଡିଶାର ଏକ ଏକ ଛୋଟ ଗାଁରେ । ଏକ ସାଧାରଣ ମଧ୍ୟବିତ୍ତ ପରିବାରର ମଧ୍ୟମ ସନ୍ତାନ ଭାବେ । ଜଣେ ଚଳତ୍‌ଶକ୍ତିହୀନ ମଣିଷ ଭାବେ ସେ ଜୀବନ ଆରମ୍ଭ କରିଥିଲେ ହେଁ ଶେଷ ବେଳକୁ ସେ ସେଇ କ୍ଷୁଦ୍ର ପଲ୍ଲିର ସୀମା ସରହଦ୍ ପାରି ହୋଇ ହୋଇ ଯାଇଥିଲେ ମହା ଭାରତୀୟ । ମୃତ୍ୟୁ ପରେ ସେ ଆହୁରି ଊର୍ଦ୍ଧ୍ୱକୁ ଉଠି ମହା ଜାଗତିକ ଅନୁଷ୍ଠାନ ପାଲଟିଗଲେ । କେତେଜଣ ଲୋକଙ୍କ ଭାଗ୍ୟରେ ଏଭଳି ସୌଭାଗ୍ୟ ମିଳିଥାଏ ? ନାଁ ତାଙ୍କର ଥିଲା ବିଚ୍ଛନ୍ଦ । ମାତ୍ର ଓଡିଆ ଛନ୍ଦ ସାହିତ୍ୟକୁ ସେ ନବ ଜୀବନ ଦେଇଗଲେ । ତାଙ୍କ ବଡଭାଇ ଇଚ୍ଛା କରିଥିଲେ ସେ ଗ୍ରାମରେ ଏକ କ୍ଷୁଦ୍ର ବିପଣୀ କରି ଜୀବିକା ନିର୍ବାହ କରିବେ । ମାତ୍ର ବାପା ନିଜର କଠୋର ଅଧ୍ୟବସାୟ, ଦୃଢ ମନୋବଳ ଏବଂ ଦୁଃସାହସିକ ଚେତନାରେ ଉଦ୍‌ବୁଦ୍ଧ ହୋଇ ଭାଇଙ୍କ ସେହି ସଂକୀର୍ଣ୍ଣ ଚେତନାକୁ ପ୍ରତିହତ କରି ସାରା ଓଡିଶାକୁ ଏକ ସାଂସ୍କୃତିକ ବିପଣୀରେ ପରିଣତ କରି ଦେଇଥିଲେ । ଲୋକଙ୍କୁ ପେଟର ଖାଦ୍ୟ ବିକ୍ରୟ ନ କରି ସେମାନଙ୍କୁ ମାନସିକ ଖାଦ୍ୟ ବଣ୍ଟନ କରିଗଲେ ।

ବାପା ସେ ପୁରକୁ ଚାଲି ଯାଇଛନ୍ତି । ମାତ୍ର ପଛରେ ଛାଡି ଯାଇଛନ୍ତି ଏକ ବିରାଟ ଆଦର୍ଶ । ଯୁବ ମାନସକୁ ସୁପଥଗାମୀ କରି ତାଙ୍କୁ ମଣିଷ କରି ଗଢି ତୋଳିବା, ଅନୁଷ୍ଠାନ ସୃଷ୍ଟି କରି ତାହାକୁ ଉତ୍ତମ ରୂପେ ପରିଚାଳିତ କରିବା ଏବଂ ଦେଶର ପାରଂପରିକତା ରକ୍ଷାକରି ତାକୁ ବିଶ୍ୱ ଦରବାରରେ ପରିଚିତ କରିବା । ତାଙ୍କର ଏହି ଆଦର୍ଶ ଯଦି ପରବର୍ତ୍ତୀ ପୀଢ଼ିକୁ କିଛି ପ୍ରେରଣା ଦେବ ତେବେ ତାଙ୍କର ଜନ୍ମ ଏବଂ ସଂଗ୍ରାମ ସାର୍ଥକ ହେବ ।

ମୋର ଶେଷ କାମନା ଏଭଳି ପିତାଙ୍କୁ ମୁଁ ଜନ୍ମ ଜନ୍ମାନ୍ତରେ ପିତା ଭାବେ ପାଉଥାଏଁ ।



ବାପା କହନ୍ତି -

'କବି ସମ୍ରାଟ ଓ କୋଣାର୍କ କଳିଙ୍ଗ କୃଷ୍ଟିର କମନୀୟତମ ପ୍ରକାଶ । ଏ ଦୁହିଁଙ୍କ ଦ୍ୱାରା ବ୍ୟଞ୍ଜିତ ଜାତୀୟ ସାଧନାର ଭୂଙ୍ଗିମା ବିଷୟରେ କଳିଙ୍ଗ ବାସୀ ଉଦ୍‌ବୁଦ୍ଧ କରି ଦେଲେ ଜାତୀୟ ଜାଗରଣ ପାଇଁ ଆଉ କିଛି କରିବାକୁ ପଡିବ ନାହିଁ - ଏହି ଦୃଢ ବିଶ୍ୱାସ ନେଇ ମୁଁ ଆନ୍ଦୋଳନ ଆରମ୍ଭ କରିଛି । '

' ଓଡିଶାର ସାରସ୍ୱତ କ୍ଷେତ୍ରରେ ସାହେବୀ ପରଂପରାର ପରାଜୟ ଆରମ୍ଭ ହୋଇଛି ଏବଂ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେଉଁ ମହତୀ ଭାରତୀୟ ବା ସଂସ୍କୃତ ପରଂପରାର ସମର୍ଥ ପ୍ରତିନିଧି, ତାହା ପୁନଃ ପ୍ରତିଷ୍ଠା ପଥରେ ଜୟଯାତ୍ରା କରୁଅଛି ।'

ଅନ୍ତିମ ବାର୍ତ୍ତା :

' ଓଡିଆ ଜାତିର ଦୁର୍ଭାଗ୍ୟକୁ ତା'ର ଶ୍ରେଷ୍ଠ କୀର୍ତ୍ତି ସ୍ତମ୍ଭ କୋଣାର୍କର ଦଶା ଯାହା, କବି ସମ୍ରାଟଙ୍କ ଦଶା ମଧ୍ୟ ତାହା । କୋଣାର୍କ ତା'ର ପ୍ରାପ୍ୟ ପୂଜା ପାଉ ନାହିଁ । କବିସମ୍ରାଟଙ୍କ ସ୍ମୃତି ରକ୍ଷା ପାଇଁ କିଛି ହେଉ ନାହିଁ । ଚେତାବନୀର ଚାବୁକ୍‌ଦ୍ୱାରା ଏ ସୁପ୍ତ ଜାତିର ବିବେକକୁ ଜାଗ୍ରତ କରିବାକୁ ହେବ ।'

ଭାରତୀ ବନ୍ଦନା :

କଳିଙ୍ଗ ଭୂଇଁ କି ସାରଦା
ଅପାର କାଳରୁ ବରଦା ।
କଳିଙ୍ଗେ ଯେଉଁ ରୂପ ବହି
ଜନନୀ ମୋହନ୍ତି ଏ ମହୀ ।
ସେ ରୂପ ଅତି ଅଭିରାମ
ସକଳ ସଉଷ୍ଠବ ଧାମ ।
କଳିଙ୍ଗ ଭାରତୀ ତାହାରେ

କଳପି ଧ୍ୟାୟେ ନିରନ୍ତରେ ।

ବିଚ୍ଛନ୍ଦ ଭାଷିତ ଭଞ୍ଜ ଗରବିତ
ଦେଶ ଅତୀତଆଣିକି ।
ରଖିବ କି ଅବା କାନ୍ଦିବ ମଉନେ
ନୟନୁ ଢ଼ାଳି ପାଣିକି ।
- ମା କରୁଣା ନାହିଁକି -

ଶୂର ବୀର ବକ୍ଷେ ବହ ଆଉବାରେ
କେଶରି-ଗହ୍ବର ଭରୁ କେଶରୀରେ ।
ବିଚ୍ଛନ୍ଦ ମଉଳି ନତ କାହାଠାରେ
ନୋହୁ ମା ତ୍ରିଦଶ କାମ୍ୟା ଗୋ ।
- ଶଶ୍ୟ ଶ୍ୟାମା -

ମା ଭାରତି, ହୋଇ କଳା କରୀଟିନୀ
ବିଶ୍ବ ସମାଜରେ ନୁଆଁଇବ ମଥା କେବେ କଳିଙ୍ଗ ଜନନୀ ?
- ବାଣୀ ଆବାହନ -

ବାରବାଟୀ ଲୋତକରେ ଲୋତକ ମିଳାଇ ।
କାନ୍ଦିନାହଁ ଯଦି ବାରେ କାନ୍ଦ ଆଜି ଭାଇ ।
- ବାରବାଟୀ -

ଗାଉଛି ଉତ୍କଳ ପର ସଙ୍ଗୀତ
ନ ଜାଣୁଛି ନିଜେ ନିଜର ବିତ୍ତ ।
ସେ କାଳ ବିପଞ୍ଚୀ ଏ କାଳ ତାନ
ଯୋଗ ବିନା ଧନୀ ହାରୁଛି ମାନ ।
ଛନ୍ଦ କଳ୍ପ ତରୁ ତଳେ ଯେ,
ରହି ରସ କ୍ଷୁଧା ନ ମେଣ୍ଟୁଛି ତାର
ଭାଗ୍ୟ ବଦଳିବ କେବେ ଯେ ?

- ସେକାଳ ବିପଞ୍ଚୀ ଏକାଳ ତାନ-

ଯିବ ଏ ଜାତିର ଅପମାନ
ଚିହ୍ନିବ ଉତ୍କଳୀ ଘର ଧନ
ବିଶ୍ୱ ସାରସ୍ୱତ ସଙ୍ଗୀତ ବିତ୍ତରୁଁ
କରିବ ସେ ସାର ଆହରଣ ।

- ବାଣୀ ରାଣୀ -

ନଇଁପଡନାରେ ମୋ ଟେକ ମଉଳି
ପରିପନ୍ଥୀମୁଖୁଁ ଶୁଣି ମା ନିନ୍ଦା ଆବଳି
କମଳା ଲୀଳା ଅଙ୍ଗନ ଶଶ୍ୟ ଶ୍ୟାମ ଅପଘନ
ଯାହାର ତା ସନ୍ତତି କି ବହି ଭିକ୍ଷା ଥାଳି

- ମୋ ଟେକ ମଉଳି -

‘ ବାର ବର୍ଷ ତଳେ ଶିକ୍ଷିତ ସମାଜରେ ଭଞ୍ଜପୂଜା ଉପହାସର ସାମଗ୍ରୀ ଥିଲା । ମାତ୍ର ଏବେ ଚକ ଘୂରି ଯାଇଛି , ଏବଂ ଅତୀତର ଭଞ୍ଜ ଉପହାସକମାନେ ଆଜି ଭଞ୍ଜୋପାସକରେ ପରିଣତ ହୋଇଛନ୍ତି ।’

- ୧୯୫୫ ରେ ଭଞ୍ଜ ଜୟନ୍ତୀରେ ପ୍ରଦତ୍ତ ଅଭିଭାଷଣ-

## ବିଚ୍ଛନ୍ଦ ରଚନାବଳୀ

୧ ॥ କବିତାକୁମୁଦ ୧୯୪୬- ବିଚ୍ଛନ୍ଦ ଗ୍ରନ୍ଥାବଳୀ

ଏଥିରେ ବିଚ୍ଛନ୍ଦ ଚରଣ ରଚିତ ୧୦୧ ଗୋଟି ଗୀତିକା ପ୍ରକାଶିତ । ଏ ଗ୍ରନ୍ଥର ବିଶେଷତ୍ୱ ହେଉଛି ଏଥିରେ ସନ୍ନିବିଷ୍ଟ ଗୀତମାନ ପାରଂପରିକ ଛନ୍ଦରେ ରଚିତ । ଗୀତମଧ୍ୟରେ ପୂଜ୍ୟ ଉତ୍କଳୀୟ ବୀର ପୁରୁଷଙ୍କ ବନ୍ଦନା ଓ ସେମାନଙ୍କ ଉଦ୍ଦେଶ୍ୟରେ ପୂଜାର୍ଘ୍ୟ ଅର୍ପିତ ହୋଇଛି । ଏତଦ୍‌ବ୍ୟତୀତ କେତେକ ଇଂରାଜୀ କବିତାର ଅନୁବାଦ ସହିତ କବିଙ୍କ ବହୁ ମୌଳିକ ଗୀତିକା ସ୍ଥାନ ପାଇଛି । ଭାରତୀ ବନ୍ଦନା ଭଳି ଦେଶାତ୍ମବୋଧକ ଗୀତରେ ଉତ୍କଳର ସାଂପ୍ରତିକ ଦୁର୍ଦ୍ଦଶା ଏବଂ ଉତ୍କଳବାସୀଙ୍କ ହୀନମନ୍ୟତା ଓ କ୍ଲୀବତ୍ୱ ଦେଖି ବ୍ୟଥିତ କବିଙ୍କ ମନୋବେଦନା ପ୍ରକାଶ ପାଇଛି ।

୨ ॥ ଗୌର ଚରଣ ଗୀତାବଳୀ

ଓଡିଶାର ମଧ୍ୟ ଯୁଗୀୟ କବି ଓ ଗୀତିକାର ଗୌର ଚରଣ ଅଧିକାରୀ ବିରଚିତ ଦୁର୍ଲ୍ଲଭ ପଦାବଳୀ ସଂଗ୍ରହ ଓ ସଂପାଦନା କରି ପ୍ରକାଶ ପାଇଛି । କବି ଗୌରଚରଣ ହେଉଛନ୍ତି ଊନବିଂଶ ଶତାବ୍ଦୀର ପ୍ରଥମ ଭାଗର ବୈଷ୍ଣବ କବି ଏବଂ ବୋଧ ହୁଏ ଓଡିଆ ମଧ୍ୟ ଯୁଗୀୟ ଗୀତି କବିତାର ଅନ୍ତିମ ସ୍ୱର । ତାଙ୍କ ବିରଚିତ ରାଧାକୃଷ୍ଣ ଲୀଳାତ୍ମକ ଗୀତ ଓ ଜଗନ୍ନାଥ ଭଜନ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି ।

୩ ॥ ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଓ ଭଜନ ୧୯୫୬

ଓଡିାର ମଧ୍ୟ ଯୁଗୀୟ କବି ବିରଚିତ ଦୁର୍ଲ୍ଲଭ ୧୦୮ ଗୋଟି ଜଗନ୍ନାଥ ଜଣାଣ ଓ ଭଜନ ଏଥିରେ ସନ୍ନିବିଷ୍ଟ । କବି ବିଚ୍ଛନ୍ଦ ଚରଣ ସଂସ୍କୃତ କବିଙ୍କ ରଚନାର ଓଡିଆ ଅନୁବାଦ ଏହି ଗ୍ରନ୍ଥର ଏକ ସ୍ୱତନ୍ତ୍ର ପର୍ଯ୍ୟାୟ । ସଂସ୍କୃତ ଅନଭିଜ୍ଞ ଓଡିଆ ପାଠକେ ଏହା ଫଳରେ ଉକ୍ତ ଗୀତମାନ ସହଜରେ ବୁଝି ପାରିଥିଲେ । ଗ୍ରନ୍ଥର ଦୀର୍ଘ ମୁଖବନ୍ଧରେ ସେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବିଷୟରେ ଯେଉଁ ଗବେଷଣାତ୍ମକ ସନ୍ଦର୍ଭ ଉପସ୍ଥାପନ କରିଛନ୍ତି ତାହା ବୋଧ ହୁଏ ଓଡିଆରେ ରଚିତ ପ୍ରଥମ ପ୍ରାମାଣିକ ପ୍ରବନ୍ଧ । ଲକ୍ଷ୍ୟ କରିବାର କଥା ଏହି ଗ୍ରନ୍ଥ ମୁଦ୍ରିତ ହେବା ପରେ ଜଗନ୍ନାଥ ସଂପର୍କିତ ଗୀତମାନ ରେଡିଓରେ ବହୁଳ ପ୍ରସାରିତ ହୋଇ ପାରିଥିଲା ।

୪ ॥ ଭାବିନୀ ଭାବନା ୧୯୫୯

ପ୍ରେମିକ ପ୍ରେମିକାଙ୍କ ଚିରନ୍ତନ ପ୍ରଣୟର ଆଲେଖ୍ୟ ହେଉଛି ଗ୍ରନ୍ଥ ଭାବିନୀ ଭାବନା । ଏଥିରେ ନାୟକ ନାୟିକା ତାଙ୍କର ଧାବଲୀଳ ମନୋଭାବକୁ ବେଶ୍ ସଂଯତ

ଭାଷା ରେ ପ୍ରକାଶ କରିଛନ୍ତି । ଓଡିଆରେ ଏଭଳି ସ୍ୱତନ୍ତ୍ର ପ୍ରଣୟ ଚିଟାଉ ବିଷୟକ ଗ୍ରନ୍ଥ ଅଦ୍ୟାପି ରଚିତ ହୋଇ ନାହିଁ । ଲକ୍ଷ୍ୟ କରିବାର କଥା ଏହାର କୌଣସି ପ୍ରଣୟି ପରକୀୟା ନୁହନ୍ତି । ପ୍ରିୟ ବିଚ୍ଛେଦରେ କେବଳ ଅଶ୍ରୁବିସର୍ଜନ କରି ସେମାନେ ମଧ୍ୟ ଯୁଗୀୟ ନାୟିକା ଭଳି ବରହ ଶଯ୍ୟାରେ ଶୋଇ ନାହାନ୍ତି କିମ୍ୱା ତାଙ୍କ ପାଇଁ ଉସୀର ପଦ୍ମ ମୂଳ ଖୋଜି ନାୟିକାର ସଖୀମାନେ ନୟାନ୍ତ ହୋଇ ନାହାନ୍ତି । ଏକ ସ୍ୱଭାବ ସୁଲଭ ଭଙ୍ଗୀରେ ନାୟକ ଏବଂ ନାୟିକା ତାଙ୍କର ବିରହ ସଂଦେଶ ପ୍ରେରଣ କରିଛନ୍ତି ।

୫ ।। ଭଞ୍ଜ ପ୍ରଭା ୧୯୫୩

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବିଷୟରେ ପ୍ରାମାଣିକ ଓ ଗବେଷଣାତ୍ମକ ପ୍ରବନ୍ଧର ସଂପାଦନା ପୁସ୍ତକ । ଯେଉଁ ସମୟରେ ଭଞ୍ଜ ଆମ ସାହିତ୍ୟାକାଶରେ ଏକ କକ୍ଷଚ୍ୟୁତ ତାରକା ଭାବେ ପରିଗଣିତ ହେଉଥିଲେ ସେହି କାଳରେ ଭଞ୍ଜ ଗବେଷକମାନଙ୍କ ଦ୍ୱାରା ପ୍ରସ୍ତୁତ ପୁସ୍ତକଟି ବିଂଶ ଶତାବ୍ଦୀରେ ସାହିତ୍ୟ ଜଗତରେ ଚହଳ ପକାଇ ଦେଇଥିଲା । ପରବର୍ତ୍ତୀ କାଳରେ ଉପେନ୍ଦ୍ରଙ୍କ ଉପରେ ବହୁ ପୁସ୍ତକ ସଂଦର୍ଭ ପ୍ରକାଶିତ ହୋଇ ତିଲେ ମୌଳିକ ଭାବ ସଂପଦ ତିବା ଏହି ପୁସ୍ତକ ଏବେ ମଧ୍ୟ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭ କରିଥି । ଗ୍ରନ୍ଥଟି ଦୁର୍ମିଳ ହେବା ପରେ ଏହା କଳିଙ୍ଗ ଭାରତୀ ଦ୍ୱରା ପରିବର୍ଦ୍ଧିତ ହୋଇ ପୁନଃ ପ୍ରକାଶ ଲାଭ କରିଛି ।

୬ ।। ଶ୍ରୀରାମଚରିତ ମାନସ ( ଅନୁବାଦ)

ଭକ୍ତ କବି ତୁଳସୀ ଦାସ ବିରଚିତ 'ଶ୍ରୀରାମଚରିତ ମାନସ' ଲୋକଙ୍କ ମଧ୍ୟରେ ଭକ୍ତି ଭାବର ଚହଳ ପକାଇ ଥିଲା । ମାତ୍ର ଅବହଟ୍ଟ ଭାଷାରେ ରଚିତ ଏହି ପୁସ୍ତକ ଉତ୍କଳୀୟ ପାଠକଙ୍କ ବୋଧଗମ୍ୟ ଓ ଗାୟନରେ ଅସୁବିଧା ଦେଖି ବିଚ୍ଛନ୍ଦ ଚରଣ ଏହାକୁ ଓଡିଶାର ପରିଚିତ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଛନ୍ତି । ଓଡିଶା ସାହିତ୍ୟ ଏକାଡେମୀ ଏହି ପୁସ୍ତକର ପାଣ୍ଡୁଲିପି ନେଇ ପରେ ହଜିଗଲା ବୋଲି କହିବାରୁ ପୁସ୍ତକଟି ଲୋକ ଲୋଚନ ଦେଖିବା ସମ୍ଭବ ହେଲା ନାହିଁ ।

୭ ।। ସୁର ବିନୟ ପତ୍ରିକା ( ଅନୁବାଦ)

ଭକ୍ତ କବି ସୁର ଦାସ ବିରଚିତ ରାଧାକୃଷ୍ଣ ଲୀଳାତ୍ମକ ଗୀତର ଓଡିଆ ଅନୁବାଦ । ଏହି ଗ୍ରନ୍ଥଟି ମଧ୍ୟ ସାହିତ୍ୟ ଏକାଡେମୀର କର୍ତ୍ତୃପକ୍ଷଙ୍କ ଅବହେଳାରୁ ପ୍ରକାଶ ନପାଇ ନଷ୍ଟ ହୋଇଗଲା ।

ବିଚ୍ଛନ୍ଦ ଚରଣ ୧୯୦୧ ମସିହାରେ ଜନ୍ମ ଗ୍ରହଣ କରି ୧୯୬୦ ମସିହାରେ ପରଲୋକ ଗମନ କଲେ । ଏହି ସମୟରେ କେବଳ ଶୈଶବ ଅଂଶଟିକୁ ଛାଡି ଦେଲେ ଅବଶିଷ୍ଟ ସମୟ ସେ ସାହିତ୍ୟ ପାଇଁ ନିରଳସ ସାଲିସ୍ ବିହୀନ ସଂଗ୍ରାମ କରି ଯାଇଛନ୍ତି । ଜୀବନର ପ୍ରତି ପଦକ୍ଷେପରେ ସେ କିଛି ନା଼ କିଛି ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି । ତନ୍ମଧ୍ୟରେ ପ୍ରଥମ ପ୍ରତିବନ୍ଧକ ଆସିଥିଲା ତାଙ୍କର ଶୈଶବରୁ । ଏହି ସମୟରୁ ସେ ଖଞ୍ଜ ହୋଇ ଚଳତ୍‌ଶକ୍ତିହୀନ ହୋଇ ପଡିଲେ । ମାତ୍ର ତାଙ୍କର ଦୃଢ ମନୋବଳ ତାଙ୍କୁ ପ୍ରତିହତ କରିପାରି ନାହିଁ । ପରବର୍ତ୍ତୀ କାଳରେ ସେ ଦୃଢ ପତିରୋଧର ସମ୍ମୁଖୀନହେଲେ ତଥାକଥିତ ଆଧୁନିକ ପନ୍ଥୀଦ୍ୱାରା । ସେ ୧୯୩୬ ମସିହା ପର୍ଯ୍ୟନ୍ତ ଏହି ଜୀବନୀ ଲେଖିଥିଲେ ।

ଏହାର ପରବର୍ତ୍ତୀ ଅଂଶ ଲେଖିଲାବେଳକୁ ସେ ଅକ୍ଷମ ହୋଇ ଯାଇ ଥିଲେ । ତାଙ୍କ ଇଚ୍ଛା ଥିଲା ସେ ଡାକିବେ ଏବଂ ମୁଁ ଲେଖିବି । ମାତ୍ର ଭାଗ୍ୟର ଲୀଳା ବିଚିତ୍ର । ଏହା ସମ୍ଭବ ହୋଇ ପାରିଲା ନାହିଁ । ତାଙ୍କ ଜୀବନର ଅନେକ ଅକୁହା କଥା ତାଙ୍କ ସହ ବିଲୀନ ହୋଇ ଗଲା ।

## 9. Kavi Samrat Upendra Bhanja Souvenir 1950

ଏହି ଇଂରାଜୀ ଗ୍ରନ୍ଥରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ ରସିକ ହାରାବଳୀ (୮ମ, ୯ମ, ୧୧ଶ), ଲାବଣ୍ୟବତୀ( ୯ମ, ୧୪ଶ, ୨୨ଶ,), କୋଟିବ୍ରହ୍ମାଣ୍ଡ ସୁନ୍ଦରୀ (୭ମ), ପ୍ରେମ ସୁଧାନିଧି (୧୪ଶ) ଏବଂ ରସ ଲେଖାରୁ କେତେକ ବିଶିଷ୍ଟ ଛାନ୍ଦ ଅନୁଦିତ ହୋଇ ପ୍ରକାଶ ଲାଭ କରିଛି । ଏହି ଗ୍ରନ୍ଥ ରଚନା କରି ସେ ଦେଖାଇଦେବାକୁ ଚାହିଁଛନ୍ତି ଯେ ଉପେନ୍ଦ୍ର କାବ୍ୟର ଭାବ ସଂପଦକୁ ଅନୁବାଦ ମାଧ୍ୟମରେ ବିଦେଶରେ ପହଞ୍ଚାଇ ହେବ , ମାତ୍ର ଅନ୍ତର୍ନିହିତ ମାଧୁର୍ଯ୍ୟ ଓ ଆଳଂକାରିକ ସୌନ୍ଦର୍ଯ୍ୟ ପ୍ରକାଶ କରିବା ପାଇଁ ଇଂରାଜୀ ଭାଷାର ଶବ୍ଦ ସଂପଦ ଯଥେଷ୍ଟ ନୁହେଁ ।

## 10.Glimpses into Kavisurya 1957

ଏହି ଇଂରାଜୀ ଗ୍ରନ୍ଥରେ ଓଡିଶାର ମଧ୍ୟ ଯୁଗୀୟ କବି ଓ ଗୀତିକାର କବି ସୂର୍ଯ୍ୟ ବଳଦେବ ରଥ ବିରଚିତ ଲୋକପ୍ରିୟ ଗୀତି କାବ୍ୟ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର

ସଂସ୍କୃତ ମଙ୍ଗଳାଚରଣ ସହ ଓଡିଆରେ ବିରଚିତ କ, ଘ,ଙ, ଓ ମଆଦ୍ୟ ବର୍ଣ୍ଣ ଯୁକ୍ତ ଗୀତର ଇଂରାଜୀ ଅନୁବାଦ ସହ କେତୋଟି ଲୋକ ପ୍ରିୟ ଚୌପଦୀ ଓ ପଦାବଳୀ ସମେତ ‘ ଚନ୍ଦ୍ରକଳା’ କାବ୍ୟର ପ୍ରଥମ ଛାନ୍ଦ ଅନୁଦିତ ହୋଇ ପ୍ରକାଶ ଲାଭ କରିଛି ।

### 11.Kalinga Bharati Souvenir 1959

ଏହି ଇଂରାଜୀ ପୁସ୍ତକରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତ ସିଂହାର ଏବଂ କବିସୂର୍ଯ୍ୟ ବଳଦେବ ରଥଙ୍କ କାବ୍ୟରୁ କେତୋଟି ସୁନିର୍ବାଚିତ ଛାନ୍ଦର ଅନୁବାଦ କରି ପ୍ରକାଶ କରିଛନ୍ତି ।

### 12.Kalinga, Kavisamrat ,Kalinga Bharati 1953

ଏହି ଇତିହାସ ସମ୍ୱଳିତ ପୁସ୍ତକରେ ଓଡିଶାର ସାଂସ୍କୃତିକ ଇତିହାସ, ଉପେନ୍ଦ୍ର ଭଞ୍ଜଙ୍କ ସଂକ୍ଷିପ୍ତ ପରିଚୟ ସମେତ କଳିଙ୍ଗ ଭାରତୀର ଆଭିମୁଖ୍ୟ ସ୍ଥାନ ପାଇଛି । ପୁସ୍ତକଟିରେ ମୌଳିକ ତଥ୍ୟ ଏବେ ମଧ୍ୟ ସାହିତ୍ୟିକ ଓ ଗବେଷକଙ୍କ ଅତି ପ୍ରିୟ ହୋଇ ପାରିଛି ।

ପ୍ରାଚୀ ସମିତି ପକ୍ଷରୁ ସଂପାଦିତ ପୁସ୍ତକ :-

| | |
|---|---|
| ଗୁରୁ ଭକ୍ତି ଗୀତା - ୧ମ ଖଣ୍ଡ | ୧୯୩୦ |
| ଜୟକୃଷ୍ଣ ଭଜନ | ୧୯୩୧ |
| ଚଉତିଶା ମଧୁଚକ୍ର- ୧ମ ରୁ ୫ମ ଖଣ୍ଡ | ୧୯୩୧-୩୩ |
| ସାଧୁ ଗୀତି | ୧୯୩୨ |
| ଖାଡାଙ୍ଗା ଭାଗବତ | ୧୯୩୨ |
| ଶଶିରେଖା | ୧୯୩୩ |
| ~~ଗୁରୁ ଭକ୍ତିଗୀତା~~ | ~~୧୯୩୪~~ |



## ତୁଳସୀର ଶେଷ ସ୍ତବକ :

ବାପା ଚାଲିଗଲେ । କିନ୍ତୁ ତୁଳସୀର ଶେଷ ସ୍ତବକ ଭଳି ମୋର ମାଆ ନେତ୍ରମଣି ନିଜ ନେତ୍ରରେ ଲୁହକୁ ହୃଦୟ ଭିତରେ ଚାପି ବଞ୍ଚି ରହିଲେ ଆମକୁ ମଣିଷ କରିବା ପାଇଁ । ତାଙ୍କ ଆଗରେ ସେତେବେଳେ ଗୋଟାଏ ବିରାଟ ପରିବାର - କଳିଙ୍ଗ ଭାରତୀ ପରିବାର । ଆମେ ଭାଇ ଭଉଣୀ ତିନିଜଣ ସେ ପରିବାରର ଅପୋଗଣ୍ଡ ସନ୍ତତି । ବର୍ତ୍ତମାନ ଏହି ବିରାଟ ପରିବାରର ସବୁ ଅଳି ଅର୍ଦ୍ଦଳି, ସମସ୍ତଙ୍କର ମାନ ଅଭିମାନ, ବିଚାର ଅଭିଯୋଗ ସବୁ ମାଆ ପାଖରେ । ଏଠାରେ କହି ରଖେଁ, କଳିଙ୍ଗ ଭାରତୀର ସମସ୍ତ ସର୍ଦସ୍ୟ ମାଆକୁ ମାଉସୀ ବୋଲି ସମ୍ବୋଧନ କରନ୍ତି ସିନା ତାଙ୍କ ଭିତରେ ନିଜ ମାଆଙ୍କୁ ଦେଖନ୍ତି । ମାଆ ମଧ୍ୟ ଥିଲେ ସମସ୍ତଙ୍କର ଜନନୀ ବିଶ୍ୱରୂପା

ଏକ ସମ୍ଭ୍ରାନ୍ତ ଧନାଢ଼୍ୟ ପରିବାର ଝିଅ ହେଲେ ହେଁ ମାଆ ଥିଲେ ଆବାଲ୍ୟରୁ ପିତୃ ମାତୃ ହରା । ମାତ୍ର ତାଙ୍କ ଭାଇମାନେ ତାଙ୍କୁ ଏତେ ଅଲ୍ୟନରେ ବଢ଼ାଇଆଣିଥିଲେ ଯେ ମାଆର ପାଦ ତଳେ ଲାଗୁ ନଥିଲା । ଏ ଘରକୁ ବୋହୂ ହୋଇ ଆସିବା ପରେ ବାପା ମଧ୍ୟ ଏଠାରେ ଏପରି ଭାବେ ରଖିଥିଲେ ଯେ ସେ ଯେପରି ଘିଅରେ ଖାଇ କ୍ଷୀରରେ ଆଞ୍ଚୋଉଥିଲେ । ସେତେବେଳେ ମାଆ ସାଙ୍ଗରେ ଧାଈ ଭାବେ ଆସିବା ସେବତୀ ସମେତ ଆମ ପରିବାରରେ ୧୩ ଜଣ ବାହାର ଲୋକ ଥିଲେ । ବାପାଙ୍କ ଜୀବଦ୍ଦଶାରେ ମାଆ କେବେ ହଳିଲା ଫୁଲରେ ବି ହାତ ଦେଇ ନାହିଁ । ସବୁ କାମ ପାଇଁ ଲୋକ ଥିଲେ । କିନ୍ତୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ବାପାଙ୍କ ଅନ୍ତେ ଦୀର୍ଘ ୩୬ ବର୍ଷ କାଳ ଛାତିରେ ପଥର ଲଦି ତୁଣ୍ଡରେ ହରେକୃଷ୍ଣ ନାମ ଧରି କଳିଙ୍ଗ ଭାରତୀ ପରିବାରର ଶହ ଶହ ସନ୍ତାନଙ୍କୁ କେବଳ ମଧୁ ବିତରଣ କରି ଯାଇଛନ୍ତି । ଆଦ୍ୟ ଜୀବନରେ ଅଭାବ ବୋଧ କଣ ଜାଣି ନଥିବା ଲୋକଟି ପରବର୍ତ୍ତୀ ଜୀବନରେ ଘରର ଅଭାବକୁ କାହରିକୁ, ଦେଖେଇ ଦେଇନାହିଁ । ଏପରିକି, ଆମ ଭାଇ ଭଉଣୀ ଏବଂ କଳିଙ୍ଗ ଭାରତୀ ପରିବାରର ସମସ୍ତଙ୍କୁ ବାପାଙ୍କ ବିୟୋଗ କ୍ଳେଶ ମଧ୍ୟ ଜଣା ପଡେ ନାହିଁ ।

ମୋ ମାଆ ଥିଲେ ଦୟାର ମୂର୍ତ୍ତୀମତୀ ଅବତାର । ବାପା କହୁଥାନ୍ତି ତାଙ୍କ ବାପାଙ୍କର ସକଳ ଗୁଣ ମୋ ମାଆଠାରେ ଥିଲା । ଦୁଃଖୀ ରଙ୍କି ଠାରୁ ପଶୁ ପକ୍ଷୀଙ୍କ ପେଟ ସେ ମାପି ପାରୁଥିଲେ । ମନର ଦୁଃଖ ଜାଣି ପାରୁଥିଲେ । ଏଣୁ ବେଳେ ବେଳ ଅତ୍ୟନ୍ତ ଦୟାର୍ଦ୍ର ହୋଇ ବହୁ ମୂଲ୍ୟ ବସ୍ତୁକୁ ଦୁଃଖୀଙ୍କ ଅଭାବ ଆଗରେ ତୁଛ ମନେ କରି ଦାନ ଦେଉଥିଲେ । ଥରେ କେଳା କେଳୁଣୀ ନାଟ ଦେଖି ସେ ଏପରି ମୁଗ୍ଧ ହୋଇଗଲେ ଯେ ନିଜ କାନରୁ କାନ ଫୁଲ କାଢ଼ି କେଳୁଣୀକୁ ଉପହାର ଦେଇ ଦେଲେ । ସେହି ପରି କେତେ ଥର ନିରାଶ୍ରୟ ଭିକାରିକୁ ଥାଳି ସହ ଅନ୍ନ ପ୍ରଦାନ କରି ଥାଳି କୁଆଡେ ଗଲା

ବୋଲି ବାହାନା କରି ତୁନି ହୋଇ ଯାଉଥିଲେ । ପ୍ରାୟ ପ୍ରତି ଦିନ ଠାକୁର ଘର ଝରକା ଦେଇ ପ୍ରତିବେଶୀ ଆବାଳ ବୃଦ୍ଧ ବନିତାଙ୍କୁ ଠାକୁର ଭୋଗ ନାଁ ରେ ଭୋଜନ ପ୍ରଦାନ କରିବା ତାଙ୍କର ଏକ ଅଭ୍ୟାସ ଥିଲା । ବାପା ମାଆଙ୍କୁ ଏତେ ଭଲ ପାଉଥିଲେ ଯେ କେବେହେଲେ ଏ ବିଷୟରେ ତାଗିଦ ମଧ୍ୟ କରୁ ନଥିଲେ ।

ଦୀର୍ଘ ଦିନ ବୈଧବ୍ୟ ଭିତରେ ଏଭଳି ନିର୍ମାୟା ଲୋକକୁ ମଧ୍ୟ ସନ୍ତାନ ବିଛେଦ ସହିବାକୁ ପଡିଲା । ଆମର ସାନ ଭଉଣୀ ଅମା ପୋଡି ହୋଇ ଦୀର୍ଘ ଦିନ ଡାକ୍ତରଖାନାରେ ମୃତ୍ୟୁ ସହ ସଂଗ୍ରାମ କରି ଅବଶେଷରେ ଆମକୁ ଛାଡି ଚାଲି ଗଲା । ଏ ଦାରୁଣ ଦୁଃଖ ପରେ ମାଆ ପ୍ରାୟ ମୁକ ପାଲଟି ଯାଇଥିଲା । ମୁହଁରୁ ତାର ସଦା ବେଳେ ବାହାରୁ ଥାଏ କୃଷ୍ଣ । ଜୀବନର ଶେଷ ଆଡକୁ ଦୀର୍ଘ ଦିନ ଧରି ରୋଗାକ୍ରାନ୍ତ ହୋଇଥିଲେ ବି ସେ ଖୁବ୍ ଅଳ୍ପ ଦିନ ପାଇଁ ଚଳତ୍‌ଶକ୍ତି ରହିତ ହୋଇଥିଲା ।

ଆଜି ୧୯୯୭ ଅକ୍ଟୋବର ୧୧ ତାରିଖ ଦଶମୀ ଦଶହରାରେ ସେ ସ୍ତବକଟି ଝଡିଗଲା । ବର୍ତ୍ତମାନ ସବୁଆଡେ ଅନ୍ଧକାର । ପିତୃହରାର ଅମା ଅନ୍ଧାର ଭିତରେ ଯେଉଁ କ୍ଷୀଣ ଆଲୋକ ରେଖାଟି ଏତେ ଦିନଯାଏ ଆମକୁ ଆଶା ଓ ଆଶ୍ୱାସନା ଦେଇଥିଲା ସେ ନିଜେ ଜଳି ଜଳି ଶେଷ ହୋଇଗଲା । ଅବଶେଷରେ ସତୀଚଉରା ଯୂଇରେ ଅର୍ଦ୍ଧମୃତ କାଠଯୋଡିର ପୁଳିନ୍ଦକୁ କିଛି ସମୟ ପାଇଁ ଆଲୋକିତ କରି ଦପ୍ କରି ଲିଭିଗଲା । ହେଲେ ଦେଖିବାକୁ ରହିଲା ନାହିଁ କେତେ ଶହ ଯୋଡା ଚକ୍ଷୁ ନିଜର ଲୁହରେ ତାର ରାଇ ଶୀତଳ କରିଥିଲେ ସତୀଚଉରାରେ । ଅଦୂର ପାବଛ ଉପରେ ଏକ ନିର୍ବାକ୍ ମୂର୍ତ୍ତୀ ପରି ବସି ମୁଁ ତାହା ଦେଖିଥିଲି ।

୩୬ ବର୍ଷ ତଳେ ଏକ ଶୀତଳ ରଜନୀରେ ବାପା ଏଇଠି ହସର ଶିଖା ଜଳେଇ ମାଆକୁ କହି ଯାଇଥିଲେ- ମୁଁ ଚାଲିଲି, ତୁମ ଉପରେ କଳିଙ୍ଗ ଭାରତୀର ବୋଝ ଲଦିଦେଇ । ବାପାଙ୍କ ଆଦେଶକୁ ଫୁଲ ଚନ୍ଦନପରି ବହନ କରି ମାଆ ସେଇବାଟେ ଚାଲିଲେ । ବାପାଙ୍କୁ ହୁଏତ ସେଇ ଯୁଇର ଶିଖା ଭିତରେ କହିଥିବେ - ତୁମର ପିଲାମାନେ କେତେ ବଡ ହେଲେଣି । ଦରିଆ ପାରିରେ ବି ନାମ କମେଇଲେଣି । ତୁମର ଅସଂପୂର୍ଣ କାମକୁ କାନ୍ଧରେ ବୋହି କେତେଦୁର ନେଲେଣି ତାହା ତୁମେତ ଜାଣୁଥିବ । ମୁଁ ଏ ଦୀର୍ଘ ୩୬ ବର୍ଷ କାଳ ସେମାନଙ୍କୁ ଦମ୍ଭ ଦେଇଛି, ଆଶୀର୍ବାଦ କରିଛି ।

ମାଆ ସିନା ଚାଲି ଗଲା । ମାତ୍ର ପଛରେ ଛାଡିଗଲା ଏକ ଆଦର୍ଶ ମାଆର ଭୂମିକା ଯାହା ବହୁ ଦିନ ପର୍ଯ୍ୟନ୍ତ ଅନ୍ୟମାନଙ୍କୁ ପ୍ରଭାବିତ କରିବ । ଏ ଦେଶରେ ଅନେକ ସାହିତ୍ୟ ଅନୁଷ୍ଠାନ ଅଛି । ମାତ୍ର କୌଣସି ଅନୁଷ୍ଠାନରେ ଆମ ମାଆ ଭଳି ଜଣେ ଆଦର୍ଶ ମାଆ ଖୋଜିଲେ ବିଡମ୍ବିତ ହେବାକୁ ପଡେ । ପର ପୁଅକୁ ଏପରି ନିଃସ୍ୱାର୍ଥପର ଭାବେ ଆପଣାର କରିବାର ଉଦାହରଣ କାହିଁ ଏ ସ୍ୱାର୍ଥପର ଦୁନିଆରେ ?



ଶ୍ରୀମତୀ ରାଜଲକ୍ଷ୍ମୀ ମହାନ୍ତି ୧୯୪୮ ମସିହାରେ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ କନ୍ୟାଭାବେ ଜନ୍ମ ଗ୍ରହଣ କରିଛନ୍ତି । ଆବାଲ୍ୟରୁ ସେ ପରଂପରା କ୍ରମେ ଭଞ୍ଜ ସାହିତ୍ୟ ପ୍ରତି ଆକୃଷ୍ଟ । ସେ ଉପେନ୍ଦ୍ରଭଞ୍ଜଙ୍କ ରଚନାକୁ ବଙ୍ଗଳା ଭାଷାରେ ଅନୁବାଦ କରି ଲୋକପ୍ରିୟ ହୋଇଛନ୍ତି । ଏତଦ୍ ବ୍ୟତୀତ ସେ ସାମାଜିକ ସଂସ୍କାରମୂଳକ କ୍ଷୁଦ୍ରଗଳ୍ପ ଓ ନାଟକ ରଚନା କରନ୍ତି ।

ଏହି ପୁସ୍ତକରେ ସେ ପିତା ବିଚ୍ଛନ୍ଦ ଚରଣଙ୍କ ସ୍ମୃତି ଚାରଣ କରି ଜୀବନାଲେଖ୍ୟ ପ୍ରଦାନ କରିଛନ୍ତି ।